# ଗୃହଲକ୍ଷ୍ମୀ

( ଦ୍ୱିତୀୟ ଭାଗ )



"ଗୃହଲକ୍ଷ୍ମୀ, ଜାଗି ଉଠ ଘରେ ଘରେ,
ସୁବର୍ଣ୍ଣ କଳସ ଥାପି ଦ୍ୱାରେ ଦ୍ୱାରେ ।
ଜାତି-ଯଜ୍ଞ କାର୍ଯ୍ୟେ ହୁଅ ମା ଗୋ ହୋତା,
ହେଉ ଏ ଭାରତ ବେଗେ ଜଗଜ୍ଜିତା ।



ତୃତୀୟ ସଂସ୍କରଣ

**ଲେଖକ—ଶ୍ରୀ ଜଗବନ୍ଧୁ ସିଂହ**

ପ୍ରକାଶକ

**ପଣ୍ଡିତ ଶ୍ରୀ ଆକୁଳ ମିଶ୍ର କାବ୍ୟତୀର୍ଥ,**

ମାନେଜର

**କଟକ ଟ୍ରେଡିଂ କମ୍ପାନୀ**

ବାଲୁବଜାର, ପୋ: ଅ: ଚାନ୍ଦିନୀଚୌକ—କଟକ ।

[illegible] ମାତ୍ର

# ଭୂମିକା

ଗୃହଲକ୍ଷ୍ମୀର ପ୍ରଥମ ଭାଗ ପ୍ରକାଶିତ ହୋଇଥିଲା । ଉକ୍ତ ପୁସ୍ତକ ପାଠ କରି ପାଠକ ପାଠିକାମାନେ ସନ୍ତୋଷ ଲାଭ କରୁଥିବାର ଭୂରିଭୂରି ପ୍ରମାଣ ମିଳୁଛି । ଏହାର ଦ୍ୱିତୀୟ ଭାଗ ଲେଖି ପ୍ରକାଶ କରିବା ପାଇଁ ଅନେକ ବନ୍ଧୁ ଅନୁରୋଧ କରିବାରୁ ଅତ୍ୟନ୍ତ ଉତ୍ସାହିତ ହୋଇ ଏ ପୁସ୍ତକ ପ୍ରକାଶ କରିବା ପାଇଁ ସାହସୀ ହେଲି । ଗୃହଲକ୍ଷ୍ମୀର ଉପଦେଶମାନ ପାଳନ କରି ତଦନୁସାରେ କାର୍ଯ୍ୟକାରିଣୀ ହେଲେ ଉତ୍କଳ-ରମଣୀମଣ୍ଡଳୀର ବିଶେଷ ଉପକାର ହେବ ଏବଂ ସେମାନେ ସୁଗୃହିଣୀ ହେବାର ଆଶା କରାଯାଏ । କଥା ଅଛି, "କାର୍ଯ୍ୟ କରି ଅର୍ଯ୍ୟ ହୁଅ, ଜଗତରେ ପୂଜା ପାଅ ।" କାର୍ଯ୍ୟ ନ କଲେ କେବଳ ପୋଥି ପଢ଼ାରେ କିଛି ହେବ ନାହିଁ । ରମଣୀମାନଙ୍କ ମନରେ ଯେପରି ଉଚ୍ଚ ନିର୍ମଳ ଭାବ ଥିବ, ସେମାନଙ୍କ ଗର୍ଭଜାତ ସନ୍ତାନମାନଙ୍କର ସେହିପରି ଉଚ୍ଚ ନିର୍ମଳ ଭାବ ହେବ । ଗୃହଲକ୍ଷ୍ମୀ ହେବାକୁ ହେଲେ ଅନେକ ଗୁଡ଼ିଏ ସଦ୍‌ଗୁଣ ହୃଦୟରେ ପୋଷି ତଦନୁସାରେ କାର୍ଯ୍ୟ କରିବାକୁ ହେବ । ଭାରତର ପ୍ରାଚୀନ ଆଦର୍ଶ ଅଛି, ପ୍ରାଚୀନ ଇତିହାସ ଅଛି, ପ୍ରାଚୀନ ସଭ୍ୟତା ଅଛି, ସେ ଆଡ଼କୁ ଦୃଷ୍ଟି ଦେଇ କାର୍ଯ୍ୟ କରିବାକୁ ହେବ । ସନ୍ତାନସନ୍ତତିମାନଙ୍କୁ ମନୁଷ୍ୟ କରିବା ଭାର ଯେଉଁ ସ୍ତ୍ରୀ ଜାତି ହାତରେ ଅଛି, ସେମାନେ କେତେ ଗୁଣାଲଙ୍କାରରେ ଭୂଷିତା ହେଲେ ଯେ ଯେ ଭାର-ବହନ-କାର୍ଯ୍ୟର ଉପଯୁକ୍ତା ହେବେ, ତାହା ପ୍ରତ୍ୟେକ ଚିନ୍ତାଶୀଳ ଲୋକେ

ବୁଝି ପାରିବେ । ସେମାନେ ପ୍ରକୃତ ଗୃହର ଲକ୍ଷ୍ମୀ, ସେମାନଙ୍କର ବହୁତ ଜ୍ଞାନ ଅବଶ୍ୟକ, ସେମାନେ ବହୁତ କଥା ଜାଣିବା ଅବଶ୍ୟକ । କେବଳ ବି. ଏ., ଏମ୍. ଏ. ପାଶ କଲେ ଚଳିବ ନାହିଁ । କେବଳ ସ୍କୁଲ୍ କଲେଜରେ ପଢ଼ିଲେ ହେବ ନାହିଁ । ଯେଉଁ ଯେଉଁ ବିଷୟରେ ଜ୍ଞାନ ହେଲେ ଆର୍ଯ୍ୟଗୃହିଣୀ ସୁମାତା, ସୁକନ୍ୟା, ଗୃହଲକ୍ଷ୍ମୀ ହୋଇ ପାରିବେ, ସେପରି ଜ୍ଞାନଲାଭୋପଯୋଗୀ ଶିକ୍ଷା ଅବଶ୍ୟକ ।

ଶ୍ରୀ ଜଗବନ୍ଧୁ ସିଂହ



# ଗୃହଲକ୍ଷ୍ମୀ

## ( ଦ୍ୱିତୀୟ ଭାଗ )



### ପ୍ରଥମ ପରିଚ୍ଛେଦ

ସ୍ତ୍ରୀ—ଆସ ମ, ଆସ ମ, ଦେଖିଲଣି, ଆମ ଦୋମହଲା ଉପରେ ଗୁବଠା ଉଡ଼ାଜାହାଜ ଯାଉଛି । କେଡ଼େ ଚଞ୍ଚଳ ଉଡ଼ି ଯାଉଛି ମ ?

ସ୍ୱାମୀ—ଦେଖ ଦେଖ, ମୁଁ ଦେଖିଛି, ତମେ ସବୁ କେବେ ଦେଖି ନ ଥିଲ, ଦେଖ ।

ସ୍ତ୍ରୀ—ତମେ କେଉଁଠି ଦେଖିଥିଲ ମ ? ଏ ତ ନୂଆ ହୋଇ ଆମ ଦେଶକୁ ଆସୁଛି, ତମେ ଦେଖିଥିଲ କିପରି ?

ସ୍ୱା—ଆହେ, ମୁଁ ଯେତେବେଳେ ଲକ୍ଷ୍ନୌ ସଭାକୁ ଯାଇଥିଲି, ସେଠୁ ପାଟନା ସହରରେ ଦେଖିଥିଲି । ଉଡ଼ାଜାହାଜ ଗୁବଠା ଆସିଥିଲା, ତଳକୁ ଓହ୍ଲାଇଲା, ଆମେ ତା ଭିତର ଦେଖିଲୁଁ ।

ସ୍ତ୍ରୀ—ଏ ଉଡାଜାହାଜ କେଉଁଠି ତିଆରି ହେଉଛି ମ ?

ସ୍ୱା—ଆମେରିକା, ଜର୍ମାନୀ, ଇଂଲଣ୍ଡ ପ୍ରଭୃତି ଦେଶର ଲୋକେ ତିଆରି କରୁଛନ୍ତି ।

ସ୍ତ୍ରୀ—ସବୁ ତ ସେହି ଦେଶ ଲୋକେ କଲେ, ଆମ ଦେଶ ଲୋକେ ଏତେ ପାଠ ପଢ଼ି କଅଣ କରୁଛନ୍ତି ମ ?

ସ୍ୱା—ଆମ ଦେଶ ଲୋକେ ପାଠ ପଢ଼ୁ ନାହାନ୍ତି ମ । ସେମାନେ ପାଉଁଶରେ ଘିଅ ଢାଳୁଛନ୍ତି । ପାଠ ପଢ଼ି ସାରି କେବଳ ମୁକ୍ତ

ବଜାରରେ ଅଛନ୍ତି । ମୁଣ୍ଡଟା ଅପଣା ଅୟତ୍ତରେ ଥିଲେ ସିନା ବୁଦ୍ଧି ଦିଶନ୍ତା, ମୁଣ୍ଡଟାକୁ ତ ଅନ୍ୟ ଜଣକୁ ବିକି ଦେଲେ; ବୁଦ୍ଧି ଦିଶିବ କେଉଁଠୁ ?

**ସ୍ତ୍ରୀ**—ଆମ ଦେଶରେ ଏପରି ଜାହାଜ କେବେ ନ ଥିଲା, ଥିଲେ ସିନା ଲୋକେ ତିଆରି କରି ଜାଣିଥାନ୍ତେ ।

**ସ୍ୱାମୀ**—ତାଙ୍କ ଦେଶରେ କଣ ଆଗରୁ ଥିଲା ? ଏବେ କେତେବର୍ଷ ହେଲା ତ ତିଆରି ହେଉଛି । ଆମ ଦେଶରେ ବରଂ ଆଗେ ଥିଲା। ପୁରାଣରେ ତ ପୁଷ୍ପକଯାନ ବିଷୟ ଲେଖା ଅଛି । ରାମଚନ୍ଦ୍ର ପୁଷ୍ପକଯାନ ଚଢ଼ି ଲଙ୍କାରୁ ଅଯୋଧ୍ୟାକୁ ଆସିଥିଲେ ପରା ? ରାବଣ ପରା ସୀତାଙ୍କୁ ପୁଷ୍ପକଯାନରେ ବସାଇ ପଞ୍ଚବଟୀରୁ ହରଣକରି ନେଇଥିଲା ? ନ ଥିଲା ତ, ପୁରାଣ-ଲେଖକ ଲେଖିଲେ କିପରି ?

**ସ୍ତ୍ରୀ**—ସତ ସତ, ପୁରାଣରେ ତ ସତେ ସେ କଥା ଲେଖା ଅଛି । ହଇ ହେ, ସେ କାଳରେ ଯେତେବ ସେ ଯାନ ଥିଲା, ଲୋକେ ତ ତିଆରି କରିବା କଥା ଜାଣିଥିଲେ—ଭୁଲିଗଲେ କାହିଁକି ମ ?

**ସ୍ୱାମୀ**—କେତେକାଳର କଥା ହେଲାଣି । କିପରି ତିଆରି ହୁଏ ସେ କଥା କୌଣସି ପୋଥିରେ ଲେଖା ନାହିଁ । ଲୋକେ ମଧ୍ୟ ସେଣିକି ମନ ଦେଉ ନାହାନ୍ତି । ସେ ଦିଗରେ ବୁଦ୍ଧି ଖେଳାଉ ନାହାନ୍ତି । ସେ ବିଷୟ ଚିନ୍ତାକଲେ ସିନା ବାଟ ଦିଶନ୍ତା ।

**ସ୍ତ୍ରୀ**—ସେ ଦେଶ ଲୋକେ କାହିଁକି ଏ ସବୁ ଆଡ଼େ ବୁଦ୍ଧି ଖେଳାଉଛନ୍ତି, ଅଉ ଆମ ଦେଶ ଲୋକେ କାହିଁକି କରୁ ନାହାନ୍ତି ମ ?

**ସ୍ୱାମୀ**—ଆମ ଦେଶ ଲୋକେ ବଡ଼ ଅଳ୍ପକେ ସନ୍ତୁଷ୍ଟ । ଶାଗଭାତ ମୁଠାଏ ଖାଇଲେ ଯଥେଷ୍ଟ । ଓଳିଏ ମିଳିଗଲେ ମଧ୍ୟ ଚିନ୍ତା

ନାହିଁ । ସେ ଦେଶ ଲୋକେ ସେପରି ନୁହନ୍ତି । ସେ ଦେଶ ଲୋକେ ରାତିଦିନ ପାଞ୍ଚୁଛନ୍ତି କିପରି କେଉଁଠୁ ଟଙ୍କା ବେଶୀ ଆସିବ । ନାନା ଜିନିଷ ତିଆରି କରି ଦେଶ ବିଦେଶରେ ବିକି କିପରି ପଇସା ଟାଣି ଆଣିବା, ଏ କଥା ସେମାନେ ରାତି ଦିନ ଭାବୁଛନ୍ତି । ଭାରତବର୍ଷରେ କି ଜିନିଷ ନାହିଁ, କି ଜିନିଷ ତିଆରି କଲେ ସେ ଦେଶ ଲୋକେ କିଣିବେ,— ଏ କଥା ବୁଝି ଯାଉଛନ୍ତି । ଏପରି ଚିନ୍ତା କରିବାରୁ ତାଙ୍କୁ ନାନା ବୁଦ୍ଧି କୌଶଳ ଦିଶି ଯାଉଛି । ମଟରଗାଡ଼ି, ସାଇକେଲ କରି କେତେ ଟଙ୍କା ନେଇ ଯାଉଛନ୍ତି । ଆମେ ଧାନ ଶଙ୍ଖ, ପାନ ବିକି ପଇସାଟିକ ସେ ଦେଶକୁ ଦେଉଥାଉଁ । ଆମ ଦେଶରେ ପଇସା ରହିବ କିପରି ?

ସ୍ତ୍ରୀ—ହଇ ହେ, ଏ ମଟର ବା ଉଡ଼ାଜାହାଜ ଯେ ତିଆରି କରୁଛି, ତାର କେତେ ବୁଦ୍ଧି ହୋଇଥିବ, ସେ କେତେ ପାଠ ପଢ଼ିଥିବ ?

ସ୍ୱାମୀ—ଅହେ ନାହିଁ ମ । ମଟର ଗାଡ଼ି ଯେଉଁ ସାହେବ ତିଆରି କରୁଛି ତା ନାମ ଫୋର୍ଡ଼ । ସେ ପରା ଜଣେ ମୂର୍ଖ ମଜୁରିଆ । ଦିନକୁ ଟଙ୍କାଏ ଲେଖାଏ ମଜୁରି ନେଇ ଗୋଟାଏ କଳ କାରଖାନାରେ କାମ କରୁଥିଲା । ସେ କଳଘରେ କାମ କରୁ କରୁ ତାକୁ ବୁଦ୍ଧି ଦିଶିଲା, ସେ ମଜୁରି ଛାଡ଼ି ଘରେ ରହି ମଟର ତିଆରି କଲା । ଏବେ ସେ ପୃଥିବୀ ମଧ୍ୟରେ ସବୁଠାରୁ ବଡ଼ ଧନୀ । ତାର ପ୍ରତି ମିନିଟରେ ଲକ୍ଷେ ଟଙ୍କା ଆୟ । ଦରିଦ୍ର ଲୋକଙ୍କ ସାହାଯ୍ୟ ପାଇଁ ୯୦ କୋଟି ଟଙ୍କା ଦାନ କରିଥିଲା । ତା ଘରେ କେତେ ଟଙ୍କା ଥିଲା ଏଥିରୁ ବୁଝିବ । ଆମ ଦେଶ ଲୋକେ ଜିନିଷ ତିଆରି କରି ବିଦେଶରୁ

ପଇସା ଅଣିବା ଦୂରେ ଥାଉ, ଆମ ଦେଶରେ ଯେତେ ଜିନିଷ ଦରକାର ହେଉଛି, ସେତକ ତ ତିଆରି କରିପାରୁ ନାହାନ୍ତି !

ସ୍ତ୍ରୀ—ଆମ ଦେଶ ଲୋକେ କଣ ଉଡ଼ାଜାହାଜ ତିଆରି କରି ପାରିବେ ?

ସ୍ୱା—ନ କରି ପାରିବେ କାହିଁକି ମ ? ଯେ କରୁଛନ୍ତି ତାଙ୍କର କଣ ଗୁରିଟା ହାତ, ନା ଗୁରିଟା ଆଖି ? ସେମାନେ ତ ଆମରିପରି ମଣିଷ । ସେମାନେ ଯାହା କରି ପାରୁଛନ୍ତି, ଆମେ ତାହା ନ କରି ପାରିବା କିଆଁ ? ଅସଲ୍ କଥା—ମନ ଦେଲେ ହେଲା । ମନଯୋଗ କଲେ ଲୋକ ଯାହା ଇଚ୍ଛା ତା କରି ପାରେ ।

ସ୍ତ୍ରୀ—ସେମାନେ କଣ ପିଲଦିନୁ ଏକଥା ଶିଖନ୍ତି ?

ସ୍ୱା—ପିଲଦିନୁ ଦେଖୁଛନ୍ତି, ମା ବାପାଙ୍କଠାରୁ ସାଇପଡ଼ିଶାରୁ ଶିଖୁଛନ୍ତି । ସେ ଦେଶର ମାଆମାନେ ପିଲଙ୍କୁ ମିଛ କଥା କହି ଡରାନ୍ତି ନାହିଁ । ପିଲର ଯେପରି ସାହସ ବଢ଼ିବ ସେପରି କଥା ପିଲଙ୍କୁ କହନ୍ତି । ସେ ଦେଶର ମେହନ୍ତରମାନେ ରାସ୍ତା ଝାଡ଼ା କଲାବେଳେ ପକେଟରେ ଖବର କାଗଜ ରଖିଥାନ୍ତି, ଫୁରୁସତ ପାଇଲେ ଟିକିଏ ପଢ଼ି ପକାନ୍ତି । ସେ ଦେଶ କଥା କାହିଁକି କହୁଚ ? ସେ ଦେଶ ମାଟି କଥା କହୁଛି । ଧନୀ ସେହି ଦେଶରେ, ଜ୍ଞାନୀ ସେହି ଦେଶରେ, ମାନୀ ସେହି ଦେଶରେ, ଦାନୀ ସେହି ଦେଶରେ । ସେ ଦେଶ ମାଇପେ ଦୁଧରେ ଗାଧୁଅନ୍ତି । ଦୁଧରେ ଗାଧୋଇଲେ ଦେହରୁ ମଳି ଛାଡ଼ିଯିବ । ଆମ ଦେଶ ମାଇପେ ଟିକିଏ ଦୁଧ ଦହି ଖାଇବାକୁ ପାଉ ନାହାନ୍ତି । ସେ ଦେଶରେ ଅମଦାନି ବହୁତ, ଖର୍ଚ୍ଚ ବହୁତ, ତେଣୁ ତାଙ୍କର ବୁଦ୍ଧି ଗୁଳନା ବେଶୀ । ଯେ ଯେତେ ଭାବିବ, ତାକୁ ତେତେ ବୁଦ୍ଧି ଦିଶିବ । ଯେ ଅଳସୁଆ ହୋଇ ଶୋଇବ, ତାକୁ କିଛି ଦେଖାଯିବ ନାହିଁ ।

ସ୍ତ୍ରୀ—ହଁ, ସେ କଥା ସତ। ଆମଦେଶରେ ଯାହା ବାପ ଅଜା ଅମଳରୁ ହୋଇ ଆସୁଛି ତାହା କରିବେ। ଗୋଟାଏ ନୂଆ କଥା କରିବାକୁ ବୁଦ୍ଧି ଦିଶେ ନାହିଁ। ଅଚ୍ଛା, ଏ ଆକାଶଯାନରେ କି କାମ ହେଉଛି ?

ସ୍ୱାମୀ—ଅହେ, ଏଥିରେ ସେମାନେ ସବୁ କାମ କରୁଛନ୍ତି। ଏହା ଉପରେ ବସି ଯୁଦ୍ଧ କରୁଛନ୍ତି କି ! ଦେଖୁଛ ତ ମାସକ ବାଟ ଦୁ'ଘଣ୍ଟାରେ ଯାଉଛନ୍ତି। କେଡ଼େ ସୁବିଧା ହେଉଛି ଦେଖ ନାହିଁ ! ଆମେ ଶଗଡ଼ ଗାଡ଼ିରେ ବସି ଗ୍ରାମକୁ ଗଲେ ଧକଡ଼ ଧକଡ଼ ହୋଇ ସକାଳେ ବାହାରିଲେ ସଞ୍ଜକୁ ପହଞ୍ଚିବା; ମାତ୍ର ଏ ଯାନରେ ସକାଳ ଆଠଟା ବେଳେ ବାହାରିଲେ ପାଞ୍ଚ ମିନିଟରେ ପହଞ୍ଚିଯିବା। ଆଗେ ଦେବତା ଓ ଅସୁରମାନେ ଏପରି ଯାନରେ ଯିବା ଆସିବା କରୁଥିଲେ।

ସ୍ତ୍ରୀ—ଅଚ୍ଛା, ପୁରାଣରେ ଲେଖା ଯାଇଛି, ନାରଦଙ୍କର ଢେଙ୍କୀ ବାହନ ଥିଲା, ଗଣେଶଙ୍କର ମୂଷା ବାହନ ଥିଲା, ସରସ୍ୱତୀଙ୍କର ହଂସ ବାହନ ଥିଲା, କାର୍ତ୍ତିକଙ୍କର ମୟୂରବାହନ ଥିଲା। ଏପରି ଅନେକ ପ୍ରକାର ବାହନ ଥିଲା। ଏ ସବୁ କଣ ?

ସ୍ୱାମୀ—ଯେଉଁ ଉଡ଼ାଜାହାଜ ଦେଖିଲ ସେ ଦେଖିବାକୁ କିପରି ?

ସ୍ତ୍ରୀ—ସେ ତ କେତେ ଉଚ୍ଚରେ ଯାଉଥିଲା, ଭଲରୂପେ ଜଣାଗଲା ନାହିଁ, ଗୋଟାଏ ଚିଲପରି ଦିଶିଗଲା !

ସ୍ୱାମୀ—ତେବେ ଏଟାକୁ ଚିଲ ବାହନ କୁହାଯାଇପାରେ। ସେହିପରି ବୋଧହୁଏ ପୂର୍ବେ ବାହନଗୁଡ଼ାକର ରୂପ ଅନୁସାରେ ନାମ ଥିଲା। ସତେ କଣ ମୂଷାଟା ଉପରେ ଗଣେଶ ବୁଲୁଥିଲେ ? ମୁଁ ଅନୁମାନ କରୁଛି, ତାଙ୍କ ଯାନର ଆକାର ମୂଷା ପରି ଥିଲା। ସେ ଦେଶ ଲୋକେ ବୁଦ୍ଧି ଖରଚ କରି ଉଡ଼ାଜାହାଜ

ତିଆରି କରି ଆମ ଆଖି ଆଗେ ଉଡ଼ି ବୁଲୁଲେ, ଆମେ ହାଁ କରି ଚାହିଁଥିବା, ଦେଖୁଥିବା, 'ଏ କଣ, ଏ କଣ' ହେଉଥିବା। ଅହେ, କୁନିକି ତାକୁ ଦେଖାଇ ଦିଅ ମ । ସେ ତ ଦେଖିଲେ କଣ ବୋଲି ଭାବିବ, ତାରି ଭଁ ଭଁ ଶବ୍ଦ ଶୁଣି ଚମକି ପଡ଼ିବ । ତାକୁ ବୁଝାଇ ଦିଅ ।

ସ୍ତ୍ରୀ—( କୁନିକୁ ଦେଖାଇ ଦେଇ )

ଉଡ଼ିଯାଉଅଛି ଉଡ଼ାଜାହାଜ ଲୋ ଉଡ଼ୁଅଛି ଘରଘର,
ଦେଖ ଲୋ ଦେଖ ଲୋ ମୋ କୁନିମୁହଁ ମନରେ କରୁ ନା ଡର ।
ବସିଛି ତା ପରେ ଛୋଟ ଏକ ମଣିଷ ଦଇଗୋଡ଼ ଦୁଇହାତେ,
ଚଳାଉଛି କଳ ନିଜ ବୁଦ୍ଧିବଳେ ଉଡ଼େ ଆକାଶେ କିମ୍ପାଇ ।
ପଡ଼ିଯିବ ବୋଲି ଡର ନାହିଁ ତାର ଗୁଲୁଛି ପବନବେଗେ,
କୁଅ କୋଇଲିଙ୍କ ପରି ଉଡ଼ିଯାଏ ଅତ୍ୟନ୍ତ ମନ ସୁରାଗେ ।
ପାହାଡ଼ ଜଙ୍ଗଲ ଗିରି ପାରାବାର ଲଙ୍ଘିଯାଏ ଘନ ଘନ,
ଟେଣା ହାଡ଼ ହାଣ୍ଡି ଖରେ ଯାଏ ଉଡ଼ି ଦେଖ ଲୋ ଦେଖ ଲୋ କୁନି
ବଡ଼ ହେଲେ ତୁହି ବସିବୁ ଏ ଯାନେ ଉଡ଼ିବୁ ଆକାଶେ ଯାଇ,
ତର ଅସି ତୋର ନେଇଯିବ ତୋତେ ଏହି ଯାନରେ ବସାଇ ।

ସ୍ୱାମୀ—ଅଚ୍ଛା ଗୀତଟିଏ ଗାଇ ଦେଲ ତ । ପିଲାଙ୍କୁ ଏପରି ଗୀତ ଶୁଣାଇଲେ ତାଙ୍କ ମନ ଉପରକୁ ମିବ । ସେମାନେ ବଡ଼ ହେଲେ ଏ ଯାନ ବିଷୟରେ ଭାବିବେ, ଚିନ୍ତିବେ—ତେବେ ଅମ ଦେଶରେ ମଧ୍ୟ ତିଆରି ହୋଇପାରେ ।

ସ୍ତ୍ରୀ—କୁନି କଣ ତିଆରି କରିବ ?

ସ୍ୱାମୀ—କୁନି ତିଆରି ନ କରିବ କାହିଁକି ? ଏଥିରେ ଏପରି କିଛି ତ ଅସମ୍ଭବ କଥା ନାହିଁ । କୁନିଟିଏ କଣ ସାନ ବୋଲି ମନେ କରୁଛ କି ? ବଡ଼ ହେଲେ ତା ବୁଦ୍ଧି କେଉଁ ଆଡ଼କୁ ଯିବ

କିଏ କହିପାରେ ? ତାହାରେ କି ଶକ୍ତି ଅଛି କିଏ ଜାଣେ ? ସେ ଯେବେ ଉପଯୁକ୍ତ ଶିକ୍ଷା ପାଏ, ତା ବୁଦ୍ଧି ସେ ଦିଗକୁ ନ ଯିବ ବୋଲି କିଏ କହିବ ? ତାକୁ ପିଲଦିନୁ ଭଲକଥା ଶିଖାଅ, ଭଲକଥା ଶୁଣାଅ, ଦେଖିବ ତାର ବୁଦ୍ଧି କେଉଁ ଆଡ଼କୁ ଯିବ । ଗୁଡ଼ାଏ ଏଣୁତେଣୁ ବାଜେ କଥା ଶିଖାଇଲେ ବୁଦ୍ଧି ମାଡ଼ା ହୋଇଯିବ । ଆଜି ଏତିକି ।

---

## ତୃତୀୟ ପରିଚ୍ଛେଦ

ସ୍ୱା—ହଇହେ, ସେଇଟା କଣ ପକାଇ ଦେଲ କି ?

ସ୍ତ୍ରୀ—ଜାଣି ନ, କେଉଁଟି କଣ ପକାଇଲି ? ଘର ଓଳାଇ ଅଳିଆ ଗୁଡ଼ାକ ପକାଇ ଦେଲି ତ ଆଉ କଣ ?

ସ୍ୱା—ହଁ ହେ, ସେ ଅଳିଆ ସାଥିରେ କଣ ଗୋଟାଏ ଗଲା, ଠଣ୍ କରି ଶୁଭିଲା !

ସ୍ତ୍ରୀ—କଉଡ଼ି କଡ଼ାଏ କେଉଁଟି ପଡ଼ିଥିଲା, ସେଇ ହୋଇଥିବ । ହଁ ହଁ, ସେଇ କଉଡ଼ି କଡ଼ାକ !

ସ୍ୱା—ଆହା ! କଉଡ଼ିଟାକୁ ପକାଇ ଦେଲ ?

ସ୍ତ୍ରୀ—ସେ କଡ଼ାକ କଉଡ଼ି କଣ ହେବ ? ମାଲେ, ଏ କଉଡ଼ି କଡ଼ାକୁ ଏତେ ଆଦର ? ମୋ ଧନଟା ଗୁଇଁକନା ହୋଇଗଲା, ମୁଁ ବୋଇଲି ଅବା ଟଙ୍କା ସୁନା କଣ ପକାଇ ଦେଲି !

ସ୍ୱା—ହଁ ହଁ, ଆଜି କାଲି ପଞ୍ଚ ଟଙ୍କା ପଇସା ବେଶି ହୋଇଛି; ଏକଥା କହିବ ନାହିଁ କାହିଁକି ? ଯେତେବେଳେ ଆମ ଦେଶରେ କଉଡ଼ି ଚଳୁଥିଲା, ସେତେବେଳେ କଥା କଣ ଅଛି

ଅଛୁ ? ଏତେବେଳେ ମଧ୍ୟ କଉଡ଼ି ତ କେତେ କାମରେ ଲାଗେ !

ସ୍ତ୍ରୀ—ଏ କଡ଼ାଏ କଉଡ଼ି କି କାମରେ ଲାଗିବ ମ ?

ସ୍ବା—କଡ଼ାଏ କଉଡ଼ି ବୋଲି ଅପବାଦ କର ନାହିଁ । ସମୟରେ ଏ କଡ଼ାକ ଦ୍ୱାରା ଲୋକ ବଡ଼ଲୋକ ହୋଇପାରେ !

ସ୍ତ୍ରୀ—କଡ଼ାଏ କଉଡ଼ିରେ ଯେବେ ଲୋକ ଧନୀ ହୁଅନ୍ତେ, ତେବେ ତମେ ଦିନକେ ଯାହା କରେଇଗୁ ଅଣୁଛ; ସେଥିରେ ତ ଆମେ ଆମ ସାତ ପୁରୁଷ ବଡ଼ଲୋକ ହୋଇଯାନ୍ତେ । ତମେ ଅଉ ନାତ କରେଇକି ଯାଅନ୍ତ କାହିଁକି ?

ସ୍ବା—ସେ କଥା ତ ଅସମ୍ଭବ ନୁହେଁ, କିନ୍ତୁ ଆମର ସେପରି ପରିଶ୍ରମ ନାହିଁ, ମନ ନାହିଁ, ଉଦ୍ୟମ ନାହିଁ । ନ ହୁଅନ୍ତା କାହିଁକି ? ତମେ ଜାଣ ଗୋଟାଏ ଗଳ୍ପ ଅଛି—

"କଡ଼ାକେ ମରି, କଡ଼ାକେ ତରି
କଡ଼ାକେ ଘର ଦ୍ୱାର କରି ।"

ସ୍ତ୍ରୀ—ନା, ମୁଁ ଜାଣେ ନାହିଁ, କହିଲ କଣ ?

ସ୍ବା—ପୂର୍ବକାଳରେ ଜଣେ ରଜା ଥିଲେ । ସେ ଯେତେବେଳେ ବିବାହ ହୋଇ ଅସୁଛନ୍ତି, ତେତେବେଳେ ବାଟରେ କଡ଼ାଏ କଉଡ଼ି ପଡ଼ିଥିଲା । କଉଡ଼ି ଉପରେ ରାଣୀଙ୍କ ନଜର ପଡ଼ିଲା । ରାଣୀ ସବାରି ବନ୍ଦ କରି କଉଡ଼ି କଡ଼ାକ ଗୋଟାଇ ନେଇ ମୁଣ୍ଡରେ ମାରି ଅଣ୍ଟାରେ ଖୋସିଲେ । ରଜା ଏ କଥା ଦେଖି ବଡ଼ ଲଜ୍ଜିତ ହେଲେ; ମନରେ ପାଞ୍ଚିଲେ, ଦେଖ, ରାଣୀ ମୋପରି ଲୋକର ହାତ ଧରି କଡ଼ାଏ କଉଡ଼ିକି ଏତେ ଲୋଭ କଲା—ଏତେ ଲୋକରେ ମୋ ମୁହଁ ଟିକିଏ ହୋଇଗଲା ! ଲୋକେ ମତେ କଣ କହୁଥିବେ ! ଏ ସ୍ତ୍ରୀଠାରୁ ବଡ଼

ଧ୍ୟାନ ଦୃଷ୍ଟି; ଏହାର ମୁଖାବଲୋକନ କରିବାର ନୁହେଁ । ଏପରି ପାଞ୍ଚି ରାଣୀଙ୍କୁ ପଚାରିଲେ । ରାଣୀ କହିଲେ, "ଆପଣ କଡ଼ାଏ କଉଡ଼ି ବୋଲି ଘୃଣା କରିବେ ନାହିଁ—କଡ଼ାକେ ତର, କଡ଼ାକେ ମର, କଡ଼ାକେ ଘରଦ୍ୱାର ଉଧ ।" ଅର୍ଥାତ୍ କଡ଼ାଏ କଉଡ଼ି ଦ୍ୱାରା ଲୋକ ଘରଦ୍ୱାର କରିପାରେ । ଏ କଥା ଶୁଣି ରାଜା ମନେ ମନେ ବଡ଼ କ୍ରୋଧ ହେଲେ । ମନେ ମନେ ପାଞ୍ଚିଲେ, 'ଅଚ୍ଛା, ଏ ସ୍ତ୍ରୀ କିପରି କଡ଼ାକେ ଘରଦ୍ୱାର କରିବ, ପରୀକ୍ଷା କରିବା ।' ଏହି ଉଦ୍ଦେଶ୍ୟରେ ରାଜା ରାଣୀଙ୍କ ପାଇଁ ଗହନ ବନ ମଧ୍ୟରେ ଖଣ୍ଡିଏ ଘର କରି ଦେଲେ । ସେ ଘରେ ରାଣୀଙ୍କି ଛାଡ଼ି ଦେଲେ । ପିନ୍ଧିବା ଲୁଗା ଛଡ଼ା ଅଉ କିଛି ଦେଲେ ନାହିଁ । ଦାସୀଟିଏ ସାଥିରେ ଦେଲେ । ରାଣୀଙ୍କ ହାତରେ ସେହି କଡ଼ାକ କଉଡ଼ି ଛଡ଼ା ଅଉ କିଛି ନ ଥିଲା ।

ସ୍ତ୍ରୀ—ଅଚ୍ଛା, ତହିଁ ଉତ୍ତାରୁ କଣ ହେଲା ?

ସ୍ୱାମୀ—ଅଚ୍ଛା, ତମେ ଭାବି ଦେଖି ଏପରି ଅବସ୍ଥାରେ ପଡ଼ି ରାଣୀ କଣ କରିଥିବ ?

ସ୍ତ୍ରୀ—ଚୂଲମୁଣ୍ଡ କରିଥିବ । ଉପାସରେ ପଡ଼ି ଛଟପଟ ହୋଇ ମରିଥିବ । ଅଗନା ଅଗନି ଚନସ୍ତ୍ର, ସାହା ଭରସା କିଛି ନାହିଁ । ବାଘ ଭାଲୁ ଡାଗା, ହାତରେ କଡ଼ାଏ କୋଲି କଉଡ଼ି, ସେ ଥାନ ଦେଖୁ ଦେଖୁ ତ ପ୍ରାଣ ଛାଡ଼ି ଯାଇଥିବ !

ସ୍ୱାମୀ—ନାହିଁ ହେ, ସେ ରାଣୀ ତମପରି ନୁହନ୍ତି—ତମଠାରୁ ସେ ବୁଦ୍ଧିମତୀ । ଯାହା ମନରେ ବିଶ୍ୱାସ ଅଛି, ସେ ଦୁର୍ବଳ ନୁହେଁ; ସେ ଜଣେ ଆଦର୍ଶ ରମଣୀ ।

ସ୍ତ୍ରୀ—ଅଚ୍ଛା, ସେ କଣ କଲା କହିଲ ? ସେ କେଡେ ଚତୁରୀ ଦେଖିବା ଦେଖି ?

ସ୍ୱା—ଅଚ୍ଛା, ଶୁଣ । ରାଣୀ ବିନୋଦିନୀ ଉପବାସ ରହିଲେ, ମାତ୍ର ଭାତ ଭାବ ଏକ ଉପାୟ ସ୍ଥିର କଲେ । ଦାସୀଙ୍କ ପଠାଇ ବଜାରର ଧାନ କିଣି ଆଣିଲେ ।

ସ୍ତ୍ରୀ—ବଜାରୁ କେତେ ଧାନ ହେଲା ସେ ? ତାକୁ ଦି'ଜଣ ମାଇପେ କେତେ ଦିନ ଖାଇଲେ ? ତମ କଥା ମତେ ପସନ୍ଦ ଲାଗୁ ନାହିଁ ।

ସ୍ୱା—କଥାଟା ଶେଷ ଯାଏ ଶୁଣ । ସେ କଣ ଧାନ କିଣିଲେ ଖାଇବା ପାଇଁ ? ଯେତକ ଧାନ ମିଳିଲା, ସେତକ ନେଇ ଆପଣା ଘର ପାଖରେ ଗୋଟି ଗୋଟି କରି ବୁଣିଦେଲେ । ସେ ତ ଜଙ୍ଗଲ ଜାଗା; ଧାନ ଦେଖି ମୟୂରମାନେ ଆସି ନାଚ କଲେ । ମୟୂର ନାଚ କରୁ କରୁ ଅନେକ ଚନ୍ଦ୍ରିକା ଝଡ଼ିଲା; ରାଣୀ ଦେଇକାଯାକ ଆଣିଲେ ଯହିଁରେ ପଙ୍ଖା ପ୍ରଭୃତି ନାନା ଜିନିଷ ପ୍ରସ୍ତୁତ କଲେ । ରାଣୀ ଅନେକ ଜିନିଷ କରି ଜାଣନ୍ତି । ରାଣୀ ପଙ୍ଖାଟିଏ କରି ବଜାରକୁ ଦାସୀଙ୍କ ପଠାଇଲେ । ପଙ୍ଖା ବିକ୍ରୀ ହେଲା—ଅଣାଏ ଦି'ଅଣା ମିଳିଲା । ସେତକ ପଇସାରେ ରାଣୀ ପୁଣି ଧାନ କିଣିଲେ, ବେଶୀ ଧାନ ବୁଣିବାରୁ ବେଶୀ ମୟୂର ଆସିଲେ, ବେଶୀ ଚନ୍ଦ୍ରିକା ମିଳିଲା । ଚନ୍ଦ୍ରିକା ବେଶୀ ହେବାରୁ ପଙ୍ଖା ବେଶୀ ହେଲା । ବେଶୀ ପଙ୍ଖା ହେବାରୁ ବେଶୀ ଧନ ମିଳିଲା । ଖାଇବା ଖର୍ଚ୍ଚ ଯାଇ ଧନ ବଳିଲା । ରାଣୀ କୋଠା-ବାଡ଼ି କରି ଘରଦ୍ୱାର କଲେ । କେତେକାଳ ପରେ ରାଜା ଆସି ଦେଖିଲେ । ସମସ୍ତ ବୃତ୍ତାନ୍ତ ଶୁଣି ଆଶ୍ଚର୍ଯ୍ୟ ହେଲେ ଏବଂ ରାଣୀଙ୍କି ବହୁତ ପ୍ରଶଂସା କଲେ ।

ସ୍ତ୍ରୀ—ହଁ, ଏପରି କଲେ ହେବ ନାହିଁ କାହିଁକି ?

ସ୍ୱା—କହେ, ଏ କଣ ଗୋଟିଏ କଥା । ଏପରି ଅନେକ ସ୍ଥାନରେ ଦେଖାଯାଏ । ଆମ ଏ ସ୍ୱଳ୍ପ ସହରରେ କେତେ ନତେ ପୋଖରୀ ଅଛି, ଦେଖିଛ ? ଗୋଟିଏ କଖାରୁ ମଞ୍ଜିରୁ ସେ ପୋଖରୀ ଖୋଳା ହୋଇଥିବାର ପ୍ରବାଦ ଅଛି ।

ସ୍ତ୍ରୀ—ତମେ ସବୁ ଅପୂର୍ବ କଥା କହ । କଖାରୁ ମଞ୍ଜିଟାରୁ ପୋଖରୀଟାଏ ହେଲା କିପରି ପ ?

ସ୍ୱା—ଯେ ପୋଖରୀ ଖୋଳାଇ ଥିଲେ, ସେ ଦିନେ ଗୋଟିଏ କଖାରୁ ମଞ୍ଜି ପାଇଲେ, ସେ ମଞ୍ଜିଟିକୁ ନେଇ ଗଛ ଲଗାଇଲେ; ଗଛ ହେଲା ବହୁତ କଖାରୁ ଫଳିଲା । ପର ବର୍ଷକୁ ବେଶୀ ମଞ୍ଜି ହେଲା, ବେଶୀ ଗଛ ହେଲା, ବେଶୀ କଖାରୁ ଫଳିଲା । ଏ କଖାରୁ ସବୁ ବିକି ହୋଇ କ୍ରମେ ଧନ ସଞ୍ଚୟ ହେଲା । ଶେଷରେ ସେହି ଧନ ବୃଦ୍ଧି ପାଇଲା ଏବଂ ତାଙ୍କ ପୋଖରୀ ଖୋଳା ହେଲା ।

ସ୍ତ୍ରୀ—ଆଉ ଏପରି କିଏ କରିଥିଲେ ?

ସ୍ୱା—ଖୋଜିଲେ କେତେ ମିଳିବ । ପିମ୍ପୋଲ ପାଖରେ ଗୋଟାଏ ଭାରି ବଡ଼ ପୋଖରୀ ଅଛି, ତାକୁ 'ତରୀ ନାଗୀ ପୋଖରୀ' କହନ୍ତି ? ତରୀ ନାମରେ ଗୋଟାଏ ବିଧବା ବ୍ରାହ୍ମଣୀ ଥିଲା । ସେ ଲୋକଙ୍କ ବଳଦ ବଳି ତାକୁ ବିକୀ କରି ସେହି ଧନରେ ଏ ପୋଖରୀ ଖୋଳାଇ ଥିଲା । ଆଉ ଜଣେ ବିଧବା ବ୍ରାହ୍ମଣୀ ସୂତା କାଟି ସୂତା ବିକୀ କରି ସେହି ଧନରେ ୧୫୦ ମାଣ ଜମି କିଣି ଗୋଚର କରି ଦେଇ ଯାଇଛି । ସେ ପଡ଼ିଆକୁ 'କାଟେଣୀ ପଡ଼ିଆ' କହନ୍ତି । ବଙ୍ଗଳା ପାଖରେ ସେ ପଡ଼ିଆ । ଭାତ ହାଣ୍ଡିରୁ ଗୋଟିଏ ଟିପିଲେ ହେଲା । ଦେଖିଲ ତ ସାମାନ୍ୟ କଥାରୁ ଲୋକ ମନେ କଲେ କିପରି ବଡ଼ କଥା

କରିପାରେ । ଏହି ଦେଶରେ ତ ଏପରି ହେଉଥିଲା । ସେହି ଦେଶ ଅଛି, ଲୋକେ ଅଛନ୍ତି; ମାତ୍ର ମନ ସେପରି ନାହିଁ, ସବୁ ଅଳସୁଆ ହୋଇ ପଡ଼ିଛନ୍ତି । ଏବେ କେବଳ ଚାକିରି କରିବା, ଭିକ୍ଷା ମାଗିବା ଲୋକଙ୍କର ପ୍ରଧାନ ବ୍ୟବସାୟ । ପାଠ ପଢ଼ିଲେ, କିନ୍ତୁ ସେଥିରୁ ଚାକିରି ଛଡ଼ା ଆଉ ଅନ୍ୟ ବୁଦ୍ଧି ଦିଶୁ ନାହିଁ । ଭିକ୍ଷା ମାଗିବେ ପଛକେ ଗୋଟାଏ ବୁଦ୍ଧି କାଢ଼ି କାମ କରିବେ ନାହିଁ । ଏଥିରେ ଲକ୍ଷ୍ମୀ ବର ଦେବେ କିପରି ? ଲକ୍ଷ୍ମୀ ଚଞ୍ଚଳା । ଯେ ଚଞ୍ଚଳ ହେବ, ପରିଶ୍ରମ କରିବ, ଲକ୍ଷ୍ମୀ ତା ପାଖରେ ଯାଇ ବସିବେ । ଯେ ଅଳସୁଆ ହେବ, ସେ କିପରି ଲକ୍ଷ୍ମୀବନ୍ତ ହେବ ?

ସ୍ତ୍ରୀ—ତମେ ତ ଏତେ ଟଙ୍କା ଅଣୁଛ, ଅଣ୍ଟୁ ନାହିଁ କାହିଁକି ?

ସ୍ୱାମୀ—ତମକୁ କଡ଼ାକ ଧ'କଡ଼ା କରି ଆସୁ ନାହିଁ, ଯାହା ଆସିଲା ତାକୁ ଏକାଦିନକେ ଖର୍ଚ୍ଚ କରିଦିଅ । ପଇସା ପ୍ରତି ତେତେ ନଜର ନାହିଁ । କଡ଼ାକ ଧ'କଡ଼ା କରିବା ଦୂରେ ଥାଉ, ପଚିଶ କଡ଼ାକୁ କଡ଼ାଏ ବୋଲି ମନେ କରି ଖର୍ଚ୍ଚ କର । କଡ଼ାକ ଧ'କଡ଼ା କରିବା ଜ୍ଞାନ ଥିଲେ ଆଜି ଆମଦେଶ ଲୋକେ ଓଳିଏ ଖାଇ ଓଳିଏ ଉପବାସ ରହନ୍ତେ ନାହିଁ । ପରିବାରର କି ସ୍ତ୍ରୀ କି ପୁରୁଷ, ସମସ୍ତେ ଏହି ମନରେ ଯେବେ କାମ କରନ୍ତେ, ତେବେ ଚିନ୍ତା କଣ ? ଆଗେ ଲୋକଙ୍କର ସେହିପରି ମନ ଥିଲା । ଯାହାର ମାଣେ ଜମି ଥିଲା, ସେ ତାକୁଇ ସେବା କରି ପଚିଶି ପ୍ରାଣୀଙ୍କ ପ୍ରତିପୋଷଣ କରୁଥିଲା । ଏବେ ସେପରି ମନ ନାହିଁ, ଆମଦେଶ ଲୋକେ ଅଳସୁଆ ହୋଇ ଗଲେଣି ।

ସ୍ତ୍ରୀ—ହଁ, ନୁହେ କଣ ? ଲୋକେ କଣ ଜାଣି ଶୁଣି ହେଳା କରୁଛନ୍ତି ?

ସ୍ୱା—ଲୋକଙ୍କ ସ୍ୱଭାବ ଏପରି ହୋଇ ଗଲାଣି ଯେ, ସେମାନେ କ'ଣ କରୁଛନ୍ତି ଜାଣିପାରୁ ନାହାନ୍ତି । ପଚାରିଲେ କହିବେ, 'କପାଳେ ନାହିଁ ।'

ସ୍ତ୍ରୀ—ସେ କଥା କଣ ସତ ନୁହେଁ ?

ସ୍ୱା—କପାଳ କଣ କି ? ଯାହା କରିବ ତାହା କପାଳରେ ପରିଣତ ହେବ । କଥା ଅଛି 'ଉଦ୍‌ଯୋଗ କର୍ମ କର୍ତ୍ତା' 'ସାଧିଲେ ସିଦ୍ଧି ।'

କଡ଼ାକେ ତଳି କଡ଼ାକେ ମଳି କଡ଼ାକେ ଘର ଦୁଆର କରି ।
କଡ଼ାକ ଦ'କଡ଼ା କରି ନ ଜାଣିଲେ ଦାନ ନ ସରିବ ଝୁରି ଝୁରି ।
ବସି ଖାଇଲେ ଜଳ୍ପ ନ ବଳେ ନଇବାଲି ହେଲେ ଯିବ ସରି ।
ଆଳସ୍ୟ ହୋଇ ବସି ଖାଇଲେ ଅଳପକେ ହେବ ପଥଭିକାରୀ ।
ଅକର୍ମି ଲୋକକୁ କାମ ନ ମିଳିଲେ ଦେଖାଏ ଅନକୁ କଥା ଚାତୁରୀ ।
ଅପଣା କରମ ଆନ ଆଗେ କହି ମନେ ମନେ ଖୁସି ହୁଅଇ ଝୁରି ।

ଏହି ନୀତିରେ ଯେଉଁମାନେ ଚଳନ୍ତି, ତାଙ୍କୁ ଲକ୍ଷ୍ମୀ ବରଦାୟକ ହେବେ କିପରି ? ଯେ କୌଣସି ପ୍ରକାରେ ମୁଠାଏ ଖାଇ ଦେଇ ଦ୍ୱାଣ୍ଡକୁ ବାହାର ପଡ଼ିଲେ ହେଲା । ମନେ ମନେ ଭାରି ବଡ଼ଲୋକ, ଅଥଚ କଉଡ଼ାଏ ଉପାର୍ଜ୍ଜନ କରିବାର ଶକ୍ତି ନାହିଁ ।

---

## ତୃତୀୟ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ତେବେ କାଲି କଣ ସ୍ୱର୍ଣ୍ଣଲତା କଥା କହୁଥିଲ ? ସେ ଝିଅଟି ତାହାଙ୍କ ପରିଚାରିକା ? 

ସ୍ୱା—କେଉଁ ସ୍ୱର୍ଣ୍ଣଲତା ?

ସ୍ତ୍ରୀ—କଣ ଗୋଟାଏ ଖବର କାଗଜ ପଢ଼ି କହୁ ନ ଥିଲ ?—
ବଙ୍ଗଳା ଜାଗାରେ ଗୋଟିଏ ଝିଅ ପୋଡ଼ି ହୋଇ ମରିଗଲା ।

ସ୍ୱାମୀ—ହଁ ହଁ, ମନେ ପଡ଼ିଲା । ବାହାଘର ପ୍ରସଙ୍ଗ ପଡ଼ିଲା ପରେ ସେ
ପରି ମରିଗଲା ।

ସ୍ତ୍ରୀ—ଅହା କଣ ହେଲା, କାହିଁକି ମରିଗଲା ମ ? ଶୁଭ କାମବେଳେ
ଏପରି ଘଟିଲା କାହିଁକି ମ ?

ସ୍ୱାମୀ—ଏଣିକି ତ କେତେ ସେପରି ହେବ, ଗୋଟାଏ କଣ ଶୁଣିଲ ?
ଏଣିକି ବରମାନଙ୍କର ଯେଉଁ ଦାଉ ହେଲାଣି, ସେଥିରେ
ଯାହାର ଝିଅଟିଏ ଥିବ ସେ ତ ମଲା !

ସ୍ତ୍ରୀ—କଣ କିଠାଇ କରି କହ ମ, ମୁଁ କିଛି ବୁଝି ପାରିଲି ନାହିଁ ।

ସ୍ୱାମୀ—ଏଣିକି ବରମାନେ ପାଠୁଆ ବର । ତାଙ୍କ ପାଠ ଅନୁସାରେ
ମୂଲ୍ୟ ହେଲାଣି । ଆଗେ ଥିଲା ତୁଳସୀପତ୍ର ସହିତ କନ୍ୟା
ଦାନ, ଏବେ ତ ବରକୁ ପୂରା ଦାମ୍ ଦେଇ କିଣିବାକୁ
ହେବ ।

ସ୍ତ୍ରୀ—ଆଗେ କଣ ଝିଅ ଜ୍ୱାଇଁଙ୍କି ଦେଉ ନ ଥିଲେ ? ବାହାପରେ
ଯୌତୁକ ଦେଉ ନ ଥିଲେ କି ?

ସ୍ୱାମୀ—ଦେଉ ନ ଥିଲେ କଣ, କିନ୍ତୁ ସେତେବେଳ ଦିଅନିଅ
ଏତେବେଳ ଦିଅନିଅ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

ସ୍ତ୍ରୀ—ପ୍ରଭେଦ କଣ ?

ସ୍ୱାମୀ—ସେତେବେଳେ ଲୋକେ ଆପଣା ବଳକୁ ଚାହିଁ ସ୍ନେହରେ
ଦେଉଥିଲେ । ଅଳଙ୍କାର, ଶେଯ, ଖଟ, ତକିଆ ପ୍ରଭୃତି
ଝିଅଜ୍ୱାଇଁଙ୍କ ଚଳିବା ମାପିକେ ଦେଉଥିଲେ, ନଗଦ ଶହ ଶହ
ହଜାର ହଜାର ତ ଗଣୁ ନ ଥିଲେ ।

ସ୍ତ୍ରୀ—ଏବେ କଣ ହେଉଛି ?

ସ୍ୱା—ଏବେ ପାଞ୍ଚଶଠାରୁ ଆରମ୍ଭ କରି, ତେଣିକି ହଜାର ହଜାର ଯେତେ ଯେ ଦାବୀ କରି ନେଇ ପାରିବ । ସବୁ ସୁନା ଅଳଙ୍କାର, ପୁଣି ଯେତେ ଭରି ଜବାବ ହୋଇଥିବ, ବର ତଉଲି କରି ନେବ । ସୁନା ଘଣ୍ଟା, ଶିକୁଳୀ, ମୁଦି, ଶ୍ୟନଗାଡ଼ି, ବନାରସିପାଟ, ବାସନ ପ୍ରଭୃତି ଯାହା ଦେବାକୁ ଆଗରୁ ଜବାବ ତୁଣ୍ଡିଥିବ, ବର ସେ ସବୁ ଗୋଟି ଗୋଟି ପରଖିକରି ନେବ । ଏତିକି ଯେବେ କ୍ରୟ ଦେଇପାରିବ, ତା ଝିଅ ବିବାହ ହେବ । ନ ହେଲେ ବାଡ଼ୁଅ ରହିଲା । ପାଶ୍ ଅନୁସାରେ ମୂଲ୍ୟ । ଏଣ୍ଟ୍ରେନସ୍, ଏଫ. ଏ., ବି. ଏ., ଏମ୍. ଏ., ଦୋପଟି, ଓକିଲ, ଏ ସବୁ ମଧ୍ୟରୁ ଯେ ଯେତେ ପାହାଚ ଜିତିଥିବ, ତାର ମୂଲ୍ୟ ସେହି ଅନୁସାରେ ହେବ ।

ସ୍ତ୍ରୀ—ସ୍ୱର୍ଣ୍ଣଲତା ବର କେତେ ଟଙ୍କା ମାଗିଲା କି ?

ସ୍ୱା—ତା ବାପ ସେପରି ଧନୀ ନୁହେ । ବଳ ଦଶ ପଚାଶ ମାଣ ଥିଲା, ମୁଠିଏ ଖାଇପିଇ ଚଳୁଥିଲା । ଝିଅଟି ବଡ଼ ସୁନ୍ଦରୀ, ଗୋଟିଏ ବୋଲି ଝିଅ; ବଡ଼ ଗେଲବସର ହୋଇ ବଢ଼ିଥାଏ । ଟିକିଏ ଲେଖାପଢ଼ା ମଧ୍ୟ ଶିଖିଛି । ବାପଙ୍କ ଇଚ୍ଛା ଗୋଟିଏ ଯୋଗ୍ୟ ପାତ୍ର ଦେଖି ଝିଅକୁ ବିବାହ ଦେବେ । ଅବଶ୍ୟ ତାଙ୍କ ବଳକୁ ଗୃହଁ କିଛି ଯୌତୁକ ଦେଇଥାନ୍ତେ; କିନ୍ତୁ ଯେଉଁ ବର ଆସିଲା, ସେ କହିଲା, ଏତେ ଭରି ସୁନା ହେଲେ ହେବ, ନ ହେଲେ ଆମେ ବିବାହ କରିବୁ ନାହିଁ । କ୍ରମେ କନ୍ୟାର ବୟସ ହୋଇ ଆସିଲା, ବାପ ବିଚରା ଲଜ୍ଜାରେ ସଢ଼ିଗଲା । ଦାଣ୍ଡକୁ ବାହାରିଲେ ମୁଣ୍ଡ ଟେକି ପାରିଲା ନାହିଁ । ବର ଖୋଜି ଖୋଜି ଥକି ଗଲା । ଶେଷକୁ ଭିକ୍ଷାର୍ଥୀ ହୋଇ

ଶଯ୍ୟାଶାୟୀ ହେଲ । ଝିଅଟି ବାପର ଏପରି ଅବସ୍ଥା ଦେଖି ନିଜକୁ ନିଜେ ଧିକ୍କାର କଲା ।

ସ୍ତ୍ରୀ—କଣ ଧିକାର କଲା ମ ?

ସ୍ବା—ସେ ମନେ ମନେ ଭାଣ୍ଡିଲା, "ମୋ ଲାଗି ସିନା ମୋ ଜନ୍ମଦାତା ଏପରି କଷ୍ଟ ପାଉଛନ୍ତି ? ମୁଁ ବାପାଙ୍କର କି ଉପକାର କଲି ? ବାପା ତ ମୋ ଲାଗି ଚିନ୍ତାର୍ଥୀ ହୋଇ ଶଯ୍ୟାଗତ ହେଲେ । ଝିଅ ଜନ୍ମକର ବାପା କଣ ଏହି ସୁଖ ଭୋଗ କଲେ ? ଧିକ୍ ମୋ ଜୀବନ ! ଧିକ୍ ଏ ହିନ୍ଦୁ ସମାଜ ! ଯାହାର ଧନ ନାହିଁ ତା ପ୍ରତି ଏତେ ଅତ୍ୟାଚାର ! ମୁଁ ମରିଗଲେ ତ ବାପା ଏ ଚିନ୍ତାରୁ ମୁକ୍ତ ପାଇବେ ।" ଏ କଥା ଭାଣ୍ଡି ଅତ୍ମହତ୍ୟା କରିଦେଲା ।

ସ୍ତ୍ରୀ—ଅତ୍ମହତ୍ୟା କରିବାଟା କଣ ଉଚିତ ହେଲା ?

ସ୍ବା—ଉଚିତ ହେଉ ବା ଅନୁଚିତ ହେଉ, ଡେଡେବେଳ ସମୟରେ ତା ମନ ତ ସେପରି ହୋଇଗଲା, ସେ କରେ କଣ ? ଅତ୍ମହତ୍ୟା କରିବାଟା ଅବଶ୍ୟ ମହାପାପ ।

ସ୍ତ୍ରୀ—ଏପରି ମହାପାପ କରିବାର ଉଦ୍ଦେଶ୍ୟ କଣ ?

ସ୍ବା—ଲୋକେ ଦେଖନ୍ତୁ, ଯୌତୁକ ପୀଡ଼ାରେ କନ୍ୟାମାନେ ପ୍ରାଣ ହରାଉଛନ୍ତି । ଯାହା ବରମାନେ ଏ କଥା ଦେଖି, ତାଙ୍କ କଠୋର ଧନଶୋଷଣ ପ୍ରକୃତି ତ୍ୟାଗ କରି ପାରନ୍ତି । ସମ୍ଭବତ ଏହି ଶିକ୍ଷାଦେବା ଉଦ୍ଦେଶ୍ୟରେ ସେ ଏପରି କଲା ।

ସ୍ତ୍ରୀ—କିଛି ଫଳ ହେଲା ଭଲା ?

ସ୍ବା—ଅଭାଗ୍ୟ କଥା ! ଅଉ କଣ ଆମର ଧର୍ମ କର୍ମ ଜ୍ଞାନ ଅଛି ? ଯେଉଁ କଥାକୁ ସେହି କଥା । ଅର୍ଥଲୋଭ ମନୁଷ୍ୟକୁ ପଶୁ କରିଦିଏ, ଗୁଡକୁ ପଥର କରିଦିଏ, ଭଲକଥା ହୃଦୟକୁ

ଭରିଲାଇ ପାରେ ନାହିଁ । ଅର୍ଥଲୋଭ ହେତୁ ମନୁଷ୍ୟ ହିତାହିତ ଜାଣି ପାରେ ନାହିଁ ।

ସ୍ତ୍ରୀ—ଆ...ଏ କି ଭଲ ହେଲା ମ ! ଆମ ଦେଶରେ ତ ଏ କଥା ନ ଥିଲା ।

ସ୍ୱା—ବଙ୍ଗଦେଶରେ ତ ଏ କଥା ହେଲା, ଏଣିକି ଆମ ଓଡ଼ିଆଙ୍କୁ ଏ କଥା ଆସିବ । ଦେଖାଶିଖା ଓଡ଼ିଆ ପରା ।

ସ୍ତ୍ରୀ—ଅଚ୍ଛା, ପୁଅ ବାହାବେଳେ ଆମେ କନ୍ୟା ପିତାଠାରୁ ଏପରି ଦାବି କରି ଆଣିବା, ଆମ ଝିଅଟିକି ବାହା ଦେଲାବେଳେ ଆମ ଅବସ୍ଥା କଣ ହେବ ?

ସ୍ୱା—ସେତେବେଳେ ଆମେ ସ୍ୱର ବଦଳାଇ କହିବା, "ହରି ହେ, ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ଏ ଅନ୍ୟାୟ ଗୋଟାଏ କଣ ହେ ! ଆମ ପୂର୍ବପୁରୁଷମାନେ ତୁଳସୀ ପତ୍ର ପାନ ଟେକି ଦେଉଥିଲେ । ଏ ଅନ୍ୟାୟ କଥା ତ ଆମ ଦେଶର ରୀତି ନୁହେଁ ।"

ସ୍ତ୍ରୀ—ଏ କଣ ମ ? ଆପଣା ବେଳକୁ ହାତେ, ପର ବେଳକୁ ହାତେ; ପୁଅ ବେଳକୁ କଥାଏ, ପୁଣି ଝିଅ ବେଳକୁ କଥାଏ —ଏ କେଉଁ ନ୍ୟାୟ କଥା ?

ସ୍ୱା—ଏ ପରା କଳିଯୁଗ ନ୍ୟାୟ ! ତମେ ଯାହା କହୁଚ—କଥାଟା ସତ, କିନ୍ତୁ ଲୋକେ ତ ଏପରି କରୁଛନ୍ତି ।

ସ୍ତ୍ରୀ—ଲୋକେ କଲେ କ'ଣ ହେବ ? ଯେଉଁ କଥା ନ୍ୟାୟ ନୁହେ ସେ କଥା କହିବା ଉଚିତ ନୁହେଁ । ଲୋକଙ୍କୁ ବୁଝାଅ, ସମସ୍ତେ ମିଳି ଗୋଟାଏ ବିଚାର କର । ବନ୍ଧୁ ବାନ୍ଧବଙ୍କୁ ତ କଥା ଶେଷ ହେଲା । ଟଙ୍କା ପଇସା ପାଇଁ ଏପରି ଟଣା ଓଟରା ହେଲେ ଲୋକେ ଦାଣ୍ଡରେ ହସିବେ, ବନ୍ଧୁତା ତୁଟିଯିବ । ପଛକୁ ଯିବା ଆସିବା, କଥା ବାର୍ତ୍ତା ବନ୍ଦ ହେବ । ସଂସାରରେ

ତ ସମସ୍ତେ ସମାନ ନାହାନ୍ତି, ଓଣା ଅଧିକରେ ଚଳୁଥିଲେ ଯାହାର ଥିବ ସେ କ'ଣ ଅପଣା ଝିଅ ଜ୍ୱାଇଁଙ୍କି ଦେବ ନାହିଁ ? ଏପରି ତ କାଳକୁ ଚଳୁଥିଲା । ତେବେ କ'ଣ ଗରିବ ଘର ଝିଅମାନେ ଭଲ ବର ପାଇବେ ନାହିଁ ? ଲୋକେ ପାଠ ପଢ଼ି ଯୋଗ୍ୟ ହେଲେ କ'ଣ ଏପରି ଅତ୍ୟାଚାର କରିବେ ? ଏହିପରି କ'ଣ ଦେଶ ଉଦ୍ଧାର କରିବେ ? ପାଜଟି ଭଲ ହେଲେ ହେଲା । ଅଉ ସବୁ ବାଜେ କଥା । ଯେ ପାଠ ପଢ଼ି ଯୋଗ୍ୟ ହୋଇଥିବ, ସେ ତା ବାହୁବଳରେ ଧନୀ ହେଲେ ସିନା ସୁନ୍ଦର ଦିଶିବ; ଅଉ ଶାଶୂ ଶଶୁରଙ୍କ ଉପରେ ଅତ୍ୟାଚାର କରି ବଡ଼ ହେଲେ ଦାଣ୍ଡରେ କେଉଁ ନାମ ପଢ଼ିବ ?

ସ୍ୱାମୀ—ଅହେ, ସେ କଥା କ'ଣ ମୁଁ ମାନୁ ନାହିଁ ? ସେ କଥା ଲୋକେ ବୁଝିଲେ ତ ହେବ ।

ସ୍ତ୍ରୀ—ବୁଝିବେ ନାହିଁ କ'ଣ, ଏ କଥା ଦଶ ପାଞ୍ଚଜଣ ଯେ ବୁଝାଇବେ ସେମାନେ ଆପେ ବୁଝିବା ଆବଶ୍ୟକ । ଆପେ ବୁଝି, ସେହିପରି କାର୍ଯ୍ୟ କରିବା ଆବଶ୍ୟକ । ଆପେ କହିବ କଥାଏ, କଲା ବେଳକୁ କରିବ କଥାଏ; ତେବେ ସେପରି କଥାକୁ ଲୋକେ ଶୁଣିବେ କାହିଁକି ?

ସ୍ୱାମୀ—ସେ କଥା ସତ, ଏ କଥା ଘରେ ଘରେ ବିଚାର ହେବା ଆବଶ୍ୟକ । ଅଚ୍ଛା, ଏ କଥା ତ ବୁଝାଗଲା । ତୁମଙ୍କୁ ଅଉ ଗୋଟାଏ କଥା ପଚାରିବା ଆବଶ୍ୟକ । ତୁମେ କହିଲ, ସ୍ନେହଲତା ଆତ୍ମହତ୍ୟା କରି ଭଲ କଲା ନାହିଁ ? ତେବେ ସେ କ'ଣ କରିଥାନ୍ତା ?

ସ୍ତ୍ରୀ—ମନେ ଜଣାଯାଏ ଯେ ଅବିବାହିତା ରହିଥିଲେ ଭଲ ହୋଇଥାନ୍ତା ।

ସ୍ବା—ଅବିବାହିତା ହୋଇ ରହିବାରେ ଅନେକ ଅପଦ ଥାଇ-ପାରେ ତ ?

ସ୍ତ୍ରୀ—ତମେ ଯେଉଁ ଅପଦ କଥା ଚିନ୍ତା କରୁଛ, ମୁଁ ବୁଝି ପାରୁଛି; କିନ୍ତୁ ଯେଉଁ ବାଳିକା ଇଚ୍ଛା କଲେ ଆପଣା ଜୀବନ ବିସର୍ଜନ କରି ପାରେ; ସେ ଇଚ୍ଛା କଲେ ଯେ ବ୍ରହ୍ମଚାରିଣୀ ହୋଇ, କୁମାରୀ ଅବସ୍ଥାରେ ଆଜୀବନ କଟାଇ ନ ପାରନ୍ତା, ଏ କଥା ତୁମେ କାହିଁକି ଭାବୁଛ ?

ସ୍ବା—ସ୍ତ୍ରୀମାନେ ବଡ଼ ଦୁର୍ବଳା ।

ସ୍ତ୍ରୀ—ସ୍ତ୍ରୀମାନେ ଦୁର୍ବଳା ବୋଲି ଅନେକ କାଳରୁ ଶୁଣାଯାଏ ସତ; କିନ୍ତୁ ସ୍ତ୍ରୀ ଯେତେବେଳେ କୌଣସି କାର୍ଯ୍ୟ କରିବାକୁ ପ୍ରତିଜ୍ଞା କରେ, ତା ପ୍ରତି କିଛି ଅସାଧ୍ୟ ନୁହେଁ । 'ମୁଁ ଏ କଥା ଅବଶ୍ୟ କରିବି' ଏ କଥା ଯେ ପ୍ରତିଜ୍ଞା କରିବ, ସେ ନିଶ୍ଚୟ କରିବ ।

ସ୍ବା—କୁମାରୀ ରହି କ'ଣ କରିଥାନ୍ତା ?

ସ୍ତ୍ରୀ—ସେ ତ ପାଠ ପଢ଼ିଥିଲି, ଆଉ କିଛି କରି ନ ପାରିଲେ ବାଳିକାମାନଙ୍କୁ ଶିକ୍ଷା ଦେଇଥାନ୍ତା । ପଚିଶ ଶହେଟା ବାଳିକାଙ୍କୁ ଶିକ୍ଷା ଦେଇ ଯେବେ ସେମାନଙ୍କୁ ଉତ୍ତମ ମାତା, ସ୍ତ୍ରୀ ଓ କନ୍ୟା ହେବାକୁ ଉପଯୁକ୍ତ କରି ଦେଇ ପାରିଥାନ୍ତା, ତେବେ ଦେଶରେ ତା ନାଁ ପଡ଼ି ନ ଥାନ୍ତା ?

ସ୍ବା—ହଁ ହଁ, ଏପରି କରିଥିଲେ ଜୀବନ ସାର୍ଥକ ହୋଇଥାନ୍ତା । ଲୋକେ ତାକୁ ଦେବୀ ପରି ପୂଜା କରି ଥାନ୍ତେ, ସେ ଘରେ ଘରେ ପୂଜା ପାଇଥାନ୍ତା ! ପୁରୁଷମାନେ ତାକୁ ଦେଖି

ଲଜ୍ଜିତ ହୋଇଥାନ୍ତେ । ବାସ୍ତବିକ୍ ଅସ୍ପୃହତ୍ୟା ନ କରି ଏମନ୍ତ କରିଥିଲେ ଗୋଟାଏ ଆଦର୍ଶ ହୋଇଥାନ୍ତା । ଅସ୍ତୁ, ଆଜି ଏତିକି !

---

## ଚତୁର୍ଥ ପରିଚ୍ଛେଦ

ସ୍ତ୍ରୀ—ତମେ କି ପୋଥି ପଢ଼ୁଛ କି ?

ସ୍ୱାମୀ—ମହାଭାରତ ।

ସ୍ତ୍ରୀ—ମହାଭାରତରେ କଣ ଚରିତ ପଢ଼େ କହିଲ ?

ସ୍ୱା—ସେ କଣ ଅଳ୍ପ କଥା ଯେ ତମକୁ କହିବି । ଯାହା ନାହିଁ ଭାରତରେ ତାହା ନାହିଁ ଭାରତରେ ଅର୍ଥାତ୍ ଭାରତର ଏପରି କଥା ନାହିଁ ଯାହା କି ମହାଭାରତରେ ନ ମିଳିବ । ମହାଭାରତ ପଢ଼ିଲେ ଲୋକ ଅଗାଧ ପାଣ୍ଡିତ୍ୟ ଲାଭ କରିବ ଏବଂ ବହୁତ କଥା ଜାଣି ପାରିବ ।

ସ୍ତ୍ରୀ—ମହାଭାରତ ଯୁଦ୍ଧ କାହିଁକି ହେଲା ? ଆମ ଦେଶରେ କଣ ଯୁଦ୍ଧ ହେଉ ଥିଲା ?

ସ୍ୱା—ଯୁଦ୍ଧ ହେଉ ନ ଥିଲା କଣ ? କହନ୍ତି ପରା କିମାଣି ଖେଳରୁ ମହାଭାରତ ଆରମ୍ଭ ହେଲା ।

ସ୍ତ୍ରୀ—ଖେଳରୁ ଯୁଦ୍ଧ ହେଲା କିପରି ମ ?

ସ୍ୱା—ଆଗେ ଥିଲା, ଏବେ ମଧ୍ୟ ଅନେକ ରାଜବଂଶରେ ଏପରି ବିଧି ଅଛି ଯେ, ବଡ଼ ପୁଅ ରଜା ହେବ, ସାନପୁଅମାନେ ଖୋରାକ ପୋଷାକ ପାଇ ରହିବେ । ପାଣ୍ଡୁ ଓ ଧୃତରାଷ୍ଟ୍ର ଦୁଇଭାଇ ଥିଲେ । ଧୃତରାଷ୍ଟ୍ର ବଡ଼, ପାଣ୍ଡୁ ସାନ । ଧୃତରାଷ୍ଟ୍ରଙ୍କର ୧୦୦ ପୁତ୍ର, ପାଣ୍ଡୁଙ୍କର ୫ ପୁତ୍ର । ବିଧି ଅନୁସାରେ ଧୃତରାଷ୍ଟ୍ର ରଜା

ହୋଇଥାନ୍ତେ, ମାତ୍ର ସେ ଜନ୍ମାନ୍ଧ ଥିବାରୁ ସାନଭାଇ ରଜା ହେଲେ । ପାଣ୍ଡୁଙ୍କ ମୃତ୍ୟୁ ପରେ ତାଙ୍କ ବଡ଼ ପୁଅ ଯୁଧିଷ୍ଠିର ରଜା ହେଲେ । ଧୃତରାଷ୍ଟ୍ରଙ୍କ ବଡ଼ ପୁଅ ଦୁର୍ଯ୍ୟୋଧନ, ତା ଦେଖି ସହିଲା ନାହିଁ । ସେ ଭାବିଲା 'ସେ ବଡ଼ଭାଇର ବଡ଼ ପୁଅ, ସେ ରଜା ନ ହୋଇ ଯୁଧିଷ୍ଠିର ରଜା ହେବେ କାହିଁକି ?' ଏହି ରାଜ୍ୟଲୋଭ କ୍ରମେ ବୃଦ୍ଧି ପାଇଲା । ଦୁର୍ଯ୍ୟୋଧନ ଏହି ଲୋଭ ମନରେ ପୋଷି ପାଣ୍ଡବମାନଙ୍କ ପ୍ରତି ନାନା ଅତ୍ୟାଚାର କରିବାକୁ ଆରମ୍ଭ କଲା । ଲୋଭ ବୃଦ୍ଧି ହେଲାବେଳେ ନଈବଢ଼ି ପରି ନାନା ଅଡ଼େ ମାଡ଼ିଯାଏ, ଲୋଭରୁ ପାପ ଜାତ ହୁଏ । ପାପଲିପ୍ତ ହେଲେ ମନୁଷ୍ୟର ବୁଦ୍ଧି ଲୋପ ହୁଏ । ବୁଦ୍ଧି ଲୋପ ହେଲେ ଲୋକର ହିତାହିତ ଜ୍ଞାନ ଲୋପ ହୁଏ, ଅର୍ଥାତ୍ ଲୋକ ଭଲ ମନ୍ଦ ବିଚାର କରି ପାରେ ନାହିଁ । ଦୁର୍ଯ୍ୟୋଧନର ସେହି ଅବସ୍ଥା ହେଲା । ଦୁର୍ଯ୍ୟୋଧନର ଏହି ଲୋଭ ଅଗ୍ନି ପ୍ରଜ୍ୱଳିତ ହୋଇ ଥିବାବେଳେ ଶକୁନି ତହିଁରେ ଆହୁତି ଦେଲା । ସୁତରାଂ ସେ ଅଗ୍ନି ଶତଗୁଣ ତେଜରେ ଦାଉ ଦାଉ ହୋଇ ଜଳି ଉଠିଲା !

ସ୍ତ୍ରୀ—ଶକୁନି କିଏ ? ସେ କାହିଁକି ଦୁର୍ଯ୍ୟୋଧନ ସଙ୍ଗେ ମିଶିଲା ?

ସ୍ୱା—ଶକୁନି ଦୁର୍ଯ୍ୟୋଧନର ମାମୁଁ । ଦୁର୍ଯ୍ୟୋଧନ ଶକୁନି ବଂଶ ମରାଇଥିଲା, ସୁତରାଂ ଶକୁନି ମନେ ମନେ ରାଗ ରଖି, ମନ୍ଦ ପରାମର୍ଶ ଦେଇ, ତାର ସର୍ବନାଶ କରିବାକୁ ଇଚ୍ଛା କଲା । ଦୁର୍ଯ୍ୟୋଧନ ବୁଦ୍ଧି ଲୋପ ହୋଇଥିଲା, ସୁତରାଂ ଶକୁନିର ମନ୍ଦ ପରାମର୍ଶଗୁଡ଼ିକ ତାକୁ ଚନ୍ଦନ ପରି ଜଣାଗଲା ।

ସ୍ତ୍ରୀ—ଶକୁନି କଣ ମନ୍ଦ ପରାମର୍ଶ ଦେଲା ।

ସ୍ବା—ଶକୁନି ଦୁର୍ଯ୍ୟୋଧନଙ୍କୁ ଗୋଟିଏ କପଟ ପଶାଖେଳ କରିବାକୁ ଶିଖାଇଲା । ଶକୁନି ନିଜ ଅଙ୍ଗୁଳି ହାଡ଼ରେ ପଶାକାଠି ତିଆରି କରିଥିଲା, ତାକୁ ଗଡ଼ାଇଲେ ଯେଉଁ ଦାନ ଇଚ୍ଛା କରିବ ସେ ଦାନ ପଡ଼ିବ । ସୁତରାଂ ସେହି ବଳରେ ଦୁର୍ଯ୍ୟୋଧନଙ୍କୁ କହିଲା ଯେ, ଯୁଧିଷ୍ଠିରଙ୍କୁ ଡାକି ପଶାଖେଳ କର, ପଣ କର । ଯୁଧିଷ୍ଠିର ବଡ଼ ଧାର୍ମିକ, ଖେଳରେ ହାରିଗଲେ ରାଜ୍ୟ ଛାଡ଼ିଯିବ ।

ସ୍ତ୍ରୀ—ଦୁର୍ଯ୍ୟୋଧନଙ୍କୁ ଶକୁନି ଏ କଥା ଶିଖାଇଲା, ମାତ୍ର ଯୁଧିଷ୍ଠିର ସେଥିରେ ରାଜି ହେବେ କାହିଁକି ? କେଉଁଠି ଖେଳ ହେଲା ? କିଏ କିଏ ସେଠାରେ ଥିଲେ ?

ସ୍ବା—କୁରୁମାନଙ୍କ ସଭାଗୃହରେ ଖେଳ ହେଲା । ଭୀଷ୍ମ, ଦ୍ରୋଣ, ବିଦୁର, ଧୃତରାଷ୍ଟ୍ର ପ୍ରଭୃତି ସମସ୍ତ ଗୁରୁଜନମାନେ ଥିଲେ । ଯୁଧିଷ୍ଠିର ପ୍ରଥମେ ରାଜି ହୋଇ ନ ଥିଲେ, ମାତ୍ର ଶକୁନି ଓ ଦୁର୍ଯ୍ୟୋଧନ ତାଙ୍କୁ ବହୁତ ତିରସ୍କାର କଲେ । ଯୁଧିଷ୍ଠିର ପଛକୁ ରାଜି ହେଲେ । ଯାହା ଯୋଗ ଅଛି, କିଏ ଅନ୍ୟଥା କରି ପାରିବ ! ଈଶ୍ବର ବିଧାନ ଅଲଙ୍ଘନୀୟ ।

> 'ଅସମ୍ଭବ ହେମ ମୃଗ ଜନମ ନିଯୁତ,
> ତଥାପି ଶ୍ରୀ ରାମଚନ୍ଦ୍ର ହେଲେ ଲୋଭଯୁକ୍ତ ।
> ବିପତ୍ତି ପଡ଼ିବା କାଳେ ଅଯୁକ୍ତ ନ ଥାଏ,
> ପୁରୁଷର ବୁଦ୍ଧି ବୃତ୍ତିମାନ ମ୍ଳାନ ହୁଏ ।

ସ୍ତ୍ରୀ—ଗୁରୁଜନମାନଙ୍କ ଆଗେ ଏମାନେ ପଶା ଖେଳିଲେ କପରି ?

ସ୍ବା—ଦୁର୍ଯ୍ୟୋଧନ ଦୁଷ୍ଟ ଲୋକ, ସେ କାହାରି କଥା ମାନିଲା ନାହିଁ । ଧୃତରାଷ୍ଟ୍ର ମନା କରିଥିଲେ ଖେଳ ହୋଇ ନ ଥାନ୍ତା, କିନ୍ତୁ ସେ ପୁଅକୁ ଡର କିଛି କହିଲେ ନାହିଁ, ବରଂ ପୁଅ କଥାରେ

ରାଜା ହେଲେ । ଅନ୍ୟ ଯେ କହିଲି ଦୁର୍ଯ୍ୟୋଧନ ସେମାନଙ୍କୁ ଗାଲି ମନ୍ଦ ଦେଇ ଚପାଇ ଦେଲେ । ଶେଷକୁ ସେମାନେ ଦେଖିଲେ, ମନା କରିବା ବୃଥା । ଏମାନଙ୍କର ନାଶଯୋଗ ଉପସ୍ଥିତ, ଯାହା ହେବାର ହେଉ ।

ସ୍ତ୍ରୀ—ଅଚ୍ଛା, କଣ ହେଲା ?

ସ୍ୱା—ଖେଳ ହେଲା । ଯେତେବେଳେ ଯେଉଁ ଦାନ ପଣ ହେଲା ଦୁର୍ଯ୍ୟୋଧନ ଗାଣ୍ଟି ଗଡ଼ାଇଲା ମାତ୍ରକେ ତାହା ପଡ଼ିଲା । ଧନ, ରାଜ୍ୟ, ଭାଇ, ବନ୍ଧୁ, କୁଟୁମ୍ବ, ସବୁ ହାରିଲେ; ଶେଷକୁ ପଣ ହେଲେ ଦ୍ରୌପଦୀ । ଦାନ ପଡ଼ିଲା, ଦୁର୍ଯ୍ୟୋଧନ ଜିଣିଲା ।

ସ୍ତ୍ରୀ—ମାଇପକୁ ପଣ କଲେ କିପରି ?

ସ୍ୱା—ଅହେ, ପଶାଖେଳ ଗୋଟାଏ ନିଶା । ସେ ନିଶା ଲାଗିଲାବେଳେ ମଣିଷର କଣ ହିତାହିତ ବିଚାର ରହେ ! ସଭାରେ ବସିଛନ୍ତି, ପାଞ୍ଚ ଜଣ ପାଞ୍ଚ କଥା କହୁଛନ୍ତି, ମନରେ ଜିଦ୍ ହୋଇଛି । ଅନ୍ୟ ପକ୍ଷର ଛଳ କଥା ସହି ନ ପାରି, ସ୍ତ୍ରୀକି ପଣ କରି ପକାଇଲେ ।

ସ୍ତ୍ରୀ—ଭୀମ ପ୍ରଭୃତି ସେଠାରେ ଥିବେ ତ, ସେମାନେ କିଛି ବାଧା ଦେଲେ ନାହିଁ ?

ସ୍ୱା—ବାଧା ଦିଅନ୍ତେ କିପରି ? ଯୁଧିଷ୍ଠିର ବଡ଼ ଭାଇ, ତାଙ୍କୁ ଠେଲି ଦେଇ କିପରି କଣ କହିବେ ? ସେମାନେ ତ କଳିଯୁଗ ଭାଇ ନ ଥିଲେ ! ସେକାଳର ବଡ ଭାଇ ଅନ୍ୟ ଭାଇଙ୍କର ପିତା ତୁଲ୍ୟ ଓ ଦେବତା ତୁଲ୍ୟ । ସେ ଯାହା କହିବେ, ଅନ୍ୟମାନେ ପାଟି ନ ଫିଟାଇ ନତମସ୍ତକରେ ଶୁଣିବାକୁ ବାଧ୍ୟ । ସୁତରାଂ ସଭାରେ ବସି, ବଡ଼ ଭାଇଙ୍କ କଥାରେ ଅନ୍ୟ

କଥା କହନ୍ତେ କିପରି ? ତେବେ ଭୀମ ବଡ ଦୁଷ୍ଟ, ସମ୍ପୂର୍ଣ୍ଣ ଉଦାର ହେଉଥାଏ । ଦାନ୍ତରେ ରକ୍ତଗୁଡ଼ାଳ ଘୋଟିବାକୁ ଥାଏ । ଅପେକ୍ଷା କେବଳ ବଡ଼ ଭାଇଙ୍କ ଆଦେଶ ! ନୋହିଲେ ଭୀମ ପରି ଲୋକ, ସେ ଯେପରି ଦୁଷ୍ଟ ଜାଣିଥିବ, ଗଦାରେ ସମସ୍ତଙ୍କୁ ପିଟିପାଟି ଦୋରସ୍ତ କରିଦେଇଥାନ୍ତା, ମୁଣ୍ଡ ଚୂନା କରି ଦେଇଥାନ୍ତା । ଭାଇ ଆଦେଶ ଦେଉ ନାହାନ୍ତି, ଲୁହ ନ ବାହାର ରକ୍ତ ବାହାରୁଥାଏ, ପଦେ ପଦେ ବାକ୍ୟବାଣ ବହୁଥାଏ, ମାତ୍ର ମନ୍ତ୍ରଦ୍ୱାରା ବନ୍ଦୀ ହୋଇ ସାପ ଯେପରି ହେଉଥାଏ, ସେହିପରି ବସିଥାଏ । ଭ୍ରାତୃଭକ୍ତି ତାକୁ କିଛି କରିଇ ଦେଉ ନ ଥାଏ । ଅର୍ଜୁନ ପ୍ରଭୃତି ଭାଇଙ୍କ ମୁହଁ ପୋଡ଼ କରୁଥାନ୍ତି, କ୍ରୋଧରେ ଫଁ ଫଁ ହେଉଥାନ୍ତି । ଯୁଧିଷ୍ଠିର ସବୁ କଥା ସହୁଥାନ୍ତି, ଖେଳରେ ଗୋଡ଼ ପୂରାଇ ତ ବେକୁବ୍ ହୋଇଛନ୍ତି ।

ସ୍ତ୍ରୀ—ଆଚ୍ଛା, ସ୍ତ୍ରୀକି ପଣ କରି ତ ହାରିଲେ, ପରେ କଣ ହେଲା ?

ସ୍ୱା—ଦୁର୍ଯ୍ୟୋଧନ ଦୁଃଶାସନକୁ ପଠାଇ, ଦ୍ରୌପଦୀଙ୍କୁ ଘରୁ ସଭାକୁ ଟାଣି ଆଣିଲା ।

ସ୍ତ୍ରୀ—ଦୁଃଶାସନ କିଏ ?

ସ୍ୱା—ସେ ଦୁର୍ଯ୍ୟୋଧନର ସାନ ଭାଇ, ବଡ଼ ଦୁଷ୍ଟ । ଦୁର୍ଯ୍ୟୋଧନର ଆଜ୍ଞା ପାଇ ଗଲା, ଦ୍ରୌପଦୀଙ୍କ କେଶ ଧରି ଟାଣି ଆଣିଲା ।

ସ୍ତ୍ରୀ—ଦ୍ରୌପଦୀ କିଛି କହିଲେ ନାହିଁ ? ତୁନି ହୋଇ ଚାଲି ଆସିଲେ ? ସେ କୁଳବଧୂ, ସଭାରେ ଗୁରୁଜନମାନେ ଥିଲେ, ସେଠାକୁ ଆସିଲେ କିପରି ମ ?

ସ୍ୱା—ସେ ତୁନି ହୋଇ ଚାଲି ଆସନ୍ତେ କାହିଁକି ? ଯେତେ ଯାହା କହିଲେ, ଶୁଣିଛି କିଏ ? ମାଇପି ଲୋକ, ଦୁଃଶାସନ ପରି

ଦୁଷ୍ଟଲୋକ ଆଗେ ତାଙ୍କର ବଳ କଣ ? ବିନୟ କରି କହୁଲେ, ଧିକ୍କାର କରି କହୁଲେ, ନ ଶୁଣିଲେ ବଳ କଣ ? ସେ ତ ମନକୁ ଆସିଲେ ନାହିଁ, ଦୁଃଶାସନ ଚୁଟି ଧରି ଟାଣି ଆଣିଲା । ସଭାରେ ଠିଆ କରି ତାଙ୍କୁ ଉଲଗ୍ନ କରିବାକୁ ଆରମ୍ଭ କଲା । ଦ୍ରୌପଦୀ ବହୁତ ଆର୍ତ୍ତନାଦ କଲେ, ଡାକିଲେ, ଧିକ୍କାର ବାଣୀ ପ୍ରୟୋଗ କଲେ । ଯୁଧିଷ୍ଠିର ପ୍ରଭୃତି ବସି ଦେଖୁଥାନ୍ତି କଣ କରିବେ ପତି କରି ତ ହାରିଛନ୍ତି । ଦ୍ରୌପଦୀ ବର୍ତ୍ତମାନ ଦୁର୍ଯ୍ୟୋଧନର ବୋଲି ତାର ବିଶ୍ୱାସ । ଏତେବେଳେ ସେ ତା ଅଧିକାରରେ । ସେ ତା ଜିନିଷକୁ ଯେପରି ଇଚ୍ଛା ବ୍ୟବହାର କରିପାରେ, ସେ କାହା କଥା ଶୁଣିବ କାହିଁକି ? ସେ ତା ମନ ଅଭିମାନ ସାଧୁଛି । ଯୁଧିଷ୍ଠିର ପ୍ରଭୃତିଙ୍କି ଅପମାନ ଦେବାର ଇଚ୍ଛା । ସୁତରାଂ ଦ୍ରୌପଦୀଙ୍କି ବିବସନ କରିବାପାଇଁ ଆଦେଶ ଦେଲା । ଦୁଃଶାସନ ଆଜ୍ଞା ପାଇ ବିବସନ କରିବାକୁ ଆରମ୍ଭ କଲା । ଦ୍ରୌପଦୀ ଦେଖିଲେ କିଛି ଉପାୟ ନାହିଁ, ତାଙ୍କୁ କେହି ରକ୍ଷା କରି ପାରିଲେ ନାହିଁ, କେହି ତାଙ୍କ ପାଇଁ ପଦେ କହୁଲେ ନାହିଁ । ଯେ ଜଣେ ଅଧେ ବିଦୁରଙ୍କ ପରି ଧର୍ମାତ୍ମାମାନେ କହୁଲେ, ଦୁର୍ଯ୍ୟୋଧନ ସେମାନଙ୍କୁ ଅଣ୍ଟା ତାମସାରେ ଉଡ଼ାଇ ଦେଲା । କଟୁ କଥା କହି ସେମାନଙ୍କ ମୁଖ ବନ୍ଦ କଲା । ଦ୍ରୌପଦୀ ଦେଖିଲେ, ଆଉ ରକ୍ଷା ନାହିଁ । ସେ ଗୋଟାଏ ହାତରେ ଅଞ୍ଚଳ ଧରି ଭଗବାନଙ୍କୁ ଡାକ ଦେଲେ । ଭଗବାନ ଏତେବେଳେ ଲକ୍ଷ୍ମୀଙ୍କ ସଙ୍ଗେ ଖେଳୁଛନ୍ତି । ସେ ଶୁଣିଲେ, ମାତ୍ର ନ ଶୁଣିଲା ପରି ତୋଷି ଖେଲିଲେ ।

ସ୍ତ୍ରୀ—ଭଗବାନ ପରା ଆର୍ତ୍ତତ୍ରାଣ, ସେ ନ ଶୁଣିଲା ପରି ହେଲେ କାହିଁକି ?

ସ୍ୱାମୀ—ଅହେ ସେ ବଡ଼ ହଟିଆ । ଲକ୍ଷ୍ମୀ ତାଙ୍କୁ ପଚାରିଲେ—କିଏ ଏଡ଼େ ଆର୍ତ୍ତ ହୋଇ ଡାକୁଛି, ଶୁଣୁ ନାହିଁ କାହିଁକି ? ଭଗବାନ କହିଲେ, ସେ ପରା ଅଞ୍ଚଳକୁ ଆଶ୍ରୟ କରିଛନ୍ତି । ସେ ଯେ ଅଞ୍ଚଳକୁ ଯାକି ଧରିଛନ୍ତି, ସେଥିରେ ରକ୍ଷା ପାଇ ଯାଇ ପାରନ୍ତି ! ଏଣେ ଦ୍ରୌପଦୀ ଦେଖିଲେ ଆଉ ଉପାୟ ନାହିଁ, ଦୁଇ ହାତ ଉପରକୁ ଟେକି, ଅହେ ଦୀନବନ୍ଧୁ ବୋଲି ରଡ଼ି ପକାଇଲେ । ଗୋଟିଏ ସ୍ତୁତି ଗାଇ ନିରାଲମ୍ବ ଭାବରେ ଭଗବାନଙ୍କୁ ଧ୍ୟାନ କଲେ ।

ସ୍ତ୍ରୀ—ଦ୍ରୌପଦୀଙ୍କ ଗୀତ କଣ ଭଗବାନଙ୍କୁ ଶୁଭିଲା ? ସେ କେଉଁଠି, ଏ କେଉଁଠି, ଯାଙ୍କ ଗୀତ ତାଙ୍କୁ ଶୁଭିଲା କିପରି ମ ?

ସ୍ୱାମୀ—ଅହେ ସେ ତ ଅନ୍ତର୍ଯ୍ୟାମୀ, ସବୁଠାରେ ଅଛନ୍ତି । ସେ ଦୀନବନ୍ଧୁ, ଦୀନଜନମାନଙ୍କ ଡାକ ତାଙ୍କୁ ସବୁଠାରେ ଶୁଣାଯାଏ । ଭକ୍ତ ଯେଉଁଠି ଗାଏ ତାଙ୍କୁ ଶୁଣାଯାଏ । ସେ ପରା ନିଜ ଶ୍ରୀମୁଖରେ କହିଛନ୍ତି—"ମୁଁ ଯୋଗୀ ହୃଦୟରେ ନ ଥାଏ କିମ୍ବା ବୈକୁଣ୍ଠରେ ନ ଥାଏ, ଯେଉଁଠି ମୋ ଭକ୍ତ ଗାଏ, ମୁଁ ସେହିଠାରେ ଥାଏ ।" ଭଗବାନ ଭକ୍ତର ଅଧୀନ । ଯେ ତାଙ୍କୁ ମନପ୍ରାଣ ଲଗାଇ ଡାକେ ସେ ଡାକ ତାଙ୍କୁ ତତ୍‌କ୍ଷଣାତ୍ ଶୁଣାଯାଏ । ମଣିଷ ଯେତେବେଳେ ମନରୁ ସବୁ କଥା ଛାଡ଼ି ମନମୂନ ଲଗାଇ ଈଶ୍ବରଙ୍କୁ ଡାକ ପକାଏ, ସେ ଡାକ ତାଙ୍କୁ ଅସ୍ଥିର କରି ପକାଏ ।

ସ୍ତ୍ରୀ—ଦ୍ରୌପଦୀ କଣ ଗାଇଲେ ?

ସ୍ୱାମୀ—ହଁ, ସେ ଗାଇଲେ :—

"କର ମୋତେ ଏ ସଙ୍କଟୁ ପାର ହେ ହରି !
ହରି ହରି ମୋ କଷଣ ଘୋର ହେ ହରି । ଧ୍ରୁ ।
ଗୁରୁଜନ, ସ୍ୱାମୀ, ଦେବର, ଶ୍ୱଶୁର ଆତ୍ମୀୟ ସ୍ୱଜନ ମୋର
ଇନ୍ଦ୍ର ଆଦି ଦଶଦିଗପାଳ ଧର୍ମ ଶକତି ନାହିଁ କାହାର ହେ ହରି !
ଦିଅ ମୋର ଏ ଲଜ୍ଜା ନିବାରି ହେ । ୧ ।
କୁରୁପତି ସଭାତଳେ ଦୁଃଶାସନ କରେ ମୋତେ ବିବସନ,
ସତୀନାରୀ ଧର୍ମ ହେଲେ ନାଶିବାକୁ ଚଳାଇଅଛି ସେ ମନ ହେ ହରି !
ବାନା ନିନ୍ଦା ହେବ ହେ କଂସାରି ହେ । ୨ ।
ଚକ୍ରୀ ଶଙ୍ଖୀ ହରି ଗିରିଧାରି ଦୀନବନ୍ଧୁ ଦାରିଦ୍ର୍ୟହାରି
ତୁଅ ଦୁଆରେ ଏବେ ଦେ ମୁରାରି କର ଏ ଲଜ୍ଜାରୁ ପାରି ହେ ହରି !
ଅହେ ଶରଣ ରକ୍ଷଣକାରି ହେ । ୩ ।
ଅକୂଳ ସାଗରେ କୁରୁ ସଭାତଳେ ଭାସୁଅଛି ଅବଳା ନାରୀ,
ଅନାଥର ନାଥ ଅହେ ଜଗନ୍ନାଥ ଭେଳାଦେଇ କର ପାରିହେ ହରି !
ରକ୍ଷାକର ଅହେ ଦାନବାରିହେ । ୪ ।"

ସ୍ତ୍ରୀ—ବାସ୍ତବିକ୍ ଏ ଗୀତ ଶୁଣିଲେ ତ ପାଷାଣ ତରଳି ଯିବ ! ଦିଅଁ ଦେବତା ନ ଶୁଣି କିପରି ରହି ପାରିବେ ? ଅଚ୍ଛା, ହରି କଣ କଲେ ?

ସ୍ୱାମୀ—ହରିଙ୍କ ଆସନ ଟଳିଲା । ସେ ଆସି ଏପରି କୌଶଳ କଲେ ଯେ, ଦୁଃଶାସନ ଯେତେ ଲୁଗା ତାଙ୍କ ଦେହରୁ ଟାଣିଥାଏ, ସେତେ ଲୁଗା ବାହାରୁଥାଏ । ଦୁଃଶାସନ ଲୁଗା ଟାଣି ଟାଣି ଥକିଲା, ଶେଷ ହେଲା ନାହିଁ । କେଳା ହାଟ ଦେଖିଥିବ ତ, ଗୋଟିଏ ଠାରୁ ଯେତେ ଇଚ୍ଛା ସେତେ ସୂତା ବାହାର କରେ ! ଯେତେ ଟାଣୁଥାଏ ସେତେ ବାହାରୁଥାଏ । ଶ୍ରୀକୃଷ୍ଣ ତ ଅସଲ ହଟିଆ । ତାଙ୍କ କୁହୁକକୁ କିଏ ପାରିବ ? ଏମାନେ ସିନା

ସବୁ ଠାଣ ଦେଖାଉଥିଲେ, ବସ୍ତ୍ର କୁଠ ମାଧ୍ୟାକୁ ବଳ ବାହାର ? ଅପଣା ମୁହଁପାଣି ଅପଣା ମୁହଁରେ ମଲା । ସଭାରେ ଯେତେ ଲୋକ ଥିଲେ, ଅବା କାବା ହୋଇ ତୁନି ହେଲେ ।

ସ୍ତ୍ରୀ—ଦୁର୍ଯ୍ୟୋଧନ ଏ କଥାଟା ଭଲ କଲା ନାହିଁ । ଭାଇ ଭାଇରେ ଚଳ କରୁଅ ଦେଲେ ବା ଖେଳରେ ହାରିଲେ ଲଢ଼ିଲେ ସେଥିରେ ମାଇପଙ୍କର ଦୋଷ କଣ ଥିଲା ? ସ୍ତ୍ରୀ ଉପରେ ଅତ୍ୟାଚାର କରି କି ଫଳ ମିଳିଲା ?

ସ୍ୱାମୀ—ଅହେ, ଜନାଶକାଲେ ବିପରୀତ ବୁଦ୍ଧି । ପିଲା ଦିନୁଁ ଭାଇ ଭାଇଙ୍କ ମଧ୍ୟରେ ଟିକିଏ ଈର୍ଷା ଥାଏ । ଅର୍ଜୁନ ଯୁଦ୍ଧବିଦ୍ୟାରେ ପଣ୍ଡିତ, ତାଙ୍କପରି କେହି ଶର ମାରି ଜାଣେ ନାହିଁ । ସମସ୍ତେ ଅର୍ଜୁନଙ୍କୁ ପ୍ରଶଂସା କରନ୍ତି । ଏ କଥା ଦୁର୍ଯ୍ୟୋଧନ ଦେହରେ ଯାଏ ନାହିଁ । ଭୀମଟା ପିଲାଦିନୁଁ ହୁଣ୍ଡାବଳ, ଭାରି ଗଦା ବୁଲାଇ ପାରେ । ତାର ଟାଛ ବିଚାର ନାହିଁ, ଥାନ ଅଥାନ ନାହିଁ, ବେଳ ପଡ଼ିଲେ ପ୍ରହାର ଦିଏ । ଏଥିଲାଗି ଭୀମ ଉପରେ ଦୁର୍ଯ୍ୟୋଧନର ଭାରି ରାଗ । ଭୀମକୁ ବିଷ ଲଡୁ ଦେଇ ମାରି ପକାଇବାର ଚେଷ୍ଟା କରିଥିଲା । ଜଉ ଘରେ ସବୁ ଭାଇଙ୍କି ପୂରାଇ ପୋଡ଼ି ଦେବାର ଚେଷ୍ଟା କରିଥିଲା, ସେଥିରୁ ସେମାନେ ବର୍ତ୍ତିଲେ; ଶେଷରେ ଯୁଧିଷ୍ଠିର ପ୍ରଭୃତି ଜଉଘରୁ ବାହାରି ଯାଇ ପଞ୍ଚାଳ ରାଜ୍ୟରେ ଥିଲେ । ଦ୍ରୌପଦୀଙ୍କ ସ୍ୱୟମ୍ବର ବେଳେ ତାଙ୍କୁ ବିବାହ ହୋଇ ପୁଣି ରାଜ୍ୟକୁ ଫେରିଲେ । ଯୁଧିଷ୍ଠିର ରାଜସିଂହାସନରେ ବସି ରାଜସୂୟ ଯଜ୍ଞ କଲେ । ମହାରାଜ ଯୁଧିଷ୍ଠିରଙ୍କ ନାମ ଚାରିଆଡ଼େ କୀର୍ତ୍ତିତ ହେଲା । ସେ ସତ୍ୟବାଦୀ ଧାର୍ମିକ ବୋଲି ଲୋକରେ ଖ୍ୟାତିଲାଭ କଲେ । ଅର୍ଜୁନ ଅଦ୍ୱିତୀୟ ବୀର ବୋଲି ଦେଶରେ ପ୍ରଚାରିତ ହେଲା । ଭୀମ

ଅଦ୍ୱିତୀୟ ବଳଶାଳୀ ବୋଲି ଖ୍ୟାତି ଲାଭ କଲେ । ପାଣ୍ଡବ-ମାନଙ୍କର ଏପରି ପ୍ରଶଂସା କୁରୁପୁତ୍ରମାନଙ୍କର ଅସହ୍ୟ ହେଲା । ଦୁର୍ଯ୍ୟୋଧନ ଏତେ କୁପାଞ୍ଚ କରି ଯୁଧିଷ୍ଠିରଙ୍କର କିଛି କରି ପାରିଲେ ନାହିଁ । କେବଳ ମନେ ମନେ ହିଂସା, ରାଗ, ଦ୍ୱେଷ ବଢ଼ିଲା । ତେଣୁ ଶେଷରେ କପଟପଶା ଖେଳ ଖେଳି ରାଜ୍ୟ ନେବାର ଉପାୟ କଲେ ।

ସ୍ତ୍ରୀ—ଦୁର୍ଯ୍ୟୋଧନ ଯେ ଏତେ କୁପାଞ୍ଚ କଲେ, ଯୁଧିଷ୍ଠିରଙ୍କର ଅନିଷ୍ଟ ନ ହେଲା କାହିଁକି ?

ସ୍ୱା—ପାଣ୍ଡବମାନଙ୍କ ପ୍ରଧାନ ସଖା ଥିଲେ ଶ୍ରୀକୃଷ୍ଣ । ଯୁଧିଷ୍ଠିରଙ୍କ ପକ୍ଷରେ ଧର୍ମ । ପାଣ୍ଡବମାନେ ତ କାହାର ମନ୍ଦରେ ନ ଥାନ୍ତି । ଧର୍ମ ଯେଉଁଠି କୃଷ୍ଣ ସେଇଠି । ତେଣୁ ଯେତେ ଯେତେ ବିପତ୍ତି ପଡ଼ିଲା, କୃଷ୍ଣ ଥିବାରୁ କିଛି ନ ଲାଗିଲା । ଦୁର୍ଯ୍ୟୋଧନ ଯେତେ କୁପାଞ୍ଚ ପାଞ୍ଚେ, କୃଷ୍ଣଙ୍କ ପ୍ରସାଦରୁ ସେ ସବୁ ବିଫଳ ହୁଏ । କଥାରେ କହନ୍ତି ପରା "ଯାହାକୁ ସାହା ଜଗା ବଳିଆ, ତା ଘରେ ଚୂଜଳ ଓଳିଅ ଓଳିଅ" "ମାରେ ହରି ରଖେ କିଏ, ରଖେ ହରି ମାରେ କିଏ" । ଦୁର୍ଯ୍ୟୋଧନ ପାପ ବୁଦ୍ଧିରେ ସବୁ କରୁଥାଏ । ଯେତେ ଯେତେ କରୁଥାଏ, ତେତେ ତେତେ ପାପ ଘାର ବଢ଼ୁଥାଏ । ଶେଷରେ ସତୀ ଦ୍ରୌପଦୀଙ୍କ ଉପରେ ଅତ୍ୟାଚାର ! ଏ କଥା ଭଗବାନ ସହନ୍ତେ କିପରି ? ଶୁଣି ନାହିଁ, ସୀତା ହରଣ କରି ରାବଣର ସୁବର୍ଣ୍ଣପୁରୀ ଲଙ୍କା ଛାରଖାର ହେଲା—ରାବଣର ବଂଶ ନାଶ ହେଲା ।

ସ୍ତ୍ରୀ—ପଶାଖେଳ ସରିଲାରୁ କଣ ହେଲା ?

ସ୍ୱା—ପଣ ଥିଲା ଯେ, ଯୁଧିଷ୍ଠିର ହାରିଲେ ୧୨ ବର୍ଷ କାଳ ବନବାସ କରିବେ, ତା ପରେ ଏକ ବର୍ଷ ଅଜ୍ଞାତ ବନବାସ କରିବେ । ଅଜ୍ଞାତ ବନବାସ ବେଳେ ଯେବେ ଚିହ୍ନା ପଡ଼ିବେ, ତେବେ ତାଙ୍କର ଅଉ ରାଜ୍ୟରେ କିଛି ଦାବି ରହିବ ନାହିଁ—ଦୁର୍ଯ୍ୟୋଧନ ଏକାଙ୍ଗ ଚକ୍ରବର୍ତ୍ତୀ ହେବ ।

ସ୍ତ୍ରୀ—ଅଜ୍ଞାତ ବନବାସ କଣ, ବୁଝି ପାରିଲି ନାହିଁ ?

ସ୍ୱା—ଅହେ ବାରବର୍ଷ ଏମାନେ ବଣରେ ବୁଲିବେ ବୋଲି ହେଲା, ପୁଣି ଦୁର୍ଯ୍ୟୋଧନ ପାଞ୍ଚିଲା ଯେ, ଅଚ୍ଛା, ଏମାନେ ତ ବାରବର୍ଷ ବଣକୁ ଯିବେ, ମାତ୍ର ଫେରି ଅସିବା ତ ବଡ଼ କଥା ନୁହେ ଫେରି ଅସିଲେ ରାଜ୍ୟ ପାଇବେ, ତେବେ କଣ ହେବ ?। ପୁଣି ପାଞ୍ଚିପୁଞ୍ଚି ସ୍ଥିର କଲା ଯେ, ଏକବର୍ଷ ଅଜଣା ହୋଇ ବୁଲିବେ । ଅସଲ ମର୍ମ—ଏମାନେ ଏପରି କେଉଁଠି ଲୁଚିବେ ? ଲୁଚି ପାରିବା ତ ସହଜ ନୁହେ । ବର୍ଷକ ମଧ୍ୟରେ ଅବଶ୍ୟ ଧରା ପଡ଼ିବେ ! ସୁତରାଂ ଯାଏ ଯବାବ ହେଲା ଯେ ଏ ବର୍ଷକେ ଯେବେ ତାଙ୍କୁ କେହି ଚିହ୍ନିବ, ତେବେ ସେ ରାଜସିଂହାସନରେ ବସି ପାରିବେ ନାହିଁ । ଏହି ସର୍ତ୍ତରେ ଦୁର୍ଯ୍ୟୋଧନ 'ପାଣ୍ଡବମାନଙ୍କୁ ରାଜ୍ୟରୁ ବାହାର କରିଦେଲା । ଏମାନେ ଅପଣା ସତ୍ୟ ରକ୍ଷା କରିବା ଲାଗି ରାଜ୍ୟ ଛାଡ଼ି ଦେଇ ଗଲେ ।

ସ୍ତ୍ରୀ—ଦୁର୍ଯ୍ୟୋଧନର ଟିକିଏ ଦୟା ହେଲା ନାହିଁ ? ଅଧଣା ଭାଇଗୁଡ଼ାକ କେଉଁଠି ବଣ ଜଙ୍ଗଲରେ ବୁଲିବେ, ମୁଠାଏ ଖାଇବାକୁ ପାଇବେ ନାହିଁ, ଖଣ୍ଡିଏ ପିନ୍ଧିବାକୁ ପାଇବେ ନାହିଁ, ବାର ଅରକ୍ଷିତ ପର କାହା ଦୁଆରେ ଠିଆ ହେବେ ।

ସ୍ବା—ତଗାର କାହିଁ ନା, ମା ପେଟରେ ! ଯାହାଙ୍କ ମୃତ୍ୟୁ ଲାଗ ଏତେ ଉପାୟ, ତାଙ୍କ ପ୍ରତି ପୁଣି ଦୟା !

ସ୍ତ୍ରୀ—ଅଚ୍ଛା, ପାଣ୍ଡବମାନେ ତ ବନବାସ ଗଲେ, ତହିଁ ଉତ୍ତାରୁ କଣ ହେଲା ?

ସ୍ବା—ପାଣ୍ଡବମାନେ ଘରୁ ବାହାର ଗଲେ, ନାନା ଦେଶ ବିଦେଶ ବୁଲିଲେ; ଆମ ଏଇ ପୁରୀ ଜିଲ୍ଲା ବାଟେ ଯାଇଥିଲେ ପରା !

ସ୍ତ୍ରୀ—ଆମ ଜିଲ୍ଲା ବାଟରେ କେଉଁ ଦଗରେ ଯାଇଥିଲେ ସେ ?

ସ୍ବା—ପ୍ରାଚୀ ନଈବାଟେ ଯାଇଥିଲେ ପରା ! ଏବେ ମଧ୍ୟ ପାଣ୍ଡବକୁଦ ବୋଲି ସ୍ଥାନ ଅଛି । ଅଲରନାଥଙ୍କ ପାଖେ ପଞ୍ଚପାଣ୍ଡବ ନାମରେ ମହାଦେବ ଅଛନ୍ତି । ଏହିପରି ନାନାଆଡ଼େ ବୁଲି ୧୨ ବର୍ଷ ଗଲା ପରେ ବର୍ଷେ କାଳ ବିରାଟ ଘରେ ଲୁଚିଲେ । ବିରାଟ ଘରେ ସେମାନେ ଏପରି ଭାବରେ ରହିଲେ ଯେ, ବିରାଟ ଘର ଲୋକେ ତାଙ୍କୁ ଜମା ଚହ୍ନି ପାରିଲେ ନାହିଁ ।

ସ୍ତ୍ରୀ—ଏପରି କପରି ରହିଲେ ଯେ, ତାଙ୍କୁ କେହି ଚହ୍ନି ପାରିଲା ନାହିଁ ?

ସ୍ବା—ସେମାନେ ବେଶ ବଦଳାଇଲେ । ଭୀମ ରାନ୍ଧୁଣିଆ ପଣ୍ଡା ହୋଇ ରହିଲେ । ଅର୍ଜୁନ ବୃହନ୍ନଳା ବେଶରେ ବିରାଟ ରାଜକନ୍ୟାଙ୍କୁ ଗୀତ ବାଦ୍ୟ ଶିକ୍ଷା ଦେଲେ । ନକୁଳ ଅଶ୍ୱଶାଳାରେ ରହିଲେ । ସହଦେବ ଗୋଶାଳାରେ ରହିଲେ । ଯୁଧିଷ୍ଠିର ବ୍ରାହ୍ମଣ ବେଶରେ ସଭା ପଣ୍ଡିତ ହୋଇ ରହିଲେ । ଦ୍ରୌପଦୀ ଅନ୍ତଃପୁରରେ ଦାସୀ ହୋଇ ରହିଲେ । ଏହିପରି ଭାବରେ ବର୍ଷକ ବିତିଗଲା । ଦୁର୍ଯ୍ୟୋଧନ ଯେତେ ଅନୁସନ୍ଧାନ କଲା, କିଛି ଜାଣି ପାରିଲା ନାହିଁ । ବର୍ଷକ ଶେଷରେ ଏ ଏ ପାଞ୍ଚଭାଇ ଯାଇ ଫେରିଲେ ।

ସ୍ତ୍ରୀ—ଏମାନେ ତ ବହୁତ କଷ୍ଟ ପାଇଥିବେ ?

ସ୍ୱା—କଷ୍ଟ କ'ଣ ? ମନ କଲେ କଷ୍ଟ, ମନ କଲେ ସୁଖ । ପୃଥିବୀରେ ଅଭାବ କ'ଣ ଅଛି ? ପେଟକୁ ମୁଠାଏ ମିଳିଲେ ଚିନ୍ତା କ'ଣ ?

ସ୍ତ୍ରୀ—ଅଛି; ଏମାନେ ତ ସତ୍ୟ ପାଳିଲେ, ତେରବର୍ଷ କଟାଇଲେ; ଫେରି ଆସିଲେ, ଦୁର୍ଯ୍ୟୋଧନ ଏମାନଙ୍କୁ ରାଜ୍ୟ ଛାଡ଼ି ଦେଉଛିକି ?

ସ୍ୱା—ନାହିଁ ହେ, ଛାଡ଼ିଦେଲା କେଉଁଠି ? ନ ଛାଡ଼ିବାରୁ ତ ଯୁଦ୍ଧ ହେଲା । ରାଜ୍ୟ ଛାଡ଼ି ଦେଇଥିଲେ, ଏତେ କାଣ୍ଡ କାହିଁକି ହୋଇଥାନ୍ତା ?

ସ୍ତ୍ରୀ—କେହି ଭଲଲୋକ କରି ଭାଙ୍ଗି ଦେଇ ପାରିଲେ ନାହିଁ ?

ସ୍ୱା—ତମେ ଥିଲେ ଅବା ଭାଙ୍ଗିଦେଇ ପାରିଥା'ନ୍ତ ! କାହିଁ, କୃଷ୍ଣ ଭଲ ଲୋକ କଲେ, ତେବେ ସୁଦ୍ଧା ହେଲା ନାହିଁ । କୃଷ୍ଣ କହିଲେ—ପାଣ୍ଡବ ପାଞ୍ଚ ଭାଇଙ୍କି ପାଞ୍ଚ ଖଣ୍ଡି ଗ୍ରାମ ଛାଡ଼ିଦେଇ, ସବୁ ରାଜ୍ୟ ଦୁର୍ଯ୍ୟୋଧନ ଭୋଗକରୁ । ଏଥିରେ ସେ ରାଜି ହେଲା ନାହିଁ ।

ସ୍ତ୍ରୀ—କୃଷ୍ଣଙ୍କ କଥା ମାନିଲା ନାହିଁ, କ'ଣ କହିଲା ?

ସ୍ୱା—କୃଷ୍ଣଙ୍କ ଚଉଦ ପୁରୁଷ ଉଦ୍ଧାରିଲା । ଗଉଡ଼, ଶବର, ଅଇଣ୍ଠାଖିଆ, ମୂର୍ଖ ଇତ୍ୟାଦି ନାନା କଥା କହି ଗାଳିଦେଲା; ମାଡ ମରାଇଲା । ଶେଷରେ କହିଲା—ବିନା ଯୁଦ୍ଧରେ ଛୁଞ୍ଚି ଅଗରେ ଅଟେ ଦେବି ନାହିଁ । ପାଞ୍ଚଖଣ୍ଡ ଗ୍ରାମ ତ ଦୂରର କଥା ।

ସ୍ତ୍ରୀ—ଅହା, ଦୁର୍ଯ୍ୟୋଧନଟା କ'ଣ ବଳି ମ ? ଶ୍ରୀକୃଷ୍ଣଙ୍କୁ ଚିହ୍ନି ପାରିଲା ନାହିଁ ! ଦୁର୍ଯ୍ୟୋଧନ ବୁଡ଼ିଲା ! ଅଧର୍ମ ପାଞ୍ଚିଲା !

ସ୍ୱା—ତା ହୋଇ ନ ଥିଲେ ଶ୍ରୀକୃଷ୍ଣ ଅର୍ଜୁନଙ୍କ ପକ୍ଷ ନେଇଥାନ୍ତେ କାହିଁକି ? ତାଙ୍କର ତ କେହି ଶତ୍ରୁ ମିତ୍ର ନାହାନ୍ତି, ଅଧର୍ମ

କେବଳ ତାଙ୍କର ଶତ୍ରୁ, ଯେଉଁଠି ଅନ୍ୟାୟ୍ୟ ଅଧର୍ମ ଦେଖା ଦେଲା, ସେଠି ଶ୍ରୀକୃଷ୍ଣ ତା ବିପକ୍ଷରେ ଠିଆ ହେଲେ । ଅଉ ଦୁର୍ଯୋଧନ ମାଡ଼ି ବସି ସବୁ ସମ୍ପତ୍ତି ଭୋଗ କଲା, ଭାଇମାନଙ୍କୁ ଘରୁ ବାହାର କରିଦେଲା । କାଲି ଏ କଥା ଦେଖି ସୃଷ୍ଟି ଅନ୍ୟମାନେ ସେହିପରି କରିବେ । ଯେଉଁ ଭାଇ ବଳୁଆ ହେବ ସେ ତ ଅନ୍ୟମାନଙ୍କୁ ମାରି ଘଉଡ଼ାଇ ଦେବ ! ପିତୃଅର୍ଜିତ ସମ୍ପତ୍ତି ଜଣେ କାହୁଁକି ଖାଇବ, ଅନ୍ୟମାନେ କାହିଁକି ଦାଣ୍ଡରେ ଭିକ ମାଗି ବୁଲିବେ । ଏ କଥା ଧର୍ମସଙ୍ଗତ କଥା ନୁହେ । ଏଥିଲାଗି ଶ୍ରୀକୃଷ୍ଣ ଦୁର୍ଯୋଧନର ବିପକ୍ଷ ହେଲେ ।

ସ୍ତ୍ରୀ—ଶ୍ରୀକୃଷ୍ଣ ତ ଭଲକୁଲେକି କରି ପାରିଲେ ନାହିଁ । ତା ପରେ କଣ ହେଲା ?

ସ୍ୱା—ଯୁଦ୍ଧ ହେଲା । କେତେ ରାଜା ଦୁର୍ଯୋଧନ ପକ୍ଷ ନେଲେ । ଅଉ କେତେ ଅର୍ଜୁନ ପକ୍ଷ ନେଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ରଥରେ ସାରଥି ହେଲେ । ଶ୍ରୀକୃଷ୍ଣଙ୍କ ନାରାୟଣୀ ସେନା ଦୁର୍ଯୋଧନ ପକ୍ଷକୁ ଗଲେ ।

ସ୍ତ୍ରୀ—ଏ କି କଥା ସ ? ତୁମେ ତ ଗଲ ମୋ ପକ୍ଷରେ; ତୁମ ଚାକରଯାକ କିପରି ତା ପକ୍ଷରେ ଯିବେ ସ ?

ସ୍ୱା—ଅହେ ତମେ ବୁଝି ନାହଁ କି ? ଶ୍ରୀକୃଷ୍ଣ ଅର୍ଜୁନଙ୍କର ଯେପରି ବନ୍ଧୁ, ଦୁର୍ଯୋଧନର ସେହିପରି ବନ୍ଧୁ । ଯେତେବେଳେ ଯୁଦ୍ଧ ହେବାର କଥା ହେଲା; ଦୁଇପକ୍ଷ ଯାକ ଯେ ଯାହା ବନ୍ଧୁ ବାନ୍ଧବମାନଙ୍କୁ ଅମନ୍ତ୍ରଣ କଲେ । ଦୁର୍ଯୋଧନ ଯାଇ କୃଷ୍ଣଙ୍କୁ ଅମନ୍ତ୍ରଣ କଲ । ଅର୍ଜୁନ କୃଷ୍ଣଙ୍କୁ ଅମନ୍ତ୍ରଣ କଲା । ଶ୍ରୀକୃଷ୍ଣ ଦେଖିଲେ, ବଡ଼ ଅଡୁଆ କଥା; କାହାକୁ ହଁ କହୁବେ, କାହାକୁ ନାହିଁ କହୁବେ ।

ଯାହାକୁ ନାହିଁ କହିବେ ସେ ମୁହଁ ଶୁଖାଇବ । ଉପାୟ ପାଞ୍ଚି ଦୁ ଜଣଙ୍କୁ କହିଲେ, କାଲି ସକାଳୁ ଆସ, ଯାହାକୁ ଆଗ ଦେଖିବି ତା ପକ୍ଷରେ ଯିବି । ତହିଁଆରଦିନ ସକାଳୁ ଦୁହେଁ ଆସିଲେ । ଶ୍ରୀକୃଷ୍ଣ ଶୋଇଛନ୍ତି, ମୁଣ୍ଡ ପାଖରେ ଗୋଟିଏ ରତ୍ନ ଚଉକି ଥୁଆ ହୋଇଛି, ଦୁର୍ଯ୍ୟୋଧନ ଯେପରି ଆସିଲା ସେହି ଚଉକିରେ ବସିଲା । ତା ମନରେ ରଜା ବୋଲି ଭାରି ଗର୍ବ । ସେ ଅନ୍ୟ କେଉଁଠି ନ ବସି ଚଉକିରେ ବସିଲା । ପରେ ଅର୍ଜ୍ଜୁନ ଆସି ପହଞ୍ଚିଲେ । ସେ ହାତ ଯୋଡ଼ି ପାଦ ନିକଟରେ ଠିଆ ହେଲେ । ଶ୍ରୀକୃଷ୍ଣ ନିଦ୍ ହୋଇ ଶୋଇଥିଲେ, ହଠାତ୍ ଆଖି ମେଲାଇବାରୁ ଅର୍ଜ୍ଜୁନଙ୍କ ଉପରେ ଦୃଷ୍ଟି ପଡ଼ିଲା । ଦୁର୍ଯ୍ୟୋଧନ ତ ମୁଣ୍ଡ ପାଖରେ ବସିଥିଲା, ତା ଉପରେ ପରେ ଦୃଷ୍ଟି ପଡ଼ିଲା । ଶ୍ରୀକୃଷ୍ଣ କହିଲେ—"ଦେଖ ଦୁର୍ଯ୍ୟୋଧନ, ମୁଁ ତ ଆଗ ଅର୍ଜ୍ଜୁନଙ୍କୁ ଦେଖିଛି, ତାଙ୍କ ପକ୍ଷରେ ରହିବି । ଦେଖ, ମୁଁ ତ ହାତହତିଆର ଧରି ଯୁଦ୍ଧ କରିବି ନାହିଁ, ମୁଁ କେବଳ ଅର୍ଜ୍ଜୁନଙ୍କ ରଥ ଉପରେ ବସି ଯୁଦ୍ଧ ଦେଖିବି । ମୋର ଯେଉଁ ନାରାୟଣୀ ସେନା ଅଛନ୍ତି, ସେମାନେ ଯୁଦ୍ଧ କରିବେ । ତେବେ ତମେ ଦୁହେଁଯାକ ମୋର ବନ୍ଧୁ, ଦୁହିଁଙ୍କ ସାହାଯ୍ୟ ଦେବା ମୋର ଉଚିତ । ତେଣୁ ଜଣଙ୍କ ପକ୍ଷେ ମୁଁ ରହିବି; ଅନ୍ୟ ଜଣଙ୍କ ପକ୍ଷରେ ମୋ ସୈନ୍ୟମାନେ ରହିବେ । ସେମାନେ ଯୁଦ୍ଧ କରିବେ, ମୁଁ କେବଳ ଦେଖିବି । ଏଥିରେ ତମର ଇଚ୍ଛା କଣ ?" ଦୁର୍ଯ୍ୟୋଧନ ଟିକିଏ ପାଞ୍ଚି, ସୈନ୍ୟମାନଙ୍କୁ ନେବାପାଇଁ ରାଜି ହେଲା । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ପକ୍ଷ ନେଲେ ।

ସ୍ତ୍ରୀ—ହଇହେ, ଦୁର୍ଯ୍ୟୋଧନ ଭୁଲିଲା କି ?

ସ୍ୱାମୀ—ଭୁଲିଲା ! କୃଷ୍ଣ ତ ଏକା ମାଧିଆ ବାଇଶିପଳ । ସେ ତ ସବୁ ନାଟର ଗୋବର୍ଦ୍ଧନ । କୋଟିଏ ସେନାଙ୍କ ବୁଦ୍ଧିବିଦ୍ୟା ତାଙ୍କ

ବୁଦ୍ଧି ବଦ୍ୟା ଆଗେ ପାଣି ଫାଟିଯିବ । ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଯାହା ପକ୍ଷରେ ଥିବେ, ଯେତେ ଇଚ୍ଛା ତେତେ ସୈନ୍ୟ ଥାନ୍ତୁ, ତାର କଣ କରିପାରିବେ ! ଦୁର୍ଯ୍ୟୋଧନର ତ ବିନାଶ ବେଳ ପଡ଼ୁଛି, ସେ ଚିହ୍ନି ପାରିଲା ନାହିଁ । ଯାହାର ଗର୍ବ, ଅହଂକାର, ଈର୍ଷା ପୂରି ରହିଛି, ତାକୁ ଭଲ ବାଟ ଦିଶିବ କିପରି ?

ସ୍ତ୍ରୀ—ଶ୍ରୀକୃଷ୍ଣ ଅସ୍ତ୍ର ଧରିବେ ନାହିଁ ବୋଲି କାହିଁକି କହିଲେ ?

ସ୍ୱାମୀ—ତାଙ୍କ ବଡ଼ ଭାଇ ବଳରାମ ତାଙ୍କୁ ମନା କରିଥିଲେ । ସେ କହିଲେ—"ଆମର ଏ ବନ୍ଧୁ, ସେ ବନ୍ଧୁ, ତୁମେ କାହାର ବିପକ୍ଷରେ ଅସ୍ତ୍ର ଧରିବ ନାହିଁ ।" ଶ୍ରୀକୃଷ୍ଣ ଦେଖିଲେ, ବଳରାମ ବଡ଼ ଭାଇ, ତାଙ୍କ କଥା ନ ମାନିଲେ ଭାଇ ଭାଇ ମଧ୍ୟରେ ଅନିଷ୍ଟ ହେବ । ସୁତରାଂ ଭାଇଙ୍କ କଥାରେ ରାଜି ହେଲେ ।

ସ୍ତ୍ରୀ—ଅଚ୍ଛା, ଏପଟେ ସେପଟେ ଯେଉଁମାନେ ଯୁଦ୍ଧ କରିବାକୁ ଆସିଥିଲେ, ସେମାନେ ତ ସମସ୍ତେ ଆପଣା ଆପଣା ଲୋକ; କିପରି ପରସ୍ପର ହଣାହଣି ହେଲେ ମ ? କାହାରିକି ଏ କଥା ବାଧିଲା ନାହିଁ ?

ସ୍ୱାମୀ—ଅର୍ଜୁନଙ୍କ ମନକୁ ଏ କଥା ବାଧିଲା । ସେ ପ୍ରଥମେ ଯୁଦ୍ଧ କରିବାକୁ ମନା କଲେ । ସେ ରଥରେ ବସି ଯୁଦ୍ଧକ୍ଷେତ୍ରକୁ ଆସିଲେ । ଯୁଦ୍ଧକ୍ଷେତ୍ର ମଧ୍ୟରେ ରଥ ରଖି ଚାରିଆଡ଼କୁ ଚାହିଁଲେ । ଦେଖିଲେ ସମସ୍ତେ ଆପଣା-ଆପଣା ଲୋକଗୁଡ଼ାକ ଏପଟେ ସେପଟେ ଅଛନ୍ତି, ସେହିମାନଙ୍କୁ ମାରିବାକୁ ହେବ ! ଏ କଥା ଦେଖି ତାଙ୍କ ହୃଦୟ ଥରିଲା; ହାତରୁ ଧନୁଶର ଖସି ପଡ଼ିଲା, ମୁହଁ ଶୁଖିଗଲା; ସେ ରଥ ଉପରେ ବସିପଡ଼ି କହିଲେ

—"ପ୍ରଭୁ, ମୁଁ ଏ ଯୁଦ୍ଧ କରିପାରିବି ନାହିଁ। ରାଜ୍ୟ ପାଇବ ବୋଲି ମୋ ଭାଇ, ବନ୍ଧୁ, କୁଟୁମ୍ବଙ୍କୁ ମାରିବି କିପରି ? ମୁଁ ଏମାନଙ୍କ ମାରି କି ସୁଖ ପାଇବି ? ମୋର ଧନ ସମ୍ପତ୍ତିରେ ଆଶା ନାହିଁ। ଘର ଧନଲାଗି ରକ୍ତ-ନଦୀ ବୁହାଇବି ? ଏପରି ଅଧର୍ମ କାର୍ଯ୍ୟ ମୋ ହାତରେ ହେବ ନାହିଁ । ଏ କଥା ଦେଖି ମୋ ହାତ ଉଠୁ ନାହିଁ, ମୁଁ ଲଢ଼ିବି କିପରି ? ଚାଲ କୃଷ୍ଣ, ଚାଲ ଫେରି ଯିବା। ଦୁର୍ଯୋଧନ ଖାଇଲେ କେତେ, ମୁଁ ଖାଇଲେ କେତେ, ଭାଇ ତ ଖାଇବ ! ସେ ରାଜା ହେବ, ମୁଁ ଭିକ୍ଷା ମାଗି ବୁଲିବି, ଏ କଥା ଯେବେ ତାଙ୍କୁ ସୁନ୍ଦର ଦିଶିଲା, ହେଉ। କେତେ ଲୋକ ତ ଭିକ ମାଗି ପେଟ ପୋଷୁଛନ୍ତି, ମୋ ପେଟ ଅପୋଷା ଯିବ ? କେତେ ଦିନ ଏ ଦେହ ଧରି ରହିବା ? ଏତେ ପ୍ରାଣୀ ନାଶ କରି କି ଅଧିକ ଫଳ ମିଳିବ ? ସେମାନେ ପାପୀ, ବୁଝି ପାରୁ ନାହାନ୍ତି । ଆମେ ତାଙ୍କ ସଙ୍ଗେ ଅବୁଝା ହେବା କାହିଁକି ?

ସ୍ତ୍ରୀ—ଅର୍ଜ୍ଜୁନ ତ ଭଲ କଥା କହିଲେ, ଶ୍ରୀକୃଷ୍ଣ କଣ ଉତ୍ତର ଦେଲେ ?

ସ୍ୱା—ଶ୍ରୀକୃଷ୍ଣ ଯାହା କହିଲେ, ସେ ତ ଅଠର ଅଧ୍ୟା ପାଠ । ଏ ଅଠର ଅଧ୍ୟାୟର ନାମ ଶ୍ରୀମଦ୍ ଭଗବଦ୍‌ଗୀତା । ସେ ସବୁ କଥା କହିଲେ ପୋଥିଟାଏ ହେବ ।

ସ୍ତ୍ରୀ—ଟିକେ ଟିକେ କହିଲେ ହେବ ନାହିଁ ?

ସ୍ୱା—ଟିକେ ଅଟକେ କେତେ କହିବି ? ସେପରି କହିଲେ, କଣ ବୁଝି ପାରିବ ? ଏ ବଡ଼ ଗୂଢ଼ କଥା । ଅର୍ଜ୍ଜୁନ କହିଲେ, ଦୁର୍ଯୋ-ଧନ ପ୍ରଭୃତି ଅନାତ୍ମକାମୀ; ତଥାପି ସେ ସେମାନଙ୍କୁ ମାରିବେ

ନାହିଁ । ସେମାନେ ମରିବା ଯୋଗ୍ୟ; କିନ୍ତୁ ସେ ମାରିବବ ନାହିଁ । ଯେଉଁମାନେ ଘର ପୋଡ଼ି ଦିଅନ୍ତି, ଯେଉଁମାନେ ବିଷ ଦିଅନ୍ତି, ଯେଉଁମାନେ ଅସ୍ତ୍ର ଘେନି ଯୁଦ୍ଧ କରିବାକୁ ଆସନ୍ତି, ଯେଉଁମାନେ ଧନ ହରଣ କରନ୍ତି, ଯେଉଁମାନେ ଭୂମି ହରଣ କରନ୍ତି, ଯେଉଁମାନେ ସ୍ତ୍ରୀ ପ୍ରତି ଅତ୍ୟାଚାର କରନ୍ତି, ସେମାନେ ଆତତାୟୀ ବା ପାପୀ । ସେମାନଙ୍କୁ ମାରିଦେଲେ କିଛି ଦୋଷ ନାହିଁ ବୋଲି ଶାସ୍ତ୍ର କହୁଛି । ଦୁର୍ଯ୍ୟୋଧନ ଏ ଛଅ ଦୋଷରେ ଦୋଷୀ, ସେ ନ କରିଛି କଣ ? ଜଉ ଘରେ ପୂରାଇ ଏମାନଙ୍କୁ ପୋଡ଼ୁଥିଲା, ଭୀମଙ୍କୁ ବିଷ ଦେଇଥିଲା, ଯୁଦ୍ଧ କରିବ ବୋଲି ଅସ୍ତ୍ର ଧରି ଉପସ୍ଥିତ, ଏମାନଙ୍କ ରାଜ୍ୟ ମାଡି ବସିଛି, ଦ୍ରୌପଦୀଙ୍କୁ ସଭାକୁ ଆଣି ଅପମାନ ଦେଲା, ଆଉ ବାକି ରହିଲା କଣ ? ସୁତରାଂ ତାକୁ ମାରିଲେ କିଛି ଦୋଷ ନାହିଁ । ଅର୍ଜୁନ କହିଲେ, ସେମାନେ ଏତେ ଦୋଷ କରିଛନ୍ତି ସତ, ମାତ୍ର ସେ ତାଙ୍କୁ ମାରିବେ ନାହିଁ । ଶ୍ରୀକୃଷ୍ଣଙ୍କଠାରେ ପ୍ରସନ୍ନ ହୋଇ ପଚାରିଲେ, ତାଙ୍କର ଏ କ୍ଷେତ୍ରରେ କଣ କରିବା ଉଚିତ ? ଶ୍ରୀକୃଷ୍ଣ କହିଲେ, "ହେ ଅର୍ଜୁନ, ତୁମ୍ଭର ବଡ଼ ଭ୍ରମ । ତୁମ୍ଭେ ଏମାନଙ୍କୁ ଯୁଦ୍ଧରେ ମାରିଲେ କିଛି ଅଧର୍ମ ହେବ ନାହିଁ । ତୁମ୍ଭେ କ୍ଷତ୍ରିୟ, ଯୁଦ୍ଧ କରିବା ତୁମ୍ଭର ଧର୍ମ, ଯୁଦ୍ଧ ନ କଲେ ପାପ ହେବ । ଯୁଦ୍ଧ କରିବାକୁ ପ୍ରତିଜ୍ଞା କରି, ଯୁଦ୍ଧ ଭୂମିକି ଆସି, ଫେରିଗଲେ ଲୋକେ ନିନ୍ଦା କରିବେ । ତୁମ୍ଭେ ଡରି ପଳାଇଲ କହି ହସିବେ । ସମ୍ଭ୍ରାନ୍ତ ଲୋକର ନିନ୍ଦା ଶୁଣିବା ଅପେକ୍ଷା ମରଣ ଶ୍ରେୟସ୍କର । ଯୁଦ୍ଧରେ ଜିଣିଲେ ରାଜ୍ୟ ପାଇବ, ମଲେ ସ୍ୱର୍ଗଲାଭ ହେବ । କ୍ଷତ୍ରିୟମାନେ ଏପରି ଯୁଦ୍ଧ ସହଜରେ ପାଆନ୍ତି ନାହିଁ । ଏତେବେଳେ ତୁମ୍ଭର ଏପରି ମୋହ ବୁଦ୍ଧି ହେଲା କାହିଁକି ?

ସ୍ତ୍ରୀ—ଅର୍ଜ୍ଜୁନ ତ ଯୁଦ୍ଧ କରିବେ ନାହିଁ ବୋଲି କହୁଥିଲେ, ଶ୍ରୀକୃଷ୍ଣ କାହିଁକି ତାଙ୍କୁ ଏ ମାର୍ଗ ମଡ଼ାଇଲେ? କିଏ ସିନା କଳି ଛଡ଼ାଇଦିଏ, ସ୍ୱାମୀଙ୍କର କଳି ଲଗାଇବା ପାଇଁ ଏତେ ପ୍ରବର୍ତ୍ତନା କାହିଁକି?

ସ୍ୱାମୀ—ସେ ତ କଳି ଲଗାଇବା କଥା କିଛି କହିଲେ ନାହିଁ। ଅର୍ଜ୍ଜୁନ ତାଙ୍କର ପରମବନ୍ଧୁ। ଯେ ଯାହାର ଆପଣା ଲୋକ, ସେ ଆପଦ ବିପଦବେଳେ ଭଲ ବୁଦ୍ଧି ଦିଏ। ସେ ଦେଖିଲେ, ଅର୍ଜ୍ଜୁନ ବଡ଼ ଭ୍ରମରେ ପଡ଼ିଛି, ତାକୁ ଭଲ ବାଟ ଦେଖାଇ ଦେଲେ ସେ ଭଲିଯିବ।

ସ୍ତ୍ରୀ—ମଣିଷ ମାରିବାଟା କଣ ଭଲ କଥା?

ସ୍ୱାମୀ—ଏଠାରେ ମନୁଷ୍ୟ ମାରିବା କଥା ତ ପଡ଼ ନାହିଁ। ଏଠାରେ କଥା ହେଉଛି ଦୁର୍ଯ୍ୟୋଧନ ପ୍ରଭୃତି ଅଧର୍ମାଚରଣ କଲେ। ସେମାନେ ହତ ନ ହେଲେ ସଂସାର ଚଳିବ କିପରି? ପାପ ଭାର ବେଶୀ ହେଲେ ଭଗବାନ ଅବତାର ହୋଇ ଦୁଷ୍ଟ ଦଳନ କରନ୍ତି ଏବଂ ସାଧୁ ଲୋକଙ୍କୁ ରକ୍ଷା କରନ୍ତି।

ସ୍ତ୍ରୀ—ସେ ନିଜେ ମାରିଲେ ନାହିଁ, ଅର୍ଜ୍ଜୁନଙ୍କୁ କହିଲେ କାହିଁକି?

ସ୍ୱାମୀ—ସେ ପରା ଅର୍ଜ୍ଜୁନଙ୍କୁ ବୁଝାଇଲେ, ସେମାନେ ତାଙ୍କ ପାପ ହେତୁ ମୋ ଦ୍ୱାରା ମରି ସାରିଛନ୍ତି, ତୁ କେବଳ ନିମିତ୍ତ ମାତ୍ର ହୋଇ ଠିଆ ହେବୁ। ମୋଠି ବିଶ୍ୱାସ ରଖି ତୁ କାମ କର। ହାରି ଜିଣା କଥା ମନରେ ଧର ନାହିଁ। ତୁ କ୍ଷତ୍ରିୟ, ଯୁଦ୍ଧ କରିବା ତୋର ଜାତିର ଧର୍ମ। ତୁ ଯୁଦ୍ଧ କର, ଫଳାଫଳ ଭଗବାନଙ୍କ ହାତରେ। କେହୁ କାହାକୁ ମାରୁ ନାହିଁ, କେହୁ ମରୁ ନାହିଁ। ଆତ୍ମା ଅମର, ସେ ଏ ଦେହ ଛାଡ଼ି ଅନ୍ୟ ଦେହ ଧାରଣ କରିବ। ପୁରୁଣା ଲୁଗା ପକାଇ ଦେଇ ନୂଆ ଲୁଗା ପିନ୍ଧିବା

ଯାହା, ଥରେ ମରି ଆଉ ଥରେ ଜନ୍ମହେବା ତାହା । ଏ ସଂସାରରେ କେହି କାହାର ନୁହେ । ମୋହ ମୋର କହିବା କେବଳ ମାୟା । ଯେ ଯାହା କାମ ଶେଷ କରି ଚାଲିଯିବ । ଏଥିଲାଗି ଜଣେ ମଲେ ଆଉ ଜଣେ କାନ୍ଦିବ କାହିଁକି ? ଛାଡ଼ ସକଳ ଆଶା, କର ମୋତେ ଭରସା, ଦେଖିଥିବ ତୋ ଦଶା, ନ ହୁଅ ଲୋକ ହସା, ଉଠ ଯୁଦ୍ଧ କର, କିଛି ଚିନ୍ତା ନାହିଁ ।” ତଥାପି ଅର୍ଜ୍ଜୁନ ସନ୍ଦେହ କଲେ । ମହାପ୍ରଭୁ ବିଶ୍ୱରୂପ ଦେଖାଇ ତାଙ୍କର ସନ୍ଦେହ ତୁଟାଇ ଦେଲେ । ଅର୍ଜ୍ଜୁନ ବିଶ୍ୱରୂପ ଦେଖି ସବୁ ବୁଝି ପାରିଲେ । ଯୁଦ୍ଧ କଲେ, ଜିଣିଲେ, କୁରୁବଂଶ ଲୋପ ହେଲା । ଅଠର ଦିନ ମହାଭାରତ ଯୁଦ୍ଧ ହେଲା । ଯେତେ ବଡ଼ ବଡ ବୀରମାନେ ଆସିଥିଲେ, ସମସ୍ତେ ମଲେ । ସେହି ସମୟରୁ ଭାରତରୁ କ୍ଷତ୍ରିୟ ଶକ୍ତି ଲୋପ ହେଲା । ଧର୍ମର ଜୟ ହେଲା, ପାପ ପରାସ୍ତ ହେଲା । ଯେଉଁଠି ଧର୍ମ ସେଇଠି କୃଷ୍ଣ, ଯେଉଁଠି କୃଷ୍ଣ ସେଇଠି ଜୟ । ଏଥିଲାଗି କହନ୍ତି “ଧର୍ମରୁ ଜୟ, ପାପରୁ କ୍ଷୟ, ଧର୍ମରେ ଥିଲା ଲୋକକୁ ନ ପଡ଼େ ଅପ୍ରମୟ ।” ଯୁଧିଷ୍ଠିର ଧର୍ମରେ ଥିଲେ, ତେଣୁ କୃଷ୍ଣ ତାଙ୍କ ସହାୟ ହେଲେ । ଦୁର୍ଯ୍ୟୋଧନ ପାପ କଲା, ତା ବଂଶ ଲୋପ ହେଲା । ଧର୍ମରେ ଥିଲେ ଅଗ ଗୋଡ଼ରେ କଣ୍ଟା ବାଜେ ନାହିଁ । ବାଜିଲେ ମଧ୍ୟ ଭଗବାନ ନିଜେ ତାଡ଼ି ଦିଅନ୍ତି, ସୁତରାଂ ଭଗବାନଙ୍କଠାରେ ଭକ୍ତି ରଖି ଉତ୍ତମ କର୍ମ କରିବା ମନୁଷ୍ୟର ଧର୍ମ । ଫଳ କାମନା ଛାଡ଼ି ଭଗବାନଙ୍କ ଲାଗି କର୍ମ କରିବ ।

ସ୍ତ୍ରୀ—ତେବେ କଣ ଭଗବାନ କହିଲେ ଏ ସଂସାର ମିଛ । ଯାହା ହେଉଛି ଭଗବାନ କରୁଛନ୍ତି, ଆମର କିଛି କରିବାର ନାହିଁ ?

ସ୍ୱା—ଅହେ, ଅସଲ କଥା ମଜାଟି ତ ବୁଝିଲ ନାହିଁ, କଣ ବୁଝିଲ ? କୃଷ୍ଣ କହନ୍ତି, ପ୍ରତ୍ୟେକ ଲୋକ କର୍ମ ନ କରି ରହି ପାରିବ ନାହିଁ, ଅବଶ୍ୟ କର୍ମ କରିବ, କିନ୍ତୁ ମୁଁ କରୁଛି ବୋଲି ଅହଙ୍କାର କରିବ ନାହିଁ । ଏ କାମ କଲେ ଏ ଫଳ ପାଇବ, ଏପରି ଇଚ୍ଛା କର ନାହିଁ । ମନରେ ଫଳ ବାସନା ରଖିଲେ ସଂସାର-ପଙ୍କରେ ବାନ୍ଧି ହୋଇଥିବ, ଅଉ ଉଦ୍ଧାର ନାହିଁ । ଏ ସଂସାର ଭଗବାନ ସୃଷ୍ଟି କରିଛନ୍ତି, ସେହି ସୃଷ୍ଟିକି ରକ୍ଷା କରିବା ପାଇଁ ଭଗବାନ ଯାହାକୁ ଯେପରି ଶକ୍ତି ଦେଇ ପଠାଇଛନ୍ତି । ମନୁଷ୍ୟ ଭଗବାନଙ୍କ କାର୍ଯ୍ୟ କରିବାକୁ ଆସିଛି, ଏହି ବିଶ୍ୱାସ ରଖି କାମ କରିଯାଅ । ମୁଁ କର୍ତ୍ତା ବୋଲି ଗର୍ବ କର ନାହିଁ, କି ଏ ଫଳ ସେ ଫଳ ପାଇବି ବୋଲି ଆଶା ରଖ ନାହିଁ । ଭଗବାନ ଯାହା କହୁଛନ୍ତି ମୁଁ ତାହା କରୁଛି ବୋଲି ବିଶ୍ୱାସ କର । ସଂସାରରେ ଥାଇଁ ଏହିପରି ବିଶ୍ୱାସରେ କାମ କଲେ କିଛି ଦୁଃଖ ନାହିଁ, ମୁକ୍ତି ମିଳିବ, ଜନ୍ମ ମରଣ କଷ୍ଟ ଭୋଗିବାକୁ ପଡ଼ିବ ନାହିଁ । ସଂସାର-ପଙ୍କରେ ରହ, ମାତ୍ର ପଙ୍କ ଯେପରି ଦେହରେ ନ ଲାଗିବ ସେପରି କର ।

ସ୍ତ୍ରୀ—ଏ କିପରି କଥା ମ ? ପଙ୍କରେ ପଶିବ, ଗୋଡରେ ପଙ୍କ ଲାଗିବ ନାହିଁ କିପରି ମ ?

ସ୍ୱା—ସେପରି ସାଧନା କରିବାକୁ ହେବ । ବାଲିକତରା ପୋକ ଦେଖିଛ ତ ସେ ପଙ୍କରେ ବୁଡ଼େ, ମାତ୍ର ଉଠିଲା ବେଳକୁ ଦେହରେ ପଙ୍କ ଲାଗେ ନାହିଁ । ତା ଦେହଟା ଥରେ ଝାଡ଼ିଲାଅ, ପଙ୍କ ସବୁ ଖସି ପଡ଼େ । ମନୁଷ୍ୟ ତାକୁ ଗୁରୁ କରି ସଂସାରୀ ହେବ ।

ସ୍ତ୍ରୀ—ତା ଦେହଟା ଶାଉଁଳିଆ ବୋଲି ପଙ୍କ ଲାଗିଲା ନାହିଁ । ଆମେ କିପରି କଣ କରିବା ?

ସ୍ୱାମୀ—ତା ଦେହଟା ଯେପରି ଶାଉଁଳିଆ, ଆମ ମନଟାକୁ ସେପରି ଶାଉଁଳିଆ କରିନେବାକୁ ହେବ । ମନଟା ବଡ଼ ଅବୁଝା ଖାବଡ଼ା । ମନଟା ଯେପରି ଗୋଟାଏ ସ୍ଥାନରେ ଲାଗି ନ ରହେ ସେପରି କରିବା ଉଚିତ । ମନ ଯେପରି ଏ ସଂସାର ବିଷୟରେ ଲାଗି ନ ରହେ । ମନଟାକୁ ସଂସାର ବିଷୟରେ କେବେ ନିଯୁକ୍ତ କରିବ ନାହିଁ । ସାରୁପତ୍ର, ପଦ୍ମପତ୍ର ଉପରେ ପାଣି ଥାଏ, ଟଳ ଟଳ ହେଉଥାଏ, ପତ୍ରକୁ ଅଣେଇ ଦେଲେ ପାଣି ଖସିପଡ଼େ । ପତ୍ରରେ ଲାଗି ରହେ ନାହିଁ । ଆମକୁ ସେହିପରି ଚଳିବାକୁ ହେବ । "ସବୁରି ସଙ୍ଗେ ସଙ୍ଗ ହୋଇ, କାହା ସାଥିରେ ନ ମିଶଇ" । ପୁଅ ମାଇପ ଭାଇ ବନ୍ଧୁ କୁଟୁମ୍ବମାନେ ସାରୁପତ୍ର; ମୁଁ ତା ଉପରେ ଥିବା ପାଣି ପରି ସେମାନଙ୍କ ସଙ୍ଗ ମେଳରେ ରହିବି । ଯେ ଯେତେବେଳେ ଯିବାକୁ ଥିବ, ଯିବ । କାନ୍ଦ ମୁଣ୍ଡ ବାଡ଼େଇ ହେଲେ କିଛି ଫଳ ମିଳିବ ନାହିଁ । ସାରୁପତ୍ର କିଏ ଛିଣ୍ଡାଇ ନେଲେ ପାଣିର କିଛି କ୍ଷତି ନାହିଁ । ପାଣି ଗଲେ ପତ୍ରର କିଛି କ୍ଷତି ନାହିଁ ପତ୍ର ଉପରେ ଥିଲା ବେଳଯାଏ ଥିଲା; ଗଲା ତ ଗଲା । ସେଥିଲାଗି କାହାର କି ଚିନ୍ତା ! ଏହି ଢଙ୍ଗରେ ମନଟାକୁ ଶାଉଁଳିଆ କରିବାକୁ ହେବ । ଭଗବାନଙ୍କଠାରେ ବିଶ୍ୱାସ ରଖି ଧର୍ମପୁସ୍ତକମାନ ପାଠ କଲେ ମନ ଚିକ୍କଣିଆ ହୋଇ ଯିବ । ମୋର ମୋର କହି ସଂସାର କଲେ ମନ ଅଠାଳିଆ ହୋଇ ଯିବ । ଅଠାଳିଆ ହେଲାରୁ ସଂସାର ବିଷୟରେ ଲାଗି ଯିବ । ମୋ ପୁଅ, ମୋ ଘର, ମୋ ଜମିବାଡ଼ି, ବୋଲି ଧନ ବିତ ଜପି ହେଲେ ମନ ସେ ସବୁଥିରେ

ଲକ୍ଷ୍ମୀ ଯିବ । ମାଇପ ମଲେ ରଡ଼ିବ, ଧନ ଚୋର ନେଲେ ମୁଣ୍ଡ ବାଡ଼େଇବ, ପୁଅ ମଲେ ଦାନା ଛାଡ଼ିବ ଇତ୍ୟାଦି ବୋଲି କ୍ରମେ ଭୀତ ହୋଇ, ମଣିଷକୁ କୁଜା କରି ତଳେ ପକାଇ ଦେବ । ସଳଖ ହୋଇ ଠିଆ ହେବାକୁ ସାଧ୍ୟ କାହାର ? ଯାହାକୁ କହନ୍ତି ସଂସାରରେ ଘାଣ୍ଟିହେବା ।

ସ୍ତ୍ରୀ—ହଇ ହେ, ତେବେ ଦେଖୁଛୁ ମୁଁ ମରିଗଲେ ତୁମେ କାନ୍ଦିବ ନାହିଁ ?

ସ୍ୱାମୀ—ମନରେ ଅଟା ଥିଲେ କାନ୍ଦିବି, ଶାଉଁଳିଆ ହୋଇଯାଇଥିଲେ ନ କାନ୍ଦିବି । କାନ୍ଦିବାର କି କାରଣ ଅଛି ? ମତେ ତମେ ରଖି ପାରିବ, ନା ମୁଁ ତମକୁ ରଖି ପାରିବି ? ତମେ ଥିଲ, ଅଛ, ରହିବ, ମୁଁ ଥିଲି, ଅଛି, ରହିବି । ତମେ କୁଆଡ଼େ ଯିବ ନା ମୁଁ କୁଆଡ଼େ ଯିବି । ଏ ଦେହ ଘଟ ଭାଙ୍ଗିଯିବ ନୂଆ ଘଟ ହେବ । ଆତ୍ମା ଏ ଘଟରୁ ଆର ଘଟକୁ ଯିବ । ପୁଣି କର୍ମ ଭୋଗ କରିବ ।

ସ୍ତ୍ରୀ—ଆମେ ଥିଲେଇଁ ଅଛେଇଁ ରହିବା ବୋଲି କହୁଅଛ, ଚିହ୍ନା ଚିହ୍ନି ହୋଇ ପାରୁ ନ ଥାଇ କାହିଁକି ?

ସ୍ୱାମୀ—ଆମର ପିଲାଦିନ କଥା ମନେ ରହୁ ନାହିଁ, ଗୋଟିଏ ଘଟ ଛାଡ଼ି ଅନ୍ୟ ଘଟକୁ ଗଲେ ମନେ ରହିବ କିପରି ? ଆଜି ମଧ୍ୟ କିଏ କେଉଁ ପ୍ରାଣୀ ଘଟ ନେବ କିପରି ଜାଣିବ ? ଜଣେ କୁକୁର ହେଲା; ଜଣେ ମନୁଷ୍ୟ ହେଲା, ମନୁଷ୍ୟ ଚିହ୍ନିବ କିପରି ? ଧରି ଦୁହେଁ ମନୁଷ୍ୟ ହେଲେ ତେବେ କେହୁ କାହାକୁ ଚିହ୍ନିବ କିପରି ? କେତେକାଳ ବହିଗଲା, ଗୋଟାଏ ଘଟ ଗଲା, ଆଉ ଗୋଟାଏ ଘଟ ହେଲା, ସବୁ ପାଶୋରି ହୋଇଗଲା । ତେଣୁ ଚିହ୍ନା ଚିହ୍ନି ହୋଇପାରୁ ନ ଥାଉଁ ।

ସ୍ତ୍ରୀ—ମନିଷ କଣ କୁକୁର ହୋଇ ପାରିବେ ?

ସ୍ୱା—ନା ହେବ ନାହିଁକି ? ଯେପରି କାମ କରିବ ସେପରି ଫଳ ପାଇବ । ଏହି ମଣିଷ ମଧ୍ୟରେ ଦେବତା ଅଛନ୍ତି, ରାକ୍ଷସ ମଧ୍ୟ ଅଛନ୍ତି । ଯେ ଯେପରି କର୍ମ କରିବ, ସେପରି ଜନ୍ମ ହେବ ।

ସ୍ତ୍ରୀ—ମଣିଷ ମଧ୍ୟରେ ରାକ୍ଷସ ଅଛନ୍ତି କିପରି ?

ସ୍ୱା—ଆଚରଣ ଦେଖିଲେ ଜଣା ପଡ଼ିବ । ଆଚାର ବ୍ୟବହାର ଦ୍ୱାରା ମନୁଷ୍ୟ ଦେବତା ବା ରାକ୍ଷସ । ଆଚରଣ ଭଲ ମନ୍ଦ ଭେଦରେ ମନୁଷ୍ୟଙ୍କ ଉନ୍ନତି ଅବନତି ହୁଏ । ଯେ ପଶୁପରି ଆଚରଣରେ ମନ ଦେଲା ସେ ପଶୁ ହେବ; କାରଣ ପଶୁ ଜନ୍ମ ହେଲେ ତା ମନ ମାଫିକେ ଭୋଗ କରିବ । ଯେ ପଶୁଙ୍କ ପରି ଆଚରଣ ନ କରି ଭଲ ଆଚରଣ କରିବ, ତା ମନ ଉପରକୁ ଗଲା, ସେ ମନୁଷ୍ୟ ହେବ, ଦେବତା ହେବ, ଶେଷରେ ଭଗବାନଙ୍କ ସାକ୍ଷାତ ପାଇବ । ସେ କଥା ନ ହେଲେ ସଂସାରରେ ସମସ୍ତେ ତ ମନୁଷ୍ୟ, ଜଣେ କାହିଁକି ଧନୀ, ଜଣେ କାହିଁକି ଦରିଦ୍ର, ଜଣେ ମେହନ୍ତର, ଜଣେ ସାଆନ୍ତ, ଜଣେ ରୋଗୀ, ଜଣେ ସୁସ୍ଥ, ଜଣେ ସୁନ୍ଦର, ଜଣେ କୁତ୍ସିତ, ଏପରି ଦେଖାଯାନ୍ତି କାହିଁକି ? ଏ ସବୁ ନିଜ କରିବା କର୍ମଫଳ ।

ସ୍ତ୍ରୀ—ଏ କଥା ଯାହା କହିଲ ସତ, କିନ୍ତୁ କରିପାରିବା ତ ସହଜ ନୁହେଁ ।

ସ୍ୱା—ସବୁ କଥା କଣ ସହଜରେ ହୋଇଯିବ ? ଚେଷ୍ଟା କଲେ ସହଜରେ ହେବ । ଅଭ୍ୟାସ କର ମନୁଟା କିପରି ବାଗରେ ଯିବ, ଏ ଜନ୍ମରେ ନ ହେଲେ ଆର ଜନ୍ମରେ ହେବ । ମଞ୍ଜି ଯୋତ, ଅବଶ୍ୟ ଦିନେ ଗଛ ହେବ । ଫଳ ଫଳିବ, ନିଜେ

ଭୋଗ କରିବ । ମନୁଷ୍ୟ ବଡ ଚଞ୍ଚଳ, ତାକୁ ଅନବରତ ବାଗ ଦେଇ ନ ରଖିଲେ, ଏଣେ ତେଣେ ପଳାଇବ ।

ସ୍ତ୍ରୀ—ମନୁଷ୍ୟ କଣ ଘୋଡ଼ା ଯେ ତାକୁ ବାଗ ଦେଇ ରଖିବ ?

ସ୍ୱା—ଅହେ ଘୋଡ଼ା ତ ଭଲ ! ମନ ତ ଘୋଡାଠାରୁ ବଳେ । ସେ ଦୁଷ୍ଟ, ସୈତାନ, ପାଜି, ପକ୍ଷୀରାଜଠାରୁ ଚଞ୍ଚଳ । ଘୋଡ଼ା ପାଟାରୁ ଫିଟିଗଲେ କୋଶେ, ଦ'କୋଶ ଦଉଡ଼ି ଯାଇ ଥକି ରହି ଯିବ । ମନ ପଲକ ନ ପଡ଼ୁ ପାଇ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁର ବୁଲି ଆସିବ । ଯେଉଁଠି ଇଚ୍ଛା ସେଠି ଲାଖି ରହିଯିବ । କଣ୍ଢା ଲଗାମ ନ ହେଲେ କଣ ସେ ଆୟତ୍ତରେ ରହିପାରିବ ?

ସ୍ତ୍ରୀ—ଏପରି କି କଣ୍ଢା ଲଗାମ ଅଛି ଯେ ମନକୁ ବାଗ ଦେଇ ରଖି ପାରିବ ?

ସ୍ୱା—ମନର ଲଗାମ ଅଲଗା । ଭଗବାନଙ୍କ ଧ୍ୟାନ, ନାମ କୀର୍ତ୍ତନ, ଶ୍ରବଣ, ସାଧୁସଙ୍ଗ, ଧର୍ମଶାସ୍ତ୍ର ପାଠ ପ୍ରଭୃତି ମନର କଣ୍ଢା ଲଗାମ । ଏହି ଲଗାମ ଦେଇ ବାରବାର ମନକୁ ମଣି କଲେ ଅବଶ୍ୟ ଦିନେ ସ୍ଥିର ହେବ, କଥା ମାନିବ, ଯେଉଁ ବାଗେ ବାଗେଇବା ସେ ବାଗେ ଯିବ ।

ସ୍ତ୍ରୀ—ଏଇଆ କରୁ କରୁ ତ ଦିନ ଯିବ ଅଉ କି କାମ—କେତେ-ବେଳେ କରିବ ମ ?

ସ୍ୱା—ସବୁ କାମ କରିବାକୁ ହେବ, କିନ୍ତୁ ମନଟାକୁ ଅଚଳ ଥାନରେ ଲଗାଇଥିବ । ଦେଖିନାହଁ, ବାଛୁରି ଲଗା ଗାଈ କଣ କରୁଥାଏ ? ବିଲକୁ ଯାଏ, ଘାସ ଚରୁଥାଏ, ପାଣି ପିଉଥାଏ; ଗୁହାଳରେ ଶୋଉଥାଏ, ଗଉଡ଼ ଠେଙ୍ଗାକୁ ଡରୁଥାଏ, ସବୁ କରୁଥାଏ, ମନଟା ଥାଏ ବାଛୁରିଠାରେ । "ହମ୍ବା" ପଡି

ମୁହୂର୍ତ୍ତରେ ବାହୁସ୍ଥାନରେ ନଜର ଥାଏ, ମନଟିରେ ବାହୁସ୍ଥ ନ ରହିଥାଏ । ଏହିପରି ଭଗବାନଙ୍କଠାରେ ଲକ୍ଷ୍ୟ ରଖି ସବୁ କାମ କର । ଫଳ ପାଇବା ଆଶାରେ କିଛି କର ନାହିଁ । ଫଳ ବାଞ୍ଛା ଅଠା, ସେହି ଅଠା ମନରେ ବୋଳା ହେଲେ ମନଟା ଯେଉଁ ସେଠି ଲାଗିଯିବ । ସେ ଅଠା ଛାଡ଼ିବା ସହଜ ନୁହେଁ, ଭଗବାନ ସେହିହେତୁ ଅର୍ଜୁନଙ୍କୁ ଉପଦେଶ ଦେଲେ ଯେ ତୁମ୍ଭେ କ୍ଷତ୍ରିୟ, ଯୁଦ୍ଧ ତୁମ୍ଭର ଧର୍ମ, ଯୁଦ୍ଧ କ୍ଷତ୍ରିୟର ଭୂଷଣ, ସୁତରାଂ ଯୁଦ୍ଧ କରିବାକୁ ଆବଶ୍ୟକ ପଡ଼ିଲେ ଯୁଦ୍ଧ କରିବ; ଅନ୍ୟ ଚିନ୍ତା କରିବା ଆବଶ୍ୟକ ନାହିଁ । ଠାକୁର ମନ୍ଦିରକୁ ଗଲେହିଁ, ଆମର ବିଶ୍ୱାସ ସେଠାରେ ଠାକୁର ଅଛନ୍ତି, ଠାକୁର ଦର୍ଶନ କର, ତାଙ୍କୁ ପୂଜାକର, ଦଣ୍ଡବତ କର, ଭଲ ପାଅ; ମାତ୍ର ହେ ଠାକୁର ମତେ ପୁଅଟାଏ ଦେଲେ ଭୋଗ ଦେବି, ଏପରି ମାନସ କର ନାହିଁ । ଠାକୁର ମଙ୍ଗଳମୟ, ସେ ଅବଶ୍ୟ ମଙ୍ଗଳ କରିବେ । ତାଙ୍କୁ ଭୋଗ ଦେଇ ପୁଅ ମାଗିବା, ଧନ ମାଗିବା, ସମ୍ପତ୍ତି ମାଗିବା ଉଚିତ ନୁହେ । ଗୃହ ଜଞ୍ଜାଳ କରୁଛ କର । ଭଗବାନ ଏ ଭାର ଦେଇଛନ୍ତି କରିବାକୁ ହେବ, ମାତ୍ର ସେ ସବୁ କାର୍ଯ୍ୟ ଭଗବାନଙ୍କ ପାଇଁ ହେଉଛି ବୋଲି ବିଶ୍ୱାସ ରଖି କର । ଭାତ ରନ୍ଧା ହେଉଛି; ନିଜ ଖାଇବା ପାଇଁ ନୁହେ, ପୁଅ ଝିଅଙ୍କ ପାଇଁ ନୁହେ, ଭଗବାନଙ୍କ ନୈବେଦ୍ୟ ପାଇଁ ରନ୍ଧାବଢ଼ା ହେଉଛି । ଭଗବାନଙ୍କୁ ଭୋଗ ଲଗାଅ, ସମସ୍ତେ ପ୍ରସାଦ ପାଅ । ଏପରି ଭାବରେ କଲେ କେତେ ପବିତ୍ରଭାବ ମନକୁ ଆସିବ । ଏ ରାଜ୍ୟ ମଧ୍ୟରେ ଯେତେ ଯାହା ପଦାର୍ଥ ଦେଖୁଛ ସବୁ ଭଗବାନ ସୃଷ୍ଟି କରିଛନ୍ତି । ସେ ପଦାର୍ଥମାନ ତାଙ୍କର, ତାଙ୍କୁ ଆଗେ ଅର୍ପଣ କର, ପଛେ ନିଜେ ପ୍ରସାଦ ପାଅ । ଏପରି

ଭବ ମନରେ ନ ରଖି ଯେ କେବଳ ନିଜପାଇଁ ସବୁ କରୁଛି ବୋଲି ଅହଙ୍କାର କରେ, ସେ ଶ୍ରେଷ୍ଠ ବୋଲି ଭଗବାନ ଗୀତାରେ କହିଛନ୍ତି । ଏପରି ଭାବରେ ଗୃହସ୍ଥାଶ୍ରମରେ ରହିଲେ ପରମ ସୁଖ ଶାନ୍ତି ମିଳିବ ।

ସ୍ତ୍ରୀ—ଗୀତାରେ କଣ ଏତିକି କଥା ଅଛି ?

ସ୍ୱାମୀ—ଗୀତାରେ ବହୁତ କଥା ଅଛି । ଟିକେ ଟିକେ ସାର କଥାମାନ କହିଦେଲି ଏତିକି ମନେ ରଖି ସେ ଅନୁସାରେ କାମ କରି । ଖାଲି ପୋଥି ପଢ଼ି ଗଲେ ତ ହେବ ନାହିଁ । ପୋଥିରେ ଯାହା ପଢ଼ିବ ସେ ଅନୁସାରେ କାମ ନ କଲେ ସେ ପଢ଼ାରୁ ଫଳ କଣ ? ଶୁଆ କଣ ପଢ଼ୁ ନାହିଁକି ? ସେହିପରି ପଢ଼ିଲେ କିଛି ଲାଭ ନାହିଁ । ଆଜି ଏତିକି ଥାଉ ।

---

## ପଞ୍ଚମ ପରିଚ୍ଛେଦ

ସ୍ତ୍ରୀ—ସେଦିନ ପୁଅକୁ ଚାଣକ୍ୟ ଶ୍ଳୋକ ବୋଲିବାକୁ କହୁଥିଲ, ସେଥିରେ କଅଣ ଅଛି ମ ?

ସ୍ୱାମୀ—ଚାଣକ୍ୟର ଗୋଟିଏ ଗୋଟିଏ ଶ୍ଳୋକ ଗୋଟିଏ ଗୋଟିଏ ମାଣିକ୍ୟ ପରି ମୂଲ୍ୟବାନ୍ । ସେ ଗୁଡ଼ିକ ମନେ ରଖି, ତା ଅନୁସାରେ କାର୍ଯ୍ୟ କଲେ କିଛି ବିପଦ ହୁଏ ନାହିଁ । ଏକା ଚାଣକ୍ୟ କାହିଁକି ଅନେକ ଉପଦେଶ ଅନେକ ଶାସ୍ତ୍ରରେ ଅଛି, ମାନି ଚଳିଲେ କିନା ହେବ ? ଖାଲି ଶୁଣିଲେ କଣ ହେବ ?

ସ୍ତ୍ରୀ—ଶୁଣିଲା ଉତ୍ତାରୁ କିନା 'ପାଳିବା ନ ପାଳିବା', କଥା ନ ଶୁଣିଲେ ଜାଣିବା କିପରି ? ପରେଶ କଥା ଶୁଣିଲେ ପାପ କାର୍ଯ୍ୟରେ ମନ ଯାଇପାରେ !

ସ୍ତ୍ରୀ—ଅଚ୍ଛା ଶୁଣ, ଚାଣକ୍ୟରେ ଅନେକ ଉପଦେଶ ଅଛି ।

୧ । ବିଦ୍ୟା ଓ ରାଜା ମଧ୍ୟରେ ବିଦ୍ୟା ବଡ଼ । ରାଜା ତା ରାଜ୍ୟରେ କେବଳ ପୂଜା ପାଏ, ବିଦ୍ୱାନ ଲୋକ ଜଗତରେ ପୂଜା ପାଏ । ସେ ଯେଉଁଠାକୁ ଯିବ, ସେଠାରେ ତାର ଆଦର ।

୨ । ଚନ୍ଦ୍ର ନକ୍ଷତ୍ରମାନଙ୍କ ମଧ୍ୟରେ ଅଛି ବୋଲି ଶୋଭାପାଏ । ପତି ଥିଲେ ସ୍ତ୍ରୀ ଶୋଭାପାଏ, ପ୍ରଜା ଥିଲେ ରାଜା ଶୋଭାପାଏ, ମାତ୍ର ବିଦ୍ୟା ସବୁ ସ୍ଥାନରେ ଶୋଭା ପାଏ ।

୩ । ପାଟି ନ ଫିଟାଇ କଥା ନ କହିବା ଯାକେ ମୂର୍ଖ ଲୋକ ଦୂରରୁ ସୁନ୍ଦର ଦିଶେ ।

୪ । ଅକୁଳୀନ ଲୋକ ପଣ୍ଡିତ ହେଲେ ସମସ୍ତେ ତାକୁ ପୂଜା କରନ୍ତି, ମାତ୍ର ସାଆନ୍ତ ଘର ପୁଅ ମୂର୍ଖ ହେଲେ ତାକୁ ସମସ୍ତେ ଦୂର୍ ଦୂର୍ କରନ୍ତି ।

୫ । ବଡ଼ଲୋକ ଘରେ ଜନ୍ମ ଥିବ, ସୁନ୍ଦର ରୂପଟିଏ ଥିବ, ଖୁବ ସୁନ୍ଦର ବେଶଟିଏ ହୋଇଥିବ, ଗନ୍ଧ ଆଗଣ୍ଡି ଲଗାଇଥିବ, ପାଟମଳୁଗା ପିନ୍ଧିଥିବ, କିନ୍ତୁ ପେଟରେ ବିଦ୍ୟା ନ ଥିଲେ ପଳାଶଫୁଲପରି ଦେଖା ସୁନ୍ଦର, ବାସନା ଟିକିଏ ନାହିଁ ।

୬ । ଯେଉଁ ମା ବାପ ପିଲାକୁ ପାଠ ପଢ଼ାନ୍ତି ନାହିଁ, ସେମାନେ ପିଲାର ଶତ୍ରୁ । ମୂର୍ଖ ପୁଅ ସଭାରେ ବସିଥିଲେ ହଂସ ମଧ୍ୟରେ ବଗପରି ଦିଶେ । ମା ଅଣ୍ଟୁ ଭୁଣ୍ଡ଼ ହେବା ଭଲ, ମୂର୍ଖ ପୁଅ ଜନ୍ମ କରିବ ନାହିଁ ।

୭ । ପୁଅକୁ ପାଞ୍ଚବର୍ଷଯାଏ ଲାଳନ ପାଳନ କରିବ, ଦଶବର୍ଷ ପର୍ଯ୍ୟନ୍ତ ଅକଟ କରିବ, ଷୋଳବର୍ଷ ପରେ ମିତ୍ର ଭାବରେ ବ୍ୟବହାର କରିବ । ଗେଲବସର କଲେ ବଡ଼ ମନ୍ଦ, ଅକଟରେ ରଖିବା ଭଲ ।

୮ । ବଂଶରେ ଗୋଟିଏ ଯୋଗ୍ୟ ପୁତ୍ର ଥିଲେ ବଂଶ ଉଜ୍ଜ୍ୱଳ ହୁଏ । ଗୋଟିଏ ଅଯୋଗ୍ୟ ପୁତ୍ର ଥିଲେ ବଂଶ ନାଶ କରେ । ବଗିଚାରେ ଗୋଟିଏ ବାସନାଫୁଲ ଥିଲେ ବଗିଚାଯାକ ମହକି ଯାଏ । ଗୋଟିଏ ଗଛ ଗର୍ଭରେ ଅଗ୍ନି ଥିଲେ ବଗିଚାଯାକ ପୋଡ଼ିଯାଏ ।

୯ । ହାତୀଠାରୁ ହଜାର ହାତ, ଘୋଡ଼ାଠାରୁ ଶହେ ହାତ, ଶିଙ୍ଗଠାରୁ ଦଶ ହାତ ଦୂରରେ ରହିବ । ଦୁର୍ଜ୍ଜନ ଲୋକର ସଙ୍ଗ ଛାଡ଼ିବ ।

୧୦ । ଦୁଷ୍ଟଲୋକ ପଣ୍ଡିତ ହେଲେ ମଧ୍ୟ ତା ସଙ୍ଗେ ସଙ୍ଗ ହେବ ନାହିଁ । ସାପଙ୍କାରେ ମଣି ଅଛି ବୋଲି କଣ ସେ ଶ୍ରେଷ୍ଠ ମାରିବ ନାହିଁ ।

୧୧ । ସାପ ଓ ଦୁଷ୍ଟଲୋକ ମଧ୍ୟରେ ସାପ ଭଲ । ସାପ ମନ୍ତ୍ରଦ୍ୱାରା ବଶ ହୁଏ, ଦୁଷ୍ଟଲୋକ ପାଇଁ ଔଷଧ ନାହିଁ ।

୧୨ । "ଦରହସା ମାଗୁରକଣା ଛାତରେ ନ ଥାଏ ବାଳ, ଏପରି ଲୋକଙ୍କୁ ପରତେ ନ ଯିବ ଜୀଇଥିବ ଯେତେକାଳ ।"

୧୩ । ପଛରେ ଗୋଡ଼ି କାଟୁଥିବ, ମୁହଁରେ ମହୁ ମାଡୁଥିବ, ଏପରି ଲୋକଙ୍କୁ ପାଖରେ ବସାଇବ ନାହିଁ ।

୧୪ । କେହି କାହାର ଶତ୍ରୁ ବା ମିତ୍ର ହୋଇ ଜନ୍ମି ନ ଥାଏ । ବ୍ୟବହାର ଦୋଷ ଗୁଣରୁ ଲୋକ ଶତ୍ରୁ ଓ ମିତ୍ର ଜଣାଯାଏ ।

୧୫ । ନଈ, ନଖୀ ( ଯେଉଁମାନଙ୍କର ନଖଅଛି ), ଶୃଙ୍ଗୀ ( ଯେଉଁ-ମାନଙ୍କର ଶିଙ୍ଗ ଅଛି ), ଯାହା ହାତରେ ଅସ୍ତ୍ର ଶସ୍ତ୍ର ଥିବ, ସ୍ତ୍ରୀ ଓ ରାଜପୁରୁଷମାନଙ୍କୁ ବିଶ୍ୱାସ କରିବ ନାହିଁ ।

୧୬ । ବିଶ୍ୱାସୀ ଲୋକ ଥରେ ଅବିଶ୍ୱାସୀ ହେଲେ, ତାକୁ ପୁନର୍ବାର ବିଶ୍ୱାସ କରିବ ନାହିଁ ।

୧୭ । ପୁରୁଣା ଗୁଡ଼ଭଲ, ପୁରୁଣା ଗୃହର ଭଲ ।

୧୮ । ଗୃହର ଥରେ ଅବିଶ୍ୱାସୀ ହେଲେ ତାକୁ ଆଉ ରଖିବ ନାହିଁ ।

୧୯ । ଗୃହଚ୍ଛିଦ୍ର, ଅସୂଷ, ଧନ ପ୍ରଭୃତି କଥା ଦାଣ୍ଡରେ ପ୍ରକାଶ କରିବ ନାହିଁ ।

୨୦ । କାନରେ କୃଷ୍ଣ କଥା ଶୁଣିଲେ କାନ ପବିତ୍ର ହୁଏ, କୁଣ୍ଡଳ ଲଗାଇଲେ ହୁଏ ନାହିଁ । ହାତରେ କଙ୍କଣ ନ ଲଗାଇ, ହାତରେ ଦାନ କଲେ ହାତ ପବିତ୍ର ହୁଏ । ହୃଦୟରେ ଦୟା ଥିଲେ ହୃଦୟ ପବିତ୍ର ହୁଏ, ଚନ୍ଦନ ବୋଳିହେଲେ ହୁଏ ନାହିଁ ।

୨୧ । ମହାତ୍ମା କିଏ ? ବିପଦବେଳେ ଯେ କାତର ନ ହୋଇ ପର୍ବତ ପରି ଅଚଳ ଅଟଳ ଥାଏ, ସମ୍ପତ୍ତି-ଶକ୍ତି ଥିବାବେଳେ ଅପରାଧୀଙ୍କୁ କ୍ଷମାଦିଏ, ସଭାରେ ବକ୍ତୃତା ଦେଇପାରେ, ଯୁଦ୍ଧରେ ବୀରତ୍ୱ ଦେଖାଇ ପାରେ, ଯାହାର ଯଶ ଲୋକେ ଗାଇ ବୁଲନ୍ତି ଏବଂ ବିଦ୍ୟାଲୋଚନା କରିବାରେ ଯେ ସର୍ବଦା ଆସକ୍ତ, ସେହି କେବଳ ପ୍ରକୃତ ମହାତ୍ମା ।

୨୨ । ଯାହାଙ୍କଠାରେ ଏ ଗୁଣମାନ ଦେଖିବ ତାଙ୍କୁ ନମସ୍କାର କରିବ:— ୧ । ଯେଉଁମାନେ ସର୍ବଦା ସାଧୁ ସଙ୍ଗରେ ଥାନ୍ତି । ୨ । ପରର ଗୁଣ ଦେଖି ଯେ ଆଦର କରେ । ୩ । ଗୁରୁଜନଙ୍କ ପାଖେ ଯେ ନମ୍ର । ୪ । ବିଦ୍ୟା ପଠନରେ ଯେ ଅସକ୍ତ । ୫ । ଆପଣା ସ୍ତ୍ରୀଠାରେ ଯାହାର ପ୍ରୀତି । ୬ । ଲୋକ-ଅପବାଦକୁ ଯେ ଡରେ । ୭ । ଯାହାର ଦେବତାଠାରେ ଭକ୍ତି । ୮ । ଅତ୍ମ ଦମନ କରିବାରେ ଯେ ବୀର । ୯ । ଯେ ଖଳଜନ ସଙ୍ଗ ନ କରେ ।

୨୩ । ଲୋକେ ନିନ୍ଦା କରନ୍ତୁ ବା ସ୍ତୁତି କରନ୍ତୁ, ଧନ ସମ୍ପତ୍ତି ଯାଉ ବା ରହୁ, ଅଜି ମୃତ୍ୟୁ ହେଉ ବା ଯୁଗାନ୍ତରେ ହେଉ ପଣ୍ଡିତ ଲୋକ ନ୍ୟାୟ ପଥରୁ ଟଳନ୍ତି ନାହିଁ ।

୨୪ । ମୂର୍ଖଙ୍କୁ ବଳ ଅଛି, ପଣ୍ଡିତଙ୍କୁ ବଳ ଅଛି, କିନ୍ତୁ ଦରିଦ୍ର ଲୋକଙ୍କୁ ବଳ ନାହିଁ ।

୨୫ । ବିଦ୍ୟାହୀନ ଲୋକ ପଶୁ, ରାଜ୍ୟରେ ବିଦ୍ୟା ପୂଜାପାଏ, ଧନ ପୂଜା ପାଏ ନାହିଁ । ଯାହାଠାରେ ବିଦ୍ୟା ଅଛି ସେ ସୁନ୍ଦର, ତାର ସମସ୍ତ ଧନ ଗୁପ୍ତଭାବରେ ଥାଏ । ସେ ଭୋଗୀ, ସେ ଯଶସ୍ୱୀ, ସେ ସୁଖୀ । ବିଦ୍ୟା ଗୁରୁମାନଙ୍କର ଗୁରୁ । ବିଦ୍ୟା ବିଦେଶରେ ଆପଣାର ପରମ ବନ୍ଧୁ । ବିଦ୍ୟା ଶ୍ରେଷ୍ଠ ଦେବତା ।

୨୬ । ପରିବର୍ତ୍ତନଶୀଳ ସଂସାରରେ ନ ମରୁଛି କିଏ ? ଯାହା ଜନ୍ମ ଦ୍ୱାରା ବଂଶର ଉନ୍ନତ ହୁଏ, ତା ଜନ୍ମ ପ୍ରକୃତ ଜନ୍ମ ବୋଲି ଧରାଯିବ ।

୨୭ । ଧନ ସମ୍ପତ୍ତିର ତିନୋଟି ଗତି—ଦାନ, ଭୋଗ ଓ ନାଶ । ଯେ ନ ଦିଏ ବା ଭୋଗ ନ କରେ ତା ଧନ ନାଶ ହୁଏ ।

୨୮ । ପରସ୍ତ୍ରୀଙ୍କି ମାତାପରି ମାନିବ, ପରଧନକୁ ମାଟି ପରି ମଣିବ, ସକଳ ପ୍ରାଣୀଙ୍କି ଆପଣାର ବୋଲି ଜାଣିବ ।

୨୯ । ସୁଖୀ କିଏ ?—ଯାହାର ସ୍ତ୍ରୀ ମଧୁର କଥା କହେ ଏବଂ କଳ-ଭାଣ୍ଡୋଇ ନହେ ।

୩୦ । ସର୍ବଦା ସତ୍ୟ କହିବ, ପରଧନକୁ ଲୋଭ କରିବ ନାହିଁ ।।

୩୧ । ଯେ ସ୍ତ୍ରୀମାନଙ୍କ କଟାକ୍ଷରେ ଭୁଲି ନ ଯାଏ, କ୍ରୋଧ ବା ରାଗ ଯାହା ହୃଦୟକୁ ଛୁଇଁ ନାହିଁ, ଅଚଳାଚଳ ଧନସମ୍ପତ୍ତି ଥାଇ ଯେ ଲୋଭୀ ନହେ ସେ ଲୋକ ତ୍ରିଲୋକକୁ ଜିଣେ । ଏପରି ଅସଂଖ୍ୟ ଉପଦେଶ ଅଛି । ଏତକ ବୁଝି ଆଗ କାମ କର ।

ସ୍ତ୍ରୀ—ଚାଣକ୍ୟ ବହିରେ ଏତେ କଥା ଅଛି ।

ସ୍ୱା—ଏଗୁଡ଼ିକ ତ ସାଧାରଣ କଥା, ସମସ୍ତେ ଜାଣୁଛନ୍ତି, ଶୁଣୁଛନ୍ତି, କିନ୍ତୁ କାମବେଳେ ଓଲଟା । ଯେତେ ପୁରାଣ ପଢ଼ ସବୁଥିରେ ନୀତି ଉପଦେଶ ଅଛି । ଶୁଣିଲେ କଣ ହେବ, ଏ କାନେ ପଶି ସେ କାନେ ଯିବ । ପଶୁପକ୍ଷୀମାନଙ୍କଠାରୁ ଅନେକ କଥା ଶିଖିବାର ଅଛି । ଅବଧୂତ ଚବିଶ ଗୁରୁ କରିଥିଲେ । ଗୃଣକ୍ୟ ସେହିପରି କହିଛନ୍ତି—କାକପରି ସ୍ନାନ କରିବ, କୁକୁର ପରି ଚେତାରେ ଶୋଇବ, ବକ ପରି ଧ୍ୟାନ କରିବ; କୁକୁଡ଼ା ପରି ରଣ କରିବ—ଇତ୍ୟାଦି ।

ସ୍ତ୍ରୀ—ବକ ପରି କଣ ଧ୍ୟାନ କରିବ ?

ସ୍ୱା—ଅହେ, ଏବେକାଳ ପିଲାଏ ପାଠ ପଢ଼ୁଛନ୍ତି ଯେ ହାତରେ ବହିଟା ଅଛି, ମନଟା ଗୁଲବେ ବାଡ଼ିରେ ଦାଣ୍ଡରେ ! ବହିପଢ଼ା ହେଉଛି, ମନ ଅଜ ପାଠରେ ନାହିଁ । ସେ ମନେ ପାଞ୍ଚ ଛନ୍ତି ଭଲ କୁରୁତା କୋଟା ପୋଷାକ ହୁଅନ୍ତା । ଯେବେ ଦେଖିଲେ କିଏ ଗୁରୁଜନ ଆସିଗଲେ, ତେବେ ବଡ଼ ପାଟିରେ ଦି’କଥା ପଢ଼ି ଦେଲେ । ଏଥିରେ କଣ ସାତ ଜନ୍ମରେ ପାଠ ହେବ ? ପାଠପଢ଼ିଲାବେଳେ ବକପରି ଧ୍ୟାନ ଲଗାଇ ପଢ଼ିବ । ବକ ଯେତେବେଳେ ମାଛକୁ ଜଗି ବସିଥାଏ ତେତେବେଳେ ତା ମନ, ଜ୍ଞାନ, ଚୈତନ୍ୟ ସବୁ ମାଛ ଉପରେ, କାଳେ ହଲ ଚଲ ହେଲେ ମାଛ ହୁରୁଡ଼ି ପଳାଇ ଯିବ । ସେହିପରି ଏକ ଧ୍ୟାନରେ ନ ପଢ଼ିଲେ ପାଠ ହେବ କିପରି ? ପାଠ ପଢ଼ିବା ବେଳେ କାକ ପରି ସ୍ନାନ କରିବ, ଅର୍ଥାତ୍ ଚଞ୍ଚଳ ସ୍ନାନ ସାରିବ, କିନ୍ତୁ ବାବୁମାନଙ୍କ ସ୍ନାନ ଦେଖୁଛ ତ ! ଠିଆ ଠିଆ ହୋଇ ପାଣି ଅଣି ସ୍ନାନ ହରୁ ହରୁ ହେବରେ । ପଢ଼ିବା ପିଲାର କୁକୁରପରି ନିଦ୍ରା ହେବା ଆବଶ୍ୟକ । ଦେଖିବଟି, ଯେତେ ଗାଢ଼ରେ

ଦେଖ କୁକୁରବେଳା, ଖୁଡ଼ୁକନା ହେଲେ ଭୁକାଲ୍ । ବାବୁଙ୍କୁ ଦେଖ ହଞ୍ଚିବେଳୁ ଶୁଅ । ଖାଇବାକୁ ଜାଣେ ପହରେ ନ ବଟିଲେ ଜଟିବେ ନାହିଁ, ପୁଣି ଦନ ପହରେ ନ ହେଲେ ନିଦ ଭାଙ୍ଗିବ ନାହିଁ, ଜଣେ ନ ଡାକଲେ ଉଠିବେ ନାହିଁ । ପାଠ ପଢ଼ିବାକୁ ବେଳ ନାହିଁ । ପାଠ ପଢ଼ାଣ୍ଟା ବାଳେ କଥା ହେଲେ ପାଠ ହେବ କିପରି ? ଏପରି ପିଲାଙ୍କର ଯଦି ପାଠ ହେବ ନର୍ଗ ହେବ କିଏ ?

ସ୍ତ୍ରୀ—ଦେଖୁନ୍ଥ ତ ସେହି ଢଙ୍ଗ, ମୁଁ କଣ କହୁନାହିଁ ଏକାଳ ପିଲାଙ୍କୁ କହିଲେ ବାର ପ୍ରକାର ଜବାବ ଦେଉଛନ୍ତି ।

ସ୍ବାମୀ—ମୁଁ ତ କହି କହି ଥକ୍କଲିଣି । ଚେଷ୍ଟା କର, କହ ତାଙ୍କ କର୍ମରେ ଯାହା ଥିବ । ଅପେ ପିନା ଜନ୍ମ ଦେଇ ଆଇଁ, କର୍ମତ ଦେଇ ନ ଆଇଁ । ସେ ତାଙ୍କ ଅର୍ଜିଲା କର୍ମ ଭୋଗ କରିବେ । ଏତେବେଳେ ଶୁଣୁ ନାହାନ୍ତି, ପଛକୁ କାନ୍ଦିବେ । ଦେଖୁ ନାହିଁ ଗରିବ ପିଲାଗୁଡ଼ିକ ଅଠଅଣା ଗୃହଅଣା ମାଗି ଯାଇ, ଓଳିଏ ଖାଇ ଓଳିଏ ନ ଖାଇ ପଢ଼ୁଛନ୍ତି, ସେମାନେ ଅମ ପିଲାଙ୍କ ମୁଣ୍ଡ ଉପରେ ବସୁଛନ୍ତି, ତେବେ କଣ ଏମାନଙ୍କର ଛଳ ଅଛି ନା ଲାଜ ଅଛି ? ଏତେ ବହି ତ ପଢ଼ୁଛନ୍ତି, ଆଚରଣ ଓଲଟା; ଅଜି ଏତିକି ।

---

## ଷଷ୍ଠ ପରିଚ୍ଛେଦ

ସ୍ବାମୀ—କି ବହି ପଢ଼ୁଛ କି ?

ସ୍ତ୍ରୀ—ଉତ୍ତର ଗୃହକାଣ୍ଡ କଳା !

ସ୍ବାମୀ—ବେଶ୍ ପଢ଼ ପଢ଼, ଏ ଭଲ ବହି ତ ଅଗେ ପଢ଼ିବା ଆବଶ୍ୟକ । ଏ ଭଲ ବହି ନ ପଢ଼ିଲେ ଦେଶୋଦ୍ଧାର ହେବ କିପରି ? ଅମ

ଦେଶ ଲେଖକମାନେ ବାଛି ବାଛି ବହି ଲେଖୁଛନ୍ତି, ଦିଅର ଭାଉଜ କଳି, ଶାଶୁବୋହୂ କଳି, ବାପ ମା'ଙ୍କ—ଇତ୍ୟାଦି ।

ସ୍ତ୍ରୀ—ଏ ବହି ପଢ଼ିଲେ କିଛି ଦୋଷ ଅଛି ?

ସ୍ୱା—ନାହିଁ ହେ, ସକାଳୁ ପୂଜାବେଳେ ଏ ବହି ପଢ଼ିଲେ ମହାପୁଣ୍ୟ ହେବ । ଏଥିରୁ ଅନେକ ଭଲଗୁଣ ଶିଖିବାକୁ ହେବ ।

ସ୍ତ୍ରୀ—ଏ ତ ଗୋଟାଏ ଠସକ ବହି, ସତେ କଣ ଏପରି କିଏ କରିବ ?

ସ୍ୱା—ଅହେ, କଳିଯୁଗ ଝିଅପୁଅମାନେ ଭୂଇଁରେ ପଡ଼ୁ ପଡ଼ୁ ଗଲା, ତାଙ୍କୁ କଳି ଶିଖାଇବ କଣ ? ପୋଥିରେ କଳି କଥା ଲେଖା ହେଲଣି, ଏଣିକି କହିବ ଶାସ୍ତ୍ରରେ ତ ଲେଖା ଅଛି । ଶାଶୁ ସଙ୍ଗେ, ଦିଅର ସଙ୍ଗେ କଳି କଲେ ଦୋଷ କଣ ? ଦିଅର ଭାଉଜ ମଧ୍ୟରେ ଥଟ୍ଟା ତାମସା ତ ଚାଲି ଆସୁଛି, ଦୋଷ କଣ ?

ସ୍ତ୍ରୀ—ଦେଶରେ ତ ଏପରି ଚଳୁଛି, ଏ କଣ ଅଜା ନୂଆ କଥା ?

ସ୍ୱା—ଏ କଣ ଗୋଟାଏ ଅଇନ ହୋଇଗଲା ?

ସ୍ତ୍ରୀ—ଅମ ଦେଶରେ ଚଳୁଛି ଦେଢ଼ଶୁର ଭାଇବୋହୂଙ୍କୁ କଥା କହିବ ନାହିଁ । ଦିଅର ତ ସାନ, ସେ ଥଟ୍ଟା ତାମସା କଲେ ଅଜା କଣ ?

ସ୍ୱା—ସାନ କଣ ବଡ଼କୁ ଥଟ୍ଟା କରିବା ବିଧି ? ଏ କଥା ତ କୌଣସି ଯୁଗରେ ଶୁଣା ନ ଥିଲା ! ବାପଠାରୁ ପୁଅ ସାନ, ମା'ଠାରୁ ଝିଅ ସାନ, ତେବେ ଏମାନେ ବାପ ମା'ଙ୍କୁ ଥଟ୍ଟା କରନ୍ତୁ !

ସ୍ତ୍ରୀ—ମୁଁ କଣ କହିଲି ଖାଲି ଯେ ସାନ, ସେ ବଡ଼କୁ ଥଟ୍ଟା କରିବ ? କେବଳ ଦିଅର ଭାଉଜ ମଧ୍ୟରେ ଏପରି ଚାଲି ଆସୁଛି ବୋଲି କହିଲି ନା !

ସ୍ୱା—ଏପରି ହିସାବରେ କହୁଛ, ମୁଁ ଜାଣି ନ ଥିଲି । ଏ ହିସାବର ଅର୍ଥ କଣ ?

ସ୍ତ୍ରୀ—ହିସାବ କିତାପ କଥା ମୁଁ ଜାଣେ ନାହିଁ, ଚଳି ଆସୁଛି ।

ସ୍ୱା—ଚଳିଆସୁଛି ବୋଲି ଯେବେ ସେଟା ଅବାଧ୍ୟ କଥା ହୁଏ, ତେବେ ବନ୍ଦ ହେବା ଉଚିତ । ବଡ଼ଭାଇଙ୍କୁ ତ ସାନଭାଇ ଅଠା କରେ ନାହିଁ ? ବଡ଼ଭାଇଙ୍କ ଅଠା କଲେ ଯେବେ ଅବାଧ୍ୟ ହେଲା ତାର ସ୍ତ୍ରୀଙ୍କ ଅଠା କରିବାଟା ବାଧ୍ୟ ହେଲା କିପରି ? ଏ କଥା ଯେବେ ଆମ ବେଦ ପୁରାଣରେ ନ ଥିଲା, ତେବେ ଚଳିବ କାହିଁକି ? ମାଆକୁ ପୁଅ ଅଠା କରିବା ଯାହା, ଭାଉଜଙ୍କୁ ଦିଅର ଅଠା କରିବା ତାହା ।

ସ୍ତ୍ରୀ—କିପରି ? ମା ପୁଅର ଯେ ସମ୍ପର୍କ, ଦିଅର ଭାଉଜର କଣ ସେହି ସମ୍ପର୍କ ?

ସ୍ୱା—ଶାସ୍ତ୍ର କହୁଛି, "ଜ୍ୟେଷ୍ଠ ଭ୍ରାତା ସମୋପିତା ।" ଅର୍ଥାତ୍ ବଡ଼ଭାଇ ସାନଭାଇର ପିତାପରି । ବଡ଼ଭାଇ ଯେବେ ପିତା ସମାନ, ବଡ଼ ଭାଉଜ ମଧ୍ୟ ମାତା ସମାନ । ତେବେ ସେ ତ ମାନ୍ୟର ପାତ୍ର, ଅଠା ଚଳିବ କିପରି ? ଭାଇଙ୍କ ଅଠା କରିବା ଅବାଧ୍ୟ ହେଲେ ଭାଇର ସ୍ତ୍ରୀଙ୍କ ଅଠା କରିବା ବାଧ୍ୟ ହେବ କିପରି ? ଏ କଥା ତ ସାଧାରଣ ବୁଦ୍ଧିକି ପସନ୍ଦ ଦିଶୁ ନାହିଁ ।

ସ୍ତ୍ରୀ—ହଁ, ଏ ହିସାବରେ ତ ଅବାଧ୍ୟ । ତେବେ ଆଗେ କଣ ଏପରି ନ ଥିଲା ? ଚଳିଲା କିପରି ?

ସ୍ୱା—ଆଗେ ତ ଏପରି କଥା ଶୁଣା ନ ଥିଲା । ଲକ୍ଷ୍ମଣ ସୀତାଙ୍କର ଦିଅର । ରାମ ଲକ୍ଷ୍ମଣ ସୀତା ତିନିଜଣ ବନକୁ ଗଲେ, ୧୨ ବର୍ଷ କାଳ ବନରେ ରହିଲେ; କିନ୍ତୁ ବାର ବର୍ଷ ମଧ୍ୟରେ

ଲକ୍ଷ୍ମଣ ସୀତାଙ୍କ ପାଦ ଛଡ଼ା ଅନ୍ୟ କିଛି ଦେଖିପାରି ନ ଥିଲେ—ଏହା ପରିହାସରେ କଥାବାର୍ତ୍ତା ହେବା ତ ବହୁଦୂର କଥା । ଲକ୍ଷ୍ମଣ ସୀତାଙ୍କୁ ମାତାପରି ମାନ୍ୟ ଓ ଭକ୍ତି କରୁଥିଲେ । ଏମାନେ ଆଦର୍ଶ ସ୍ତ୍ରୀ ପୁରୁଷ ଥିଲେ । ଆଜି ଏମାନେ ସେଥିହେତୁ ଦେବତା ହୋଇ ପୂଜା ପାଉଛନ୍ତି । ସୀତା ରାମ କହି ଲୋକେ ଆପଣା ଜୀବନକୁ ଧନ୍ୟ ମନେ କରୁଛନ୍ତି । ସୀତା ଆଦର୍ଶ ରମଣୀ, ସ୍ତ୍ରୀଜାତିର ଆଦର୍ଶସ୍ୱରୂପ, ପ୍ରତ୍ୟେକ ସ୍ତ୍ରୀ ଲୋକର ସୀତାଙ୍କପରି ଚରିତ୍ରବାନ ହେବାକୁ ଚେଷ୍ଟା କରିବା ଉଚିତ । ରାମଚନ୍ଦ୍ରଙ୍କପରି ଆଦର୍ଶ ପୁରୁଷ ପୃଥିବୀରେ ଆଉ ଦ୍ୱିତୀୟ ନାହିଁ । ପୁରୁଷ ଜାତିର ସେ ଆଦର୍ଶ ପୁରୁଷ ।

ସ୍ତ୍ରୀ—ରାମଚନ୍ଦ୍ରଙ୍କୁ ତ ଏତେ ପ୍ରଶଂସା କରୁଛ, ଗର୍ଭିଣୀ ସ୍ତ୍ରୀକି ଅନୋଅନୋ ବନସ୍ତକୁ ପଠାଇଦେଲେ କିପରି ? ଏହା କଣ ତାଙ୍କର ଭଲଗୁଣ ହେଲା ? ଅତି ଚଣ୍ଡାଳ ତ ଏ କଥା କରିବ ନାହିଁ ?

ସ୍ୱା—ଗୁଣ ନୁହେ କଣ ଦୋଷ ? ରାମଚନ୍ଦ୍ର କେବେ ହେଲେ ଦୋଷଯୁକ୍ତ କାର୍ଯ୍ୟ କରି ନ ଥିଲେ । ରାମଚନ୍ଦ୍ର ଜଣେ ଆଦର୍ଶ ରଜା ଥିଲେ । ପ୍ରଜାମାନେ ଯେପରି କୌଣସି କଥାରେ ଅସନ୍ତୁଷ୍ଟ ନ ହେବେ ତହିଁ ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିଲା । ତାଙ୍କର ଲୋକାପବାଦକୁ ବିଶେଷ ଭୟ ଥିଲା । ସେ ଗୁପ୍ତଚର ପଠାଇ ରାଜ୍ୟର ହାଲଚାଲ ବୁଝୁଥିଲେ, ତାଙ୍କ ଦୋଷ ବା ଗୁଣ ବିଷୟରେ ପ୍ରଜାମାନଙ୍କ ମତ କଣ ବୁଝୁଥିଲେ । ଦୂତ ଆସି କହିଲା, ସୀତା ରାବଣପୁରରେ ୧୪ ବର୍ଷ ଥିବା କଥାଟାକୁ ଲୋକେ ଉପଲକ୍ଷ୍ୟ କରି କହୁଛନ୍ତି । ଧୋବଣୀ ବାପଘର ଯାଇଥିଲା, ରାତିରେ ସେଠାରେ ରହିଗଲା । ପର ଦିନ ଆସିଲାରୁ

ଧୋବା ତାଙ୍କୁ ଗାଳିଦେଲା । ସେ କହିଲା, ସୀତା ଚଉଦ ବର୍ଷ ରାବଣପୁରରେ ରହିଲେ, ରାମଚନ୍ଦ୍ର ତା ସହି ତାଙ୍କୁ ଘରକୁ ଆଣିଲେ ମୁଁ ଏଲିଏ ରହିଗଲି କି କଣ ହେଲା ? ରାମଚନ୍ଦ୍ର ଏ କଥା ଶୁଣି ମର୍ମାହତ ହେଲେ ଏବଂ ସ୍ଥିର କଲେ ଯଦି ସୀତାଙ୍କ ଲାଗି ସେ ଏପରି ଶୁଣିଲେ; ତେବେ ସୀତାଙ୍କୁ ତ୍ୟାଗ କରିବାକୁ ହେବ ।

ସ୍ତ୍ରୀ—ସୀତା ପରା ଅଗ୍ନି ପରୀକ୍ଷା କରି ଯାଇଥିଲେ ? ସେ ଯେବେ ଅସତୀ ହୋଇଥାନ୍ତେ, ପୋଡ଼ି ଯାଇ ନ ଥାନ୍ତେ ? ରାମଚନ୍ଦ୍ରଙ୍କର ତେବେ ବି ସନ୍ଦେହ ଦୂର ହେଲା ନାହିଁ ? କାହାଁକି କଅଣ ଶୁଣି ଗର୍ଭବତୀ ସ୍ତ୍ରୀଙ୍କୁ ଘରୁ ବାହାର କରିଦେଲେ ? ପୁରୁଷ ଜାତି ବଡ଼ ନିଷ୍ଠୁର ?

ସ୍ୱାମୀ—ବାସ୍ତବିକ କଥାଟା ଶୁଣିଲେ ସ୍ତ୍ରୀଜାତି ମନରେ ବଡ଼ କଷ୍ଟ ହେବ, ସେମାନେ ରାମଚନ୍ଦ୍ରଙ୍କୁ ନିନ୍ଦା ନ କରି ଛାଡ଼ିବେ ନାହିଁ । କଥାଟା ଯେପରି ହେଲା ତ ଶୁଣିଥିବ । କୁଳସ୍ତ୍ରୀ ରାତିରେ ପର ଗୃହରେ ରହିବାର ବିଧି ନାହିଁ । ଧୋବଣୀ ବାପଘରକୁ ଯାଇ ସେ ରାତିଶୁଆ ରହିଲା । ଧୋବା କହିଲା, ରାତିରେ ଯେ ପର ଘରେ ରହିଲା ସେ ଅସତୀ । ଧୋବଣୀ ଯାହା କହିଲା, ଆଗରେ କହିଛି । ରାମଚନ୍ଦ୍ରଙ୍କ କାନକୁ ଏ କଥା ଆସିଲା । ରାମଚନ୍ଦ୍ରଙ୍କର ସୀତାଙ୍କ ପ୍ରତି ତିଳେ ମାତ୍ର ଅବିଶ୍ୱାସ ନ ଥିଲା । କିନ୍ତୁ କଣ କରିବେ, ଲୋକାପବାଦ ଦୁର୍ନିବାର । ଅଗ୍ନି ପରୀକ୍ଷା ହେଲା, ତଥାପି ଲୋକେ ସନ୍ତୁଷ୍ଟ ହେଲେ ନାହିଁ, ସୀତାଙ୍କ ଉଦାହରଣ ଦେଲେ । ରାଜା ସମାଜର କର୍ଣ୍ଣଧାର ! ରାଜା ଯାହା କରିବେ ପ୍ରଜା ତାହା କରିବେ । ରାଜବଂଶରେ କଳଙ୍କ ରଟନା ହେଲେ ତ ବଡ଼ ଅସୁନ୍ଦର

କଥା । ସୀତା ଅତି ଆଦର୍ଶ ନାରୀ ହେଲେ କ'ଣ ହେବ ? ପ୍ରଜାପାଳନ ରାଜାର ପ୍ରଧାନ ଧର୍ମ । ରାଜ୍ୟପାପ ରାଜା ମୁଣ୍ଡରେ ବୋଲି କଥା ଅଛି । ସୀତାଙ୍କ ଉଦାହରଣ ଦେଇ ଇତର ନାରୀମାନେ ଯେବେ କୌଣସି ମନ୍ଦ କାର୍ଯ୍ୟ କରନ୍ତି ସେ ପାପ କାହାକୁ ଲାଗିବ । ଅବଶ୍ୟ ରାଜାଙ୍କୁ ଲାଗିବ । ସୁତରାଂ ସୀତାଙ୍କୁ ଗୃହରେ ରଖିଲେ ମଙ୍ଗଳ ହେବ ନାହିଁ । ରାମଚନ୍ଦ୍ରଙ୍କର ଏତଦ୍ୱାରା ବହୁତ କ୍ଷତି ହୋଇପାରେ, ତଥାପି ରାମଚନ୍ଦ୍ର ନିଜ ରାଜଧର୍ମ ରକ୍ଷା କରିବାପାଇଁ ସୀତାଙ୍କୁ ଅକ୍ଳେଶରେ ଛାଡ଼ିବାକୁ ଦୃଢ଼ପ୍ରତିଜ୍ଞ ହେଲେ ।

ସ୍ତ୍ରୀ—ଧୋବଣୀ ସ୍ୱାମୀକି ଡର କଥାଛଳରେ ମନେ କରୁଥିଲା, ଏଥିପାଇଁ ସୀତାଙ୍କ ପ୍ରତି ଏଡ଼େ କଠୋର ଦଣ୍ଡ ?

ସ୍ୱା—ଧୋବଣୀ ଯେ ଉଦ୍ଦେଶ୍ୟରେ କହୁ, କଥାଟା କ୍ରମେ ପ୍ରଚାର ହେବ । କ୍ରମେ କେତେ ସ୍ତ୍ରୀ ଏହି ଦୃଷ୍ଟାନ୍ତ ଦେଖାଇ ନିଜ ଇଚ୍ଛାନୁସାରେ ଯେତେଦିନ ରହିବେ; ଯେଉଁଠି ରହିବେ । ସାଧାରଣ ଲୋକେ ତ ଭିତର କଥା ବୁଝିବେ ନାହିଁ । ରଜାଘରେ ଏପରି ହେଲା ତ ଆମେ ନ କରିବା କାହିଁ ବୋଲି ଧରି ବସିବେ । ରାମ ଏ ସମସ୍ତ କଥା ଭାବି ସୀତାଙ୍କୁ ତ୍ୟାଗ କଲେ ।

ସ୍ତ୍ରୀ—ରାମଚନ୍ଦ୍ରଙ୍କୁ କିଏ କଣ ବାଧ୍ୟ କରୁଥିଲା ? ସେ ତ ନାଇ ନ ଦେଖି ଲଙ୍ଗଳା ହେଲେ ।

ସ୍ୱା—ନିଜ ମନ ବାଧ୍ୟ ନ ହେଲେ ସଂସାରରେ କେହି କାହାକୁ ବାଧ୍ୟ କରିପାରେ ? ଆପଣା ମନ ତ ଆପଣାର ଗୁରୁ । ରାଜାର ଧର୍ମ ବଡ଼ କଠିନ । ପ୍ରଜାରଞ୍ଜନ ରାଜାର ପ୍ରଥମ କର୍ତ୍ତବ୍ୟ । ସେ କର୍ତ୍ତବ୍ୟ ପାଳନ ଅଗରେ ଛାର ସ୍ତ୍ରୀଟା ପାଇଁ ବ୍ୟାକୁଳତା

ଅନାବଶ୍ୟକ । ଧର୍ମରକ୍ଷା ପାଇଁ ରାମଚନ୍ଦ୍ର ସର୍ବଦା ଖଡ୍‌ଗହସ୍ତ । ତାଙ୍କ ଆଗରେ ଅନୀତି ଯିବ ନାହିଁ । ପ୍ରଜାଙ୍କ ଇଚ୍ଛାନୁସାରେ ରାଜ୍ୟ ଶାସନ କରିବା ରାଜାର ପ୍ରଧାନ ଧର୍ମ । ରାମଚନ୍ଦ୍ର ଭାବିଲେ "ତକ୍ଷକ ପଛେ ମତେ ଖାଉ, ମୋ ବଂଶେ କଳଙ୍କ ନ ଥାଉ ॥"

ସ୍ତ୍ରୀ—ରାମଚନ୍ଦ୍ର ସୀତାଙ୍କୁ ତ୍ୟାଗ କଲାବେଳେ ସୀତା କିଛି କହିଲେ କି ?

ସ୍ୱା—ସୀତା ତ କଳିକାଳ ସ୍ତ୍ରୀ ନୁହନ୍ତି, ଅଣ୍ଟାରେ ଲୁଗା ଭିଡ଼ି ଅଣ୍ଟୁରେ ହାତ ଦେଇ ଲଢ଼ିପଡ଼ି କଳି କରିବେ ? ସୀତା ରାମଚନ୍ଦ୍ରଙ୍କ ପ୍ରତି ଲେଶମାତ୍ର ଅସନ୍ତୁଷ୍ଟ ହୋଇ ନାହାନ୍ତି । ସୀତା କହିଲେ " ଏ ମୋର କର୍ମଲେଖା ଏଥିରେ ସ୍ୱାମୀଙ୍କର କିଛି ଦୋଷ ନାହିଁ । ବଣ ମଝିରେ ଛାଡ଼ିବା ଦ୍ୱାରା ରାମଚନ୍ଦ୍ରଙ୍କର ସୁଖ୍ୟାତି ହେବ, ପ୍ରଜାମାନେ ସନ୍ତୁଷ୍ଟ ହୋଇ ଅନୀତି ପଥକୁ ନ ଯିବେ; ସୂର୍ଯ୍ୟବଂଶରେ କଳଙ୍କ ନ ଲାଗିବ ତେବେ ମୋର ଯିବାଦ୍ୱାରା ଆନନ୍ଦ; ଲେଶମାତ୍ର ଦୁଃଖ ନାହିଁ । ସ୍ୱାମୀ ମୋର ଦେବତା ତାଙ୍କ ଆଜ୍ଞା ମୋର ଶିରୋଧାର୍ଯ୍ୟ । ସେ ଯାହା ଆଦେଶ ଦେଇଛନ୍ତି; ତାହା ମୋର ମଙ୍ଗଳ ସକାଶେ କିଛିମାତ୍ର ଅମଙ୍ଗଳ ହେବ ନାହିଁ । ସୀତାଙ୍କ ଚରିତ୍ର ଏପରି ନ ଥିଲେ ସେ କଣ ଆଜି ପୂଜା ପାଉଥାନ୍ତେ ?

ସ୍ତ୍ରୀ—ସୀତାଙ୍କ ମନରେ କଣ କିଛି ଦୁଃଖ ହେଲା ନାହିଁ ?

ସ୍ୱା—ସାମାନ୍ୟ ସାଧାରଣ ବିଚ୍ଛେଦ କଷ୍ଟ ହୋଇ ନ ଥିବ ବୋଲି କିଏ କହିବ । ରାମଚନ୍ଦ୍ରଙ୍କ ମନରେ ମଧ୍ୟ କଷ୍ଟ ହୋଇଥିବ । ସୀତାଙ୍କ ପକ୍ଷରେ ସେ ରାଜାଘର ଝିଅ, ପୁଣି ରାଜାଘରର ବୋହୂ । ଅଳ୍ୟକରେ ବଢ଼ିଥିଲେ, ତାଙ୍କୁ ଲକ୍ଷ୍ମଣ ନେଇ ଅଗନାଅଗନା ବନସ୍ତରେ ଛାଡ଼ି ଦେଲେ, ବାଘ ସାପ ହେଲା

ହେଲା, ଅହା ବୋଲିବାକୁ କେହି ନାହିଁ । ଚତୁର୍ଦ୍ଦିଗ ଜଙ୍ଗଲ, ସେଠାରେ ସୀତାଙ୍କ ମନରେ ଅବଶ୍ୟ କଷ୍ଟ ହୋଇଥିବ । ସୀତା କାନ୍ଦିଲେ, ମାତ୍ର ରାମଚନ୍ଦ୍ରଙ୍କ ପ୍ରତି କଟୂକ୍ତି ତାଙ୍କ ତୁଣ୍ଡରୁ ବାହାରି ନାହିଁ । ସେ କପାଳକୁ ଟୁକି କାନ୍ଦିଲେ । ସୀତା କହିଲେ, ସେ ରାମଚନ୍ଦ୍ରଙ୍କ ପାଦସେବାକୁ ଯୋଗ୍ୟା ହେଲେ ନାହିଁ । ତେଣୁ ବିଧାତା ତାଙ୍କୁ ବଞ୍ଚିତ କରିଦେଲେ । ଏହି କଥା କହି ମନକୁ ସାନ୍ତ୍ୱନା ଦେଲେ । ସୀତା ସେତେବେଳେ ଗର୍ଭବତୀ । ଓଃ, କି ଦୁଃଖ ! ଶତ୍ରୁକୁ ଏ ଦୁଃଖ ନୋହୁ ! ସେ ଚିତ୍ର ମନେ ପଡ଼ିଲେ ଲୋମ ଟାଙ୍କୁରି ଉଠେ ! ଯେ ଚିତ୍ର ଯେ ଦେଖିବ ବା ଶୁଣିବ, ସେ ରାମଚନ୍ଦ୍ରଙ୍କୁ ପାଷାଣରୁ ନିଷ୍ଠୁର ବୋଲି ଧିକ୍କାର କରିବ; ମାତ୍ର ରାମଚନ୍ଦ୍ରଙ୍କର ସେତେବେଳେ ଅନ୍ୟ ଗତି ନ ଥିଲା । ବହୁତ ପୂର୍ବ ଓ ପର ଭାବି ସେ ଆପଣା କର୍ତ୍ତବ୍ୟ ସ୍ଥିର କଲେ ।

ସ୍ତ୍ରୀ—ଅଚ୍ଛା, ଲକ୍ଷ୍ମଣଙ୍କର ଟିକିଏ ଦୟା ହେଲା ନାହିଁ ?

ସ୍ୱାମୀ—ସେ ତ ପ୍ରଧ କଳିଯୁଗ ଭାଇ ନୁହନ୍ତି । ସେ ଯେ ଯୁଗର ଆଦର୍ଶ ଭାଇ । ତାଙ୍କର ବଡ଼ଭାଇ ପିତୃତୁଲ୍ୟ । ପିତୃ ଆଜ୍ଞା ଅବଜ୍ଞା କରିବା ଯାହା, ବଡ଼ଭାଇ ଆଜ୍ଞାକୁ ଅବଜ୍ଞା କରିବା ତାହା । ତାଙ୍କ ମନରେ ଯେତେ ପ୍ରକାର ଭାବ ହେଲେ ସୁଦ୍ଧା ରାମଚନ୍ଦ୍ରଙ୍କ ଆଜ୍ଞା ଶିରୋଧାର୍ଯ୍ୟ । ଲକ୍ଷ୍ମଣଙ୍କର ରାମଚନ୍ଦ୍ରଙ୍କ ପ୍ରତି ଯେପରି ଭକ୍ତି, ସୀତାଙ୍କ ପ୍ରତି ସେହିପରି ଭକ୍ତି । ସୀତାଙ୍କୁ ମା ଜାନକୀ ବୋଲି ଡାକୁଥିଲେ, ଦେବୀ ବୋଲି ସମ୍ବୋଧନ କରୁଥିଲେ, ତଥାପି ସେ ତ ରାମଚନ୍ଦ୍ରଙ୍କ ପତ୍ନୀ । ରାମଚନ୍ଦ୍ର ଯାହାଙ୍କୁ ତ୍ୟାଗ କଲେ, ଲକ୍ଷ୍ମଣଙ୍କର ତହିଁ ଉପରେ କଥା କହିବା ଅସଙ୍ଗତ । ଏବକାଳ ବଗୁଲିଆ ଟୋକାଙ୍କ ପରି ଗୁରୁଜନମାନଙ୍କ ଆଗେ ଗୃହାଏ

ଗପି ଦେଇ ଯିବା ସ୍ୱାଭାବ ତ ଲକ୍ଷ୍ମଣଙ୍କର ନ ଥିଲା । ଲକ୍ଷ୍ମଣ ୧୨ ବର୍ଷ ଧାଳ କ୍ଷୁଧା ଗ୍ରାସ, ନିଦ୍ରା ତ୍ୟାଗ, ଅପଲକ ନେତ୍ରରେ ସାଗ୍ର ରାତଦନ ସୀତାଙ୍କୁ ପହରା ଦେଇଥିଲେ । ସେହି ଲକ୍ଷ୍ମଣ ସୀତାଙ୍କୁ ନେଇ ବନ ମଧ୍ୟରେ ଏକାକିନୀ ଛାଡ଼ିଦେଲେ । କି ପରିବର୍ତ୍ତନ ! ବଡ଼ ଭାଇଙ୍କ ଆଜ୍ଞା ଅବଶ୍ୟ ପାଳିବାକୁ ହେବ । ରାମଚନ୍ଦ୍ର ନିଜେ କେତେ କଷ୍ଟ ନ ସହିଲେ ! ସକାଳୁ ଗାଦିରେ ବସିବେ, ଅଭିଷେକ ହେବେ, ମାତ୍ର ଦୈବଯୋଗରୁ ପରଦିନ ସକାଳୁ ୧୪ ବର୍ଷ ବନକୁ ଗଲେ । ପିତୃ ଆଜ୍ଞା ଅବଶ୍ୟ ପାଳି-ବାକୁ ହେବ । ରାମଚନ୍ଦ୍ରଙ୍କ ପରି ରାଜା, ରାମଚନ୍ଦ୍ରଙ୍କ ପରି ପୁତ୍ର, କୌଶଲ୍ୟାଙ୍କ ପରି ମାତା, ସୀତା ପରି ପତ୍ନୀ, ଲକ୍ଷ୍ମଣ ପରି ଭାଇ, ହନୁମାନ ପରି ଭକ୍ତ, ସୁଗ୍ରୀବଙ୍କ ପରି ମିତ୍ର ପୃଥିବୀରେ ବିରଳ । ଏମାନଙ୍କ ଆଦର୍ଶରେ ନିଜ ଜୀବନକୁ ଗଠନ କଲେ, ସଂସାରର ଅନେକ ମଙ୍ଗଳ ସାଧିତ ହେବ । ରାମଚନ୍ଦ୍ର କେଉଁ ଯୁଗରେ ଜନ୍ମିଥିଲେ ! ଆଜି ଆବାଳବୃଦ୍ଧବନିତା ସେ ନାମ ଘୋଷି ହେଉଛନ୍ତି ! ସେମାନେ ଦେବତା ହୋଇ ପୂଜା ପାଉଛନ୍ତି !

ସ୍ତ୍ରୀ—ହଁ ପୂଜା ପାଉଛନ୍ତି, ମାତ୍ର ସୀତାଙ୍କୁ ଛାଡ଼ିବା କଥା ଶୁଣିଲା-ବେଳେ ମନଟା କିପରି ହୋଇଯାଏ ।

ସ୍ୱା—କେବଳ ସେହି କଥାଟିକୁ ବିଗ୍ଭର କଲେ ମନଟା କିପରି ହୋଇ ପାରେ, କିନ୍ତୁ ସବୁ ବିଷୟ ବିଗ୍ଭର କଲେ ସେପରି ହେବ ନାହିଁ ।

---

## ସପ୍ତମ ପରିଚ୍ଛେଦ

ସ୍ୱା—ଆଜି ଠାକୁରେ 'ଗଜ ଉଦ୍ଧାରଣ ବେଶ' ହୋଇଥିଲେ, ତମେ ଟିକିଏ ଯାଇ ଦେଖି ଆସିଲ ନାହିଁ ? ଭଲ ବେଶ ହୋଇଥିଲା ।

ସ୍ତ୍ରୀ—କିପରି ବେଶ ହୋଇଥିଲା କହିଲ ?

ସ୍ବା—ଠାକୁରେ ଚତୁର୍ଭୁଜ ହୋଇ ଲକ୍ଷ୍ମୀଙ୍କି ଜାନୁ ଉପରେ ବସାଇ ଗରୁଡ଼ ଉପରେ ବସିଥିଲେ । ଶଙ୍ଖ ଚକ୍ର ଗଦା ପଦ୍ମ ଚାରିଭୁଜରେ ଧରିଥିଲେ । ଅସ୍ତ୍ର ଅଳଙ୍କାରରେ ମଣ୍ଡି ହୋଇ-ଥିଲେ । ସିଂହାସନ ତଳେ ଗୋଟିଏ ହାତୀ ଏବଂ ହାତୀଟିକୁ ଗୋଟାଏ କୁମ୍ଭୀର କାମୁଡ଼ି ଧରିଥିଲା ।

ସ୍ବା—ଏ ବେଶଟା'ର ଅର୍ଥ କଣ କହିଲ ?

ସ୍ତ୍ରୀ—ଅର୍ଥ ଅଉ କଣ ସ ? ଠାକୁରେ ବୈକୁଣ୍ଠରେ ଲକ୍ଷ୍ମୀଙ୍କ ସଙ୍ଗେ ପଶା ଖେଳୁଥିଲେ, ହାରିବା ଦାନ ପଡ଼ିଲା ବେଳକୁ ଠାକୁରେ କହିଲେ, "ମୁଁ ଅଉ ଖେଳିବି ନାହିଁ, ଚଞ୍ଚଳ ଯିବି ।" ଲକ୍ଷ୍ମୀ କହିଲେ, "ଯିବାର କିଛି ଅବଶ୍ୟକ ନାହିଁ, କେବଳ ହାରିବ ବୋଲି ନାହିଁ କରୁଛ ।" ଠାକୁରେ କହିଲେ "ନା ହେ, ସେଥି-ପାଇଁ ନୁହେ, ମୋ ଭକ୍ତ ବଡ଼ ବିପଦରେ ପଡ଼ିଛି, ସେ ଅତି ଅର୍ତ୍ତ ହୋଇ ଡାକୁଛି, ମତେ ଯିବାକୁ ହେବ ।" ଲକ୍ଷ୍ମୀ ବିଶ୍ୱାସ କଲେ ନାହିଁ, ତେଣୁ ଠାକୁରେ ତାଙ୍କୁ ସଙ୍ଗରେ ଅଣି ଅସିଲେ, ଗଜକୁ କୁମ୍ଭୀର ଧରି ଥିବାର ଦେଖିଲେ, ଠାକୁରେ ଚକ୍ରଦ୍ୱାରା କୁମ୍ଭୀରକୁ ହାଣି ଦେବାରୁ ଗଜ ଉଦ୍ଧାର ପାଇଗଲା ।

ସ୍ବା—ଏ କଣ ଗୋଟାଏ ଅଶ୍ଚର୍ଯ୍ୟ କଥା । ମହାପ୍ରଭୁ ଗୋଟାଏ କୁମ୍ଭୀର ମାରି ପକାଇଲେ ! ଭାରି ବୀରତ୍ୱ ଦେଖାଇଲେ ! ମୁଁ ତ ସେଥି-ଲାଗି ଗଲି ନାହିଁ ।

ସ୍ତ୍ରୀ—ହଜାର ହଜାର ଲୋକ ଗଲେ, ତମେ ଗଲ ନାହିଁ କାହିଁକି ସ ?

ସ୍ବା—ସେ ବେଶ ଅନେକ ଥର ଦେଖିଲିଣି । ଭାଗବତରେ ଅଛି— 'ଏ ବଡ଼ ଲୋକଙ୍କର ମତ । ଅଳପଲୋକେ ବିପରୀତ' । ସବୁ ଶିଆ ହେଲା ତ କୁମ୍ଭୀର ମାରୁଛନ୍ତି । ପାରିଦେବା କଥାଟା

ତ ସହଜ । କିନ୍ତୁ ଅଜ୍ଞ ତାହାର କଥା ତ ପୁସ୍ତକରେ ଲେଖା ନାହିଁ । ସେମାନେ ସବୁ ପଶୁ ଅଜ୍ଞ ଲୋକ; ତାଙ୍କ କଥା କାହିଁକି ପୁରାଣରେ ରହିବ ? ଠାକୁରେ ତାଙ୍କ ଜୀବନରେ ଗୋଟାଏ କୁମ୍ଭୀର ମାରିଥିଲେ, ଲୋକେ ସେ କଥା ଗାଇ ହେଉଛନ୍ତି । ସେହି କଥା ସ୍ମରଣ କରାଇ ଦେବାପାଇଁ ଠାକୁରେ ପ୍ରତିବର୍ଷ ବେଶ ହେଉଛନ୍ତି । ଠାକୁରଙ୍କ କଥା ହୋଇ ନ ଥିଲେ ଏ କଥା ଲୋକଙ୍କ ଆଖିରେ ପଡ଼ନ୍ତା ନାହିଁ । ବଡ଼ଲୋକ ପୁଷ୍ଟ ଗୁହଳ ଦେଖାଇଲେ ଲୋକେ କହନ୍ତି, ଖ ଭାରେ ଖାଉଚି ! ଗରିବ ପିଲା ଖାଇଲେ ଲୋକେ କହନ୍ତି; ପେଟ ଶଙ୍କଳରେ ଖାଉଛନ୍ତି । ଏହା ତ ଲୋକଙ୍କର ବୁଝାମଣା, ଏଥିରେ କଣ କହିବ ?

ସ୍ତ୍ରୀ—ବୁଝିଲି, ମୁଁ ଅଜ୍ଞ ତମ କଥାକୁ ପାରିବି ନାହିଁ । ଆଚ୍ଛା, ମତେ କି କହୁଛ ଲୋ, କି କଥା କହୁଛ ମ ? ଠାକୁରଙ୍କୁ ଏପରି ଅଠା କରି କହନ୍ତି ! କାଳ କଣ, ବେଳ କଣ, ଏମନ୍ତ କଥା ଆଜ ତୁଣ୍ଡରେ ଧରିବ ନାହିଁ !

ସ୍ୱାମୀ—କିହୋ, ମୁଁ କଣ କହିଲି କି ? ମୁଁ କଣ ଠାକୁରଙ୍କୁ ଗାଳି ଦେଲି ? ଠାକୁରେ କଣ ତମରି ପରି ହୋଇଛନ୍ତି ଯେ, ଏ କଥା ଶୁଣିଲା ମାତ୍ରେ ମୋ ଉପରେ ଚିଡ଼ିଯିବେ । ମୁଁ ତ ସତକଥା କହିଲି ।

ସ୍ତ୍ରୀ—ଜାଣି ଗାଈର ଭଣ୍ଡେଲ ଗୋଠ ପରି ତମର ସବୁ କଥାରେ ଗୋଟାଏ ଅଲଗା ଅର୍ଥ ।

ସ୍ୱାମୀ—ଅଦ୍ଭୁତ କଥା, ଆମେ କେବେ ଏପରି ଅର୍ଥ କରୁ ନା । ମୁଁ କହିଲି ଠାକୁରେ ବଡ଼ଲୋକ ତାଙ୍କ କଥାକୁ କିଏ ପାରିବ ? ତମେ ଖାଲି ବେଶଟା ଦେଖି ଆସିଲ ଭିତର ଉଦ୍ଦେଶ୍ୟଟା

କହୁ ବୁଝିଲ ନାହିଁ । ପ୍ରଭୁଙ୍କର କେଡ଼େ ଦୟା ! ନ ଜାଣିକରି ଲୋକେ ତାଙ୍କୁ ଦୟାନିଧି, ଦୟାସାଗର ବୋଲି କହନ୍ତି ! ପ୍ରଭୁଙ୍କ ତୁଳନାରେ ହାତୀ କି ଛାର ଜନ୍ତୁ ! ଯେ କେତେଁଠି ଏ କେଉଁଠି, ତା ଡାକ ଶୁଣି ଏଡ଼େ ବଡ଼ ବ୍ରହ୍ମାଣ୍ଡନାଥଙ୍କ ଆସନ ଟଳିଗଲା । ଏହାକୁ କହନ୍ତି ପ୍ରକୃତ ବଡ଼ଲୋକ । କେତେଜଣ ବଡ଼ଲୋକ ସାନଜୀବଙ୍କ କଥାକୁ କାନ ଡେରି ଶୁଣନ୍ତି ? ଏପରି ହୋଇ ନ ଥିଲେ ଲୋକେ କିଆଁ ତାଙ୍କୁ ବ୍ରହ୍ମାଣ୍ଡକର୍ତ୍ତା ବୋଲି କହୁଥାନ୍ତେ ?

ସ୍ତ୍ରୀ—ହଇ ହେ, ଠାକୁରଙ୍କର ତ ସମସ୍ତେ ସମାନ, କୁମ୍ଭୀରକୁ ମାରି ଗଜକୁ ତାରିଲେ କାହିଁକି ? କୁମ୍ଭୀର ପଳା, ଗଜ ବଞ୍ଚିଲା, ନ ହେଲେ ଗଜ ମରିଥାନ୍ତା କୁମ୍ଭୀର ବଞ୍ଚିଥାନ୍ତା । ଏଥିରେ ପ୍ରଭୁଙ୍କର ପାପ କେତେ, ଅପେ କେତେ ?

ସ୍ୱା—ଅହେ ବୁଝିନାହିଁ କି—କୁମ୍ଭୀର ପରି ଗଜ ସାଙ୍ଗରେ ଅବିଶ୍ୱାସ କାମ କଲା ? ଗଜ ସଙ୍ଗେ ମୈତ୍ର ହେଲା । ଭିତିରି ଭିତରେ ଛଳପଣ ହୋଇ ଥିଲା । ଗଜକୁ କହିଲା, ତାକୁ ପାଣିରେ ଛାଡ଼ି ଦେବାକୁ । ଗଜ ତା କଥାକୁ ବିଶ୍ୱାସ କଲା, ଗଜର ଦୟା ହେଲା, ସେ ତାକୁ ନେଇ ପାଣିରେ ଯେମନ୍ତ ଛାଡ଼ି ଦେଲା, ସେ ପାଣିକି ଡେଇଁ ପଡ଼ି ଗଜର ଗୋଡ଼ଟି ଧରିଲା । ଏପରି ଅବିଶ୍ୱାସୀ କୁମ୍ଭୀରକୁ ଏପରି ଦଣ୍ଡ ନ ହୋଇ କଣ ହୁଅନ୍ତା ?

ସ୍ତ୍ରୀ—ହାତୀ କିପରି ବିଶ୍ୱାସ କଲା ? ଏଡ଼େ ଦେହଟାଏ ବହୁଛି, ତାର ବୁଦ୍ଧି କେଉଁଠି ?

ସ୍ୱା—ହାତୀ ବଡ଼ ସରଳ ଜୀବ । ମିତ୍ର ହେବାରୁ ଅବିଶ୍ୱାସ ଛାଡ଼ି ଦେଲା ! ମିତ୍ର ଦ୍ରୋହୀ ହେଲେ ନରକ ବାସ ହୁଏ । ହାତୀ ଧର୍ମରେ ଥିଲା, ବଞ୍ଚିଗଲା । କୁମ୍ଭୀର ଅଧର୍ମ କଲା ନାଶଗଲା ।

ଏଥିଲାଗି କହନ୍ତି, ଧର୍ମରୁ ଜୟ, ପାପରୁ କ୍ଷୟ । ଯେଉଁମାନେ ଏପରି ବିଶ୍ୱାସଘାତକ ହୁଅନ୍ତି, ପ୍ରଭୁ ତାଙ୍କୁ ନିଜ ଚକ୍ରରେ ଛେଦ ଦିଅନ୍ତି । ବେଶ ଦେଖି ଏ କଥାଗୁଡ଼ିକ ଶିକ୍ଷା କଲେ ସିନା ବେଶର ଉଦ୍ଦେଶ୍ୟ ସିଦ୍ଧ ହୁଅନ୍ତା, ଖାଲି ବେଶର ରଙ୍ଗଢଙ୍ଗ ଦେଖିଲେ କଣ ହେବ ?

ସ୍ତ୍ରୀ—ଏପରି କଣ କେହି ଶିଖନ୍ତି ନାହିଁ ?

ସ୍ୱା—ଅହେ, ଏ ବ୍ରହ୍ମାଣ୍ଡ ମଧ୍ୟରେ କେହି ଯେ ଶିଖୁ ନ ଥିବେ ଏ କଥା କିଏ କହି ପାରିବ ? କିଏ ବା ଅଛି କେଉଁ ମତେ, ତାହା ବା ଜାଣିବା କେମନ୍ତେ ? ଯେ ଜ୍ଞାନୀ, ସେ ବେଶ ନ ଦେଖି ମଧ୍ୟ ବୁଝିପାରିବ । ଜନ ସାଧାରଣ ଏପରି ବୁଝନ୍ତି କି ନାହିଁ ସନ୍ଦେହ । ବେଶ ଦେଖି ବାରବାର ଚିନ୍ତା ମନକୁ ଆଣନ୍ତି ।

ସ୍ତ୍ରୀ—ତେବେ ଆଗେ ଏତେ କଥା କହୁଥିଲ କାହିଁକି ?

ସ୍ୱା—ମୋ କଥା ଶୁଣି ତମେ କଣ ବୁଝିବ ଜାଣିବାପାଇଁ କହୁଥିଲି ।

ସ୍ତ୍ରୀ—ହଇ ହେ, ଠାକୁର ଯେଉଁଠି ଥିଲେ, ବସିରହିଲେ ସେ ଥାନରୁ କୁମ୍ଭୀରକୁ ମାରିଦେଇ ପାରିଥାନ୍ତେ, ଏତେ ବାଟ ଆସିଲେ କାହିଁକି ?

ସ୍ୱା—ଲୋକଶିକ୍ଷା ଲାଗି । ଲୋକେ ଜାଣିବେ କିପରି ? ଅବିଶ୍ୱାସୀ ହେଲେ କି ଫଳ ହୁଏ—ଲୋକେ ଜାଣିବେ କିପରି ? ଲୋକଙ୍କର ଧର୍ମ ଭୟ ହେବ କିପରି ? ଲୋକେ ଶିଖିବା ଉଚିତ—ପରର ଅନିଷ୍ଟ ପାଞ୍ଚିଲେ ନିଜର ଅନିଷ୍ଟ ହୁଏ । ନିଜଠାରେ ପାପ ଥିଲେ ଈଶ୍ୱର ସହାୟ ହୁଅନ୍ତି ନାହିଁ । ପ୍ରଭୁଙ୍କର କି ଅପାର କରୁଣା ! ଏ କରୁଣାର କିଛି ଉପମା ନାହିଁ । ସେ ଲୋକମାନ ଭକ୍ତର ଦୁଃଖ, କଷ୍ଟ ସହି ପାରନ୍ତି ନାହିଁ । ନାମ ବୋଲିଛନ୍ତି ତେଣୁ କରୁଣା ସାଗର ।

ସ୍ତ୍ରୀ—ହାତୀ କଣ ଭକ୍ତ ? ସେ କଣ ଧର୍ମ ଦେବତା ଅଛନ୍ତି ବୋଲି ଜାଣିପାରେ ?

ସ୍ୱାମୀ—ହାତୀ ଭକ୍ତ ନୁହେ ବୋଲି କାହିଁକି ଭାବୁଛ ? ହାତୀର ମନରେ କେତେବେଳେ କି ଭାବ ହେଉଛି, ଆମ୍ଭେମାନେ ଜାଣିପାରୁ ନ ଥାଉଁ, ମାତ୍ର ପ୍ରଭୁ ତ ଅନ୍ତର୍ଯ୍ୟାମୀ, ସେ ତ ପ୍ରକୃତ କଥା ବୁଝି ପାରିବେ । ପଶୁମାନେ ଯେ ପୂରା ଅଜ୍ଞାନ, ଏ କଥା ତ କୁହାଯାଇ ପାରିବ ନାହିଁ । କେତେ କାର୍ଯ୍ୟରେ ସେମାନଙ୍କର ଜ୍ଞାନ ଥିବାର ଦେଖାଯାଏ । କିଏ ଧର୍ମ ଦେବତାଙ୍କୁ ପାଟିକରି ଡାକେ, କିଏ ବା ମନେ ମନେ ଡାକେ । ପ୍ରାଣଭୟ ସବୁ ପ୍ରାଣୀଙ୍କର ଅଛି । ହାତୀର ସେ ଆପଦବେଳେ ସେ ଯେ ପ୍ରଭୁଙ୍କୁ ଡାକି ନ ଥିବ କିଏ କହି ପାରିବ ? ତା ମନରେ ସେପରି କିଛି ଭାବ ଜନ୍ମି ନ ଥିଲେ, ପ୍ରଭୁଙ୍କ ଆସନ ଟଳନ୍ତା କାହିଁକି ?

ସ୍ତ୍ରୀ—ହାତୀ ତା ମନରେ କଣ ପାଞ୍ଚିଲା କେଜାଣି, ସେ କଥା କିଏ କହି ପାରିବ ? ମଣିଷ ତ ଏତେ ଡାକୁଛି, ତା କଥା ଶୁଣା ଯାଉନାହିଁ କାହିଁକି ?

ସ୍ୱାମୀ—ଆହେ ବଡ଼ ପାଟିକରି କେବଳ ଡାକିଲେ ତ ହେବ ନାହିଁ । ପ୍ରାଣ ଫଟାଇ ଡାକିଲେ ସିନା ହେବ । ବାରଅଡ଼େ ମନ ଥିବ, କେବଳ ଡାକେ ଡାକେ ଦେଲେ କଣ ହେବ । ଭଗବାନ ଆମ ଡାକ ଶୁଣିଲେ ନାହିଁ ବୋଲି କଣ ଆମ ପ୍ରାଣ କାନ୍ଦୁଛି, କି ଆମ ମନ ବ୍ୟାକୁଳ ହେଉଛି, କି ଆମକୁ ଭାତ ରୁଚୁ ନାହିଁ, କି ନିଦ ଲାଗୁ ନାହିଁ ? ତାଙ୍କ ସଙ୍ଗେ ସାକ୍ଷାତ ହେଲା ନାହିଁ ବୋଲି କଣ ଆମେ ପାଗଳ ହେଉଥାଉଁ ? ଆମେ ଧର୍ମଙ୍କୁ ଡାକୁ କେତେବେଳେ ? ପୁଅ ଝିଅ ନ ହେଲେ ଡାକୁଁ, ରୋଗ ହେଲେ ଡାକୁଁ, ସ୍ୱାମୀ ଦିଅ ବୋଲି ଡାକୁଁ । ନ ଦେଲେ, ଧର୍ମ

ନ ଦେଲେ ବୋଲି ବିରକ୍ତ ହେଉଁ । ଏପରି ଡାକ ତାଙ୍କୁ ଶୁଭିବ କିଆଁ ? ଯେତେବେଳେ ଲୋକ ନିରାଶ୍ରୟ ହୋଇ ପ୍ରାଣ ବିକଳରେ ଡାକେ, ସେତେବେଳେ ସେ ଶୁଣନ୍ତି । ଧ୍ରୁବ ପ୍ରହ୍ଲାଦ ଅତି ପିଲା ; ସେମାନଙ୍କ ଡାକ ତ ଶୁଭିଥିଲା ! ତାଙ୍କ ବିରହରେ ଆମ ଆଖିରୁ କେବେ ଲୁହ ବହେ କି ? ମାଇପ ପୁଅ ମଲେ, ଧନ ଚୋର ନେଇଗଲେ ଲୋକ କାନ୍ଦି କାନ୍ଦି ଆକାଶ ଫଟାଇ ଦେଉଛନ୍ତି । ମାତ୍ର ଭଗବାନଙ୍କ ସହିତ ସାକ୍ଷାତ ନ ହେଲା ବୋଲି କେତେଜଣ ଭାବନା କରି କାନ୍ଦୁଛନ୍ତି । ବାପ ଅଜା ଅମଳରୁ ଲୋକେ ଦେଉଳକୁ ଯାଉଥିଲେ, ବର୍ତ୍ତମାନ ଆମେ ଯାଉଛୁ, ଭବିଷ୍ୟତରେ ପିଲାଏ ଯିବେ । କେବଳ ଏ ଯିବା ଆସିବାରେ କିଛି ଫଳ ନାହିଁ । ଭାବ ଥିବା ଆବଶ୍ୟକ "ଭାବମିଚ୍ଛନ୍ତି ଦେବତା ।" ଭାବ ଦେଖି ଭଗବାନ ନିକଟରେ ଓ ଅଭାବରୁ ଦୂରରେ ରହିଥାନ୍ତି । ଭଗବାନଙ୍କ ଲାଗି ତନ୍ମୟତା କାହିଁ ?

ସ୍ତ୍ରୀ—ତନ୍ମୟତା କଣ ? ସେ କିପରି ହୁଏ ?

ସ୍ୱାମୀ—ରାଧା ଯେପରି ହୋଇଥିଲେ, ଗୋପାଙ୍ଗନାମାନେ ସେପରି ହୋଇଥିଲେ । ସେମାନେ କୃଷ୍ଣ ଚିନ୍ତାରେ ପାଗଳ । ସେମାନେ ମୁହୂର୍ତ୍ତେ କୃଷ୍ଣ ବିରହ ସହି ପାରୁ ନ ଥିଲେ । ଶୟନେ, ସ୍ୱପନେ, ଜାଗରଣେ ସବୁବେଳେ କୃଷ୍ଣ ଚିନ୍ତା । ସର୍ବତ୍ର କୃଷ୍ଣ ଦର୍ଶନ, ସେହି କି ତରୁ ପତ୍ରରେ କୃଷ୍ଣଙ୍କୁ ଦେଖୁଥିଲେ । ଦର୍ଶନରେ କୃତାର୍ଥ, ଅଦର୍ଶନରେ ଜଗତ ଅନ୍ଧକାରମୟ ଦେଖୁଥିଲେ । ଏହି ଅବସ୍ଥା କେତେଜଣଙ୍କର ହୁଏ, ଯେଉଁମାନଙ୍କର ହୁଏ, ସେମାନେ ଧନ୍ୟ; ଯେଉଁମାନେ ଉପର ମନରେ ଡାକନ୍ତି, ତାଙ୍କ ଦଶା ଆମରି ପରି ।

ସ୍ତ୍ରୀ—ହଉ ହେ, ଈଶ୍ୱର କେଉଁଠି ଥାନ୍ତି ?

ସ୍ୱା—ଈଶ୍ୱର ସବୁଠି ଅଛନ୍ତି । ପ୍ରହ୍ଲାଦ ଡାକିଲା, ଖମ୍ବରୁ ବାହାରିଲେ । ବସ୍ତୁ, ପାଷାଣ, ଡିହ୍ନ, ତୃଣ, ଜଳ, ସ୍ଥଳ, ଆକାଶ, ପାତାଳ, ମନୁଷ୍ୟ, ପଶୁ, କୀଟ ଓ ପତଙ୍ଗ ସବୁଠାରେ ସେ ଅଛନ୍ତି । ସେ ତ ଜଗତର ପ୍ରାଣ, ସେ ଯେଉଁଠି ଅଛନ୍ତି, ସେଠାରେ ପ୍ରାଣ ଅଛି । ସେ ଯେଉଁଠି ନାହାନ୍ତି ତାକୁ ଶବ କହୁଛନ୍ତି ।

ସ୍ତ୍ରୀ—ଅଚ୍ଛା, ସେ ଯେବେ ସବୁଠାରେ ଅଛନ୍ତି, ଆମଠାରେ ତ ଥିବେ, ଦେଖାହେଉ ନାହାଁନ୍ତି କାହିଁକି ?

ସ୍ୱା—ଅହେ ଆମ ଆଖିଠା ଉପରକୁ ଯେ, ଆମକୁ ଦିଶିବ କପରି ? ଆମେ କଣ ଭିତର ଦେଖୁଥାଉଁ ? ଆମେ ତ ପୁଅ, ଝିଅ, ନାତି, ନାତୁଣୀ, ଜମି, ଟଙ୍କା, ଧାନ, ଅପୂଅଳଙ୍କାର, ପାଟ ପୀତାମ୍ବର ଦେଖି ଆଖି ପବନ କରୁଥାଉଁ । ଆମ ମନମୂନ, ଧ୍ୟାନଧାରଣା, ସବୁ ସେହିଠାରେ । ଆମ ଆଖିରେ ତ ପରଳ ମାଡ଼ିଛି, ଆମକୁ ଭଗବାନ ଦେଖାଯିବେ କପରି ? ସେ ପରଳ ନ ଯିବାଯାଏ ଆମକୁ ସେ ଦେଖା ଦେବେ ନାହିଁ ।

ସ୍ତ୍ରୀ—ଏ ପରଳ କିଏ ଭଲ କରିବ ?

ସ୍ୱା—ଡାକ୍ତର ।

ସ୍ତ୍ରୀ—କେଉଁ ଡାକ୍ତର ?

ସ୍ୱା—ମନ ଡାକ୍ତର । ଭାଗବତ କହୁଛି—

ମନ ତୋହର ନିଜ ଗୁରୁ ।
ଜାଣିବ କେବେ ତୁ ପଚାରୁ ।

ମନ ଅସଲ ଡାକ୍ତର । ସେ ଯେବେ ଆଖିକି ଅନ୍ୟ ସବୁଠାରୁ ଫେରାଇ ଆଣି ଭଗବାନଙ୍କଠାରେ ଲଗାଇ ଦେବ, ତେବେ ହେବ । ଅସଲ ମନ ଲୋଡ଼ା ।

---

## ଅଷ୍ଟମ ପରିଚ୍ଛେଦ

ସ୍ତ୍ରୀ—ହଉ ହେ, 'ପ୍ରଦୀପିକା' କାଗଜରେ ଲେଖାଥିଲା—ମାଳମଣି ସେନାପତି ବିଲାତ ଗଲେ । କେଉଁଠି ବିଲାତ ?

ସ୍ୱାମୀ—ବିଲାତ କେଉଁଠି ଜାଣି ନାହିଁ ? ଇଂରେଜୀରେ ଲଣ୍ଡନ କହନ୍ତି । ଲଣ୍ଡନ ଗୋଟିଏ ସହର, ଏ ସହର ଇଂଲଣ୍ଡ ଦେଶର ରାଜଧାନୀ ।

ସ୍ତ୍ରୀ—ରାଜଧାନୀ କଣ ?

ସ୍ୱାମୀ—ଯେଉଁଠାରେ ରାଜା ରହନ୍ତି, ତାକୁ ରାଜଧାନୀ କୁହାଯାଏ । କଟକ ଓଡ଼ିଶାର ରାଜଧାନୀ, କଲିକତା ବଙ୍ଗଳାର ରାଜଧାନୀ, ଦିଲ୍ଲୀ ଭାରତବର୍ଷର ରାଜଧାନୀ, ଲଣ୍ଡନ ବ୍ରିଟିଶସାମ୍ରାଜ୍ୟର ରାଜଧାନୀ, ଏହିପରି ରଜା ଯେଉଁଠି ରହନ୍ତି, ତାକୁ ରାଜଧାନୀ କୁହାଯାଏ ।

ସ୍ତ୍ରୀ—ଆମର ରଜା କିଏ କି ?

ସ୍ୱାମୀ—ବର୍ତ୍ତମାନ ରଜା ପଞ୍ଚମଜର୍ଜ୍ଜ ।

ସ୍ତ୍ରୀ—ସେ କେଉଁଠି ଥାନ୍ତି ।

ସ୍ୱାମୀ—ସେ ବିଲାତରେ ଥାନ୍ତି ।

ସ୍ତ୍ରୀ—ତେବେ ବିଲାତ ତ ରାଜଧାନୀ ହେଲା । କଲିକତା, କଟକ, ଦିଲ୍ଲୀ ଏଗୁଡ଼ିକ ରାଜଧାନୀ ବୋଲି କଣ କହିଲ ?

ସ୍ୱାମୀ—ଏଠାରେ ରଜାଙ୍କ ତରଫ ପ୍ରତିନିଧି ରହିଛନ୍ତି ।

ସ୍ତ୍ରୀ—ରାଜପ୍ରତିନିଧି ପୁଣି କଣ ?

ସ୍ୱାମୀ—ଅହେ, ଇଂରେଜମାନଙ୍କ ରାଜ୍ୟରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ । ସୂର୍ଯ୍ୟ ପୃଥିବୀର ଯେଉଁଆଡ଼େ ଯିବେ, ସେ ଅଡ଼େ ତାଙ୍କର ରାଜ୍ୟ ଅଛି । ଏଡ଼େ ବଡ଼ ରଜା ତ ଜଣେ ମଣିଷ, ସେ କିପରି ବୁଝି ପାରିବେ ? ସେ ଜଣେ ଜଣେ ଶାସନକର୍ତ୍ତା ରଖିଛନ୍ତି ।

ସେମାନେ ରଜାଙ୍କ ତରଫରୁ ରାଜ୍ୟ କରୁଅଛନ୍ତି । ଅନେକ କର୍ମଚାରୀ ଅଛନ୍ତି । ଦେଖ, ଜିଲ୍ଲାକେ ଜଣେ ଲେଖାଏଁ ମେଜେଷ୍ଟ୍ରେଟ ସାହେବ, ତାଙ୍କ ଉପରେ କମିଶନର ସାହେବ, ତାଙ୍କ ଉପରେ ଗବର୍ଣ୍ଣର, ପୁଣି ସବୁ ଗବର୍ଣ୍ଣରଙ୍କ ଉପରେ ଜଣେ ଭାଇସରୟ । ଏମାନଙ୍କର ଅଧୀନରେ ଶହ ଶହ କିରାଣୀ ଅମଲା ଅଛନ୍ତି । ଭାଇସରୟଙ୍କୁ ବଡ଼ଲାଟ ସାହେବ କହନ୍ତି । ଯେ ଯାହା ଉପରକୁ ସିଢ଼ି ବନ୍ଧା ହୋଇଅଛି । ଯେ ଯାହା ଉପର ହାକିମ, ସେ ତା କାମ ତଦାରଖ କରେ । ବିଲାତରେ ଗୋଟିଏ ସଭା ଅଛି, ତାକୁ ପାର୍ଲିଅମେଣ୍ଟ ସଭା କହନ୍ତି । ସେ ସଭା ଯାହା କହିବ, ରଜା ସେ କଥା କାଟି ପାରିବେ ନାହିଁ । ସେଠାରେ ଭାରତମନ୍ତ୍ରୀ ସଭା ଅଛି । ସେ ସଭା ବଡ଼ଲାଟଙ୍କ ଉପରେ ମାଲିକ । ସେ ସଭା ଯେପରି ହୁକୁମ ଦେବ, ଭାରତର କର୍ମଚାରୀମାନେ ସେହିପରି କାମ କରିବେ ।

ସ୍ତ୍ରୀ—ପାର୍ଲିଅମେଣ୍ଟ ସଭାରେ କିଏ ବସେ ?

ସ୍ୱାମୀ—ସେଥିରେ ବିଲାତର ସାଧାରଣ ପ୍ରଜାଙ୍କ ତରଫରୁ ବାଛି ବାଛି ଲୋକ ଅଛନ୍ତି । ପୁଣି ଜମିଦାରମାନଙ୍କର ଗୋଟିଏ ସଭା ଅଛି । ସେଥିରେ ସେମାନଙ୍କ ତରଫରୁ ବାଛି ବାଛି ଲୋକ ଅଛନ୍ତି । ରଜାଙ୍କର ବଡ଼ ବେଶୀ କ୍ଷମତା ନାହିଁ । ଆମ ଦେଶରେ ରଜା ଯାହା କହିବେ ତାହା ହେବ । ବିଲାତରେ ପ୍ରଜା ସଭା ଯାହା କହିବ, ତାହା ହେବ । ପ୍ରଜାଙ୍କ ମତାନୁସାରେ କାର୍ଯ୍ୟ ହୁଏ ।

ସ୍ତ୍ରୀ—ବିଲାତ ଏଠାରୁ କେତେ ଦିନର ବାଟ ମ ?

ସ୍ୱାମୀ—ଅଠର ଦିନର ବାଟ । ଜାହାଜରେ ଯିବାକୁ ହେବ—କେବଳ ସମୁଦ୍ର ।

ସ୍ତ୍ରୀ—ମୋ ବାପା ଲୋ ! ଅଠରଦିନ କାଳ ଏ ଅକୂଳ ସମୁଦ୍ରରେ ଜୀବନ ମୂର୍ଚ୍ଛା ହୋଇ ସେଠାକୁ ଯିବ, ପାଠ ପଢ଼ିବ ! ସେ ପାଠ

ମୁହଁରେ ନିଆଁ । ନୀଳମଣି ବାବୁଙ୍କୁ ପଠାଇ ଦେବାକୁ ବାପ ମା'ଙ୍କର କିମିତି ଛାତି ପଡାଇଲା ମ ?

ସ୍ୱାମୀ—ଏଇ ତ ଆମଦେଶ ମାଇପଙ୍କ ସାହସ ! କି ହେ', ସେ ଦେଶର ମରଦ ମାଇକିନିଅମାନେ ସେଥିବାଟେ ତ ପୁଣି ଆସି ଆମ ଉପରେ ରଜା ହୋଇଛନ୍ତି । ସେ କିପରି ଆସିଲେ ? ସେମାନେ ତ ମଣିଷ; ସେମାନେ ତ ପୁଣି ଆସୁଛନ୍ତି ଯାଉଛନ୍ତି, ଏପରି ଯିବା ଆସିବା ଦିନଦିନ ଲାଗିଛି । ଅହେ, ସାହସ ନ ଥିଲେ ଲୋକ ଉନ୍ନତ ହୋଇ ପାରିବ ନାହିଁ । ଜାହାଜରେ ଯିବ, ଡର କାହିଁକି ? ଜାହାଜ ତ ଘର ପରି ହୋଇଛି, ଘରେ ବସିଲେ ଯାହା ଜାହାଜରେ ବସିଲେ ତାହା । ଖାଇବା ପିଇବାର ତ ଅଭାବ ନାହିଁ । ଜାହାଜରେ ସବୁ ଜିନିଷ ଥାଏ, ମିଳେ । ନଅଣ୍ଟ ହେଲେ ଜାହାଜିଅମାନେ କୂଳରେ ଜାହାଜ ଲଗାଇ ସହର ବଜାରରୁ କିଣି ଆଣନ୍ତି । ଆଉ ଚିନ୍ତା କଣ ?

ସ୍ତ୍ରୀ—ଅହେ, ସବୁ ତ ଅଛି ଯେତେବେଳେ ଝଡ଼ ତୋଫାନ ହୋଇ ଜାହାଜ ବୁଡ଼ିଯିବ, ସେତେବେଳେ ଉପାୟ କଣ ?

ସ୍ୱାମୀ—ଘରେ ବସିଥାଇଁ, ହଠାତ୍ ଝଡ଼ ତୋଫାନ ହୋଇ ଘର ଦ୍ୱାର ଭାଙ୍ଗି ପଡ଼ିଲା, ଯେ ଲୋକ ଥିଲେ ସେ ମରିଗଲେ ! ହଠାତ୍ ଘରେ ନିଆଁ ଲାଗିଲା, ଲୋକ ବାହାରି ପାରିଲା ନାହିଁ, ମରିଗଲା । ନଈରେ ପହଁରୁ ପହଁରୁ କିଏ ବୁଡ଼ି ମରୁଛି । ଏପରି ତ ନାନା କାରଣରୁ ଲୋକେ ଅପଦ ପଡ଼ିଲେ ମରି ଯାଉଛନ୍ତି । ଯୋଗ ଥିଲେ ଜାହାଜ ବୁଡ଼ିଯିବ । ଦଇବ ଦଣ୍ଡକୁ କିଏ କଣ କରିବ ? ଯାହାର ଯେତେବେଳେ ଆୟୁ ଶେଷ ହେବ, ସେ ମରିବ—ମରିବା ଲାଗି ଚିନ୍ତା କଣ ? ମରିବାର ଥିଲେ ଯେଉଁଠା ସେଠି ମରିବ । 'କା ଚିନ୍ତା ମରଣେ ରଣେ' । ଘରେ ସିନ୍ଧୁକରେ

ପଶି ରହିଲେ କଣ ଯମ ଛାଡ଼ିବ ? ସେ ଦେଶର ମାଇପେ ସବୁ ଜାହାଜରେ ଆସୁଛନ୍ତି, ପୁଣି ସେହି ଜାହାଜରେ ଏ ଦେଶରୁ ଯାଉଛନ୍ତି, ତାଙ୍କୁ ଡର ମାଡ଼ୁ ନାହିଁ ? ଆମଦେଶ ମାଇପଙ୍କୁ ଡର, କାଳେ ଜାହାଜ ବୁଡ଼ିଯିବ । ଏବେ ତ କେତେ ଲୋକ ଯିବା ଆସିବା କଲେଣି, ଡର ଭୟ ଭାଙ୍ଗି ଗଲାଣି । ନାନାଦେଶ ବିଦେଶକୁ ଗଲେ ନାନା କଥା ଶିଖିବାକୁ ହେବ, ଜାଣିବାକୁ ହେବ—ଘର କଣରେ ବସି ରହିଲେ କଣ ଜାଣି ପାରିବ ?

ସ୍ତ୍ରୀ—ମୁଁ ତ ଭାବିଥିଲି ଆମଦେଶ ଛଡ଼ା ଅନ୍ୟ ଦେଶ ନାହିଁ । ସେ ଦିନ ଛାତ ଉପରକୁ ଯାଇ ଦେଖିଲି ଯେ ଆକାଶ କେତେ ଦୂରରେ ତଳେ ଲାଗିଲାପରି ଦିଶୁଛି, ବର୍ତ୍ତୁଳ ପୃଥିବୀ ସେଇଠି ଛୁଇଁଛି !

ସ୍ବା—ଓଃ, କେଡ଼େ କଥାଟାଏ ଦେଖିଲ, ତମକୁ ଧନ୍ୟବାଦ । ଏକଥା ଖବର କାଗଜରେ ଛପାଇ ଦେବା ।

ସ୍ତ୍ରୀ—ମାଇପଙ୍କ କଥା ତାଙ୍କୁ ପସନ୍ଦ ହୁଏ ନାହିଁ । ମୁଁ କଣ ମିଛ କହିଲି ? ଚାଲିଲ ଯିବା ଛାତ ଉପରକୁ ସେପରି ଦିଶିବ କି ନାହିଁ ?

ସ୍ବା—ହଁ ହେ, ସେପରି ନ ଦିଶେ ବୋଲି କଣ ମୁଁ ମନା କରୁଛି ? ତମେ ଜାଣ ପୃଥିବୀଟା ଗୋଲ, ଚଟକା ନୁହେଁ । ଯେଉଁଠି ଠିଆ ହୋଇ ଦେଖ, ଜଣାଯିବ, ଯେପରି ଆକାଶଟା ଚାରିଆଡୁ ଆସି ତଳେ ଲାଗି ଯାଇଛି । ଏହାକୁ ଦିଗ୍‌ବଳୟ କହନ୍ତି । ଦୂରକୁ ଚାଲି ଚାଲି ଗଲେ ସେ ମିଶିବା ସ୍ଥାନ ପୁଣି ଦୂରକୁ ଘୁଞ୍ଚିଗଲା ପରି ଦିଶିବ । ଏହିପରି କ୍ରମେ କ୍ରମେ ଯାଅ ଦେଖିବ ଶେଷରେ ଯେଉଁଠୁ ଯାଇଥିଲ ସେହିଠାରେ ପହଞ୍ଚିବ । ପୃଥିବୀରେ ଅନେକ ଦେଶ ଅଛି । ମହାଦେଶ ମଧ୍ୟରେ ଅଫ୍ରିକା,

ଅମେରିକା, ଇଉରୋପ, ଏସିଆ । ଆମ ଘର ଏସିଆ ମହାଦେଶ ମଧ୍ୟରେ, ଭାରତବର୍ଷ ଦେଶରେ, ଓଡ଼ିଶା ପ୍ରଦେଶରେ, ଉତ୍ତର ଓଡ଼ିଶାରେ, ପୁରୀ ଜିଲ୍ଲାରେ ଏବଂ ପୁରୀ କ୍ଷେତ୍ରରେ । ଆମ୍ଭମାନଙ୍କ ରାଜାଙ୍କର ଏ ସବୁ ମହାଦେଶରେ ରାଜ୍ୟ ଅଛି, ତେଣୁ କହନ୍ତି ତାଙ୍କ ରାଜ୍ୟରେ ସୂର୍ଯ୍ୟାସ୍ତ ନାହିଁ, ଆଉ କେତେ ଛୋଟ ଛୋଟ ଦ୍ୱୀପ ଅଛି, ତାର ସଂଖ୍ୟା ଅନେକ । ସେଠାରେ ମଧ୍ୟ ମନୁଷ୍ୟ ଅଛନ୍ତି, ଜୀବଜନ୍ତୁ ଅଛନ୍ତି । ଭୂଗୋଳ ବହି ପଢ଼ିଲେ ସେ ସବୁ କଥା ଜାଣି ପାରିବ ।

ସ୍ତ୍ରୀ—ସାହେବମାନେ କଣ ପୃଥିବୀର ସବୁ ମହାଦେଶକୁ ଯାଉଛନ୍ତି ?

ସ୍ୱା—ହଁ ହେ, ପୃଥିବୀର ସବୁ ଅନ୍ଧ ବନ୍ଧ ତାଙ୍କୁ ଜଣା । ସବୁ ଦେଶ ମହାଦେଶକୁ ଯାଇ ଲୋକଙ୍କୁ ଜୟ କରୁଛନ୍ତି । ଦେଶ ବିଦେଶରୁ ଖାଦ୍ୟଦ୍ରବ୍ୟ ଆପଣା ଦେଶକୁ ନେଇଯାଉଛନ୍ତି । ଏମାନଙ୍କ ପେଟ ଚିନ୍ତା ବେଶୀ ।

ସ୍ତ୍ରୀ—କାହିଁକି ?

ସ୍ୱା—ଏମାନଙ୍କ ରାଜ୍ୟଟି ଛୋଟ । ଲୋକସଂଖ୍ୟା ବେଶୀ । ତାଙ୍କ ଦେଶରେ ବେଶୀ ଖାଦ୍ୟ ଜିନିଷ ମିଳେ ନାହିଁ, ଯାହାକିଛି ଅଳ୍ପ ମିଳେ, ସେଥିରେ ବର୍ଷକ ଚଳେ ନାହିଁ । କେବଳ ତିନିମାସ ଚଳେ, ବାକି ୯ ମାସର ଖାଦ୍ୟ ବିଦେଶରୁ ନେଇ ଚଳନ୍ତି ।

ସ୍ତ୍ରୀ—ବିଦେଶରୁ କିପରି ଆଣନ୍ତି ?

ସ୍ୱା—ଗୁଡ଼ିଏ ଢେର ଦରମା ଆଣନ୍ତି, ବେପାର ବଣିଜ କରି ଢେର ଧନ ଆଣନ୍ତି । ଦେଖୁଛ, ବଜାରରେ ଯେତେ ମନୋହାରୀ ଜିନିଷ ମିଳେ, ସେ ସବୁ ସେ ଦେଶରେ ତିଆରି ହୁଏ । ସେ ସବୁ ଆଣି ଏ ଦେଶରେ ବିକନ୍ତି; ଧାନ, ଚାଉଳ, ଗହମ ପ୍ରଭୃତି ତାଙ୍କ ଦେଶକୁ ନେଇଯାନ୍ତି । ଏମାନେ ବୁଦ୍ଧିବଳରେ କେତେ ନୂଆ

ଜାହାଜ ତିଆରି କରନ୍ତି । କେତେ ପ୍ରକାରର କଳ ତିଆରି କରୁଛନ୍ତି । ମଟର ଦେଖ, ସାଇକଲ ଦେଖ, ଶୂନ୍ୟ ଜାହାଜ ଦେଖ । ସେମାନେ କଳ ସାହାଯ୍ୟରେ ପାଣିରେ ବୁଡ଼ୁଛନ୍ତି, ଆକାଶରେ ଉଡ଼ୁଛନ୍ତି, ମାସକ ବାଟ ଦିନକେ ଯାଉଛନ୍ତି, ଇତ୍ୟାଦି କେତେ କଥା । ବେପାରି ବଣିଜ କରୁ କରୁ କେଉଁ କେଉଁ ରାଜ୍ୟରେ ରଜା ହୋଇ ବସିଯାଉଛନ୍ତି । ରାଜ୍ୟ ନେଲେ ତାକୁ ରକ୍ଷା କରିବାକୁ ନାନା ଉପାୟ କରୁଛନ୍ତି । ଏ ପେଟ ତ ବଡ଼ ଜନ୍ତୁ, ଲୋକଙ୍କୁ ନାନା ଛଟପଟରେ ପକାଉଛି ।

ସ୍ତ୍ରୀ—ସେମାନେ ଗୋରା ଦିଶୁଛନ୍ତି କାହିଁକି ?

ସ୍ୱା—ସେମାନେ ଥଣ୍ଡା ମୁଲକରେ ରହନ୍ତି । ସେଠାରେ ଖରାତେଜ ଊଣା, ଭାରି ଶୀତ, ବରଫ ପଡ଼େ, ତେଣୁ ତାଙ୍କ ବର୍ଣ୍ଣ ଧଳା । ହାତକୁ ଦି ଘଡ଼ି ଥଣ୍ଡା ପାଣିରେ ବୁଡ଼ାଇ ରଖ, ଗୋରା ଦିଶିଯିବ । ଖରାତେଜ ଯେଉଁଠି ନ ପଡ଼ିବ, ସେଠାର ଜିନିଷ ଗୋରା ଦେଖାଯିବ । ଯେଉଁ ଦେଶକୁ ଖରାତେଜ ଯେତେ ବେଶୀ, ସେ ଦେଶ ଲୋକଙ୍କର ବର୍ଣ୍ଣ ସେତେ କଳା ବା ଶ୍ୟାମଳ ।

ସ୍ତ୍ରୀ—ଆମ ଦେଶ ଲୋକେ ସେଠାକୁ ଗଲେ ଏଡ଼େ ଥଣ୍ଡାରେ ଚଳନ୍ତି କିପରି ?

ସ୍ୱା—ଆହେ, "ଯେ ଦେଶେ ଯାଇ, ସେ ଫଳ ଖାଇ" ସେ ଦେଶକୁ ଗଲେ ସେ ଦେଶର ରୀତି ନୀତି ଅନୁସାରେ ଚଳିବ । ସର୍ବଦା ଗରମ ପୋଷାକ ପିନ୍ଧିବ, ସବୁଦିନେ ଗାଧୋଇବ ନାହିଁ । ଯେ ଇଚ୍ଛା କଲା ସେ ମାଂସ ଖାଇବ, ମାଂସ ଖାଇଲେ ଦେହଟା ଗରମ ଥାଏ ।

ସ୍ତ୍ରୀ—ସେଠି ଦିଅଁ ଦେଉଳ ଅଛି ?

ସ୍ୱା—ସେଠାରେ ଦେଉଳ ଅଛି, ମାତ୍ର ଦିଅଁ ନାହାନ୍ତି । ତାଙ୍କ

ଦେଉଳ ଆମ ଦେଉଳ ପରି ନୁହେଁ; ତାଙ୍କ ଦେଉଳ ଗଢ଼ଣ ଅଲଗା । ଘରପରି ଉପରକୁ ଦେଉଳ ଅଗପରି ଚୂଳିଆ ।

ସ୍ତ୍ରୀ—ଦେଉଳ ଅଛି, ଦଅଁ ନାହାନ୍ତି ତାହିଁକି ମ ? ସେମାନେ କାହାକୁ ପୂଜନ୍ତି, କଣ ଘରକୁ ପୂଜନ୍ତି ?

ସ୍ୱାମୀ—ଅହେ, ସେମାନେ ନିରାକାର ପୂଜା କରନ୍ତି । ସେ ଘରେ ରବିବାର ଦିନ ସମସ୍ତେ ଯାଇ ବସନ୍ତି । ହାତ ଯୋଡ଼ି, ଆଖି ବୁଜି, ନିରାକାର ଈଶ୍ୱରଙ୍କୁ ଧ୍ୟାନ କରନ୍ତି । ତାଙ୍କ ଧର୍ମ ଅନୁସାରେ ଦଅଁ ନିରାକାର, ସେମାନେ ମୂର୍ତ୍ତିପୂଜା କରନ୍ତି ନାହିଁ ।

ସ୍ତ୍ରୀ—ଆମ ଜଗନ୍ନାଥଙ୍କ ପରି ଯେବେ ଦଅଁ ନାହାନ୍ତି, ସେ କି ଧର୍ମ ?

ସ୍ୱାମୀ—ଆମ ଜଗନ୍ନାଥ ଆମକୁ ବଡ଼, ତାଙ୍କ ଧର୍ମ ତାଙ୍କୁ ବଡ଼ । ଯେ ଯାହା କହନ୍ତୁ, ସମସ୍ତେ ସେହି ପରମେଶ୍ୱରଙ୍କୁ ଡାକୁଛନ୍ତି । ମୂଳ ତ ଏକ, ରାସ୍ତା ଅନେକ ଥାଇପାରେ, ଯେଉଁ ରାସ୍ତାରେ ଗଲେ ସେହି ଥାନ ମୁଣ୍ଡରେ ତ ପହଞ୍ଚିବ । ଯେତେ ଯେଉଁଆଡ଼େ ପାଣି ଆସୁ, ସେହି ଏକ ସମୁଦ୍ରରେ ପଡ଼ୁଛି ତ । ଈଶ୍ୱରଙ୍କୁ ସାକାର କହ ବା ନିରାକାର କହ, ଈଶ୍ୱରଙ୍କ ପୂଜା ତ କରିବ ।

ସ୍ତ୍ରୀ—ହଁ, ନୁହେ କଅଣ ? ଏତେ ମୂର୍ଖ ତ ଅଛୁ ଆମେ ମାଇପେ କଅଣ ବୁଝିବୁ ?

ସ୍ୱାମୀ— ଜାଣିବା ଉଚିତ । ଅହେ, ପୃଥିବୀକି ଚାହିଁଲେ ଆମେ କେତେ, ଆମଠାରୁ କେତେ ବଡ଼ ବଡ଼ ଧନୀ ଅଛନ୍ତି, କେତେ ବଡ଼ ବଡ଼ ପଣ୍ଡିତ ଅଛନ୍ତି, ଦେଖିଲେ ନିଜକୁ ଲାଜ ମାଡ଼େ । ଆମେ କଅଣ ଦି'ଠ କର ଦିଅକ୍ଷର ପଢ଼ି, ମନେ ମନେ ଭାରି ଗର୍ବ କରୁ; କହୋ, ତା ଉପରକୁ ତା ଉପରକୁ କେତେ ପାହାଚ ଅଛି, ଆମେ କେତେ ତଳେ । ଯେଉଁ ମଠ ବଗିଚା ଦେଖୁଛ, ତାକୁ ଯେ ତିଆରି କରିଛି, ତାର ମିନିଟକୁ ଲକ୍ଷେ ଟଙ୍କା ଆୟ ।

ସ୍ତ୍ରୀ—ଆମ ଦେଶରେ ପୁଣି ତ ଦାଢ଼ା ଭର୍ତ୍ତି ଥିଲେ, ମୁନି ଋଷିମାନେ ଥିଲେ ?

ସ୍ୱାମୀ—ହଁ ଥିଲେ; ଆମ ଦେଶର ସେ କାଳ ବେଳେ ସେ ଦେଶ ଲୋକେ ଅସଭ୍ୟ ଜଙ୍ଗଲୀ ଲୋକ ଥିଲେ । ଏବେ ସେ ସଭ୍ୟ; ଆମକୁ ଅସଭ୍ୟ ବୋଲି କହୁଛନ୍ତି । ସେ କାଳ ଗଲାଣି, ଏବେ ଲକ୍ଷ୍ମୀ ଯାଇ ସେ ଦେଶରେ ବାସ କରୁଛନ୍ତି । ଆଗେ ଆମ ଦେଶରେ ଆମେ ଥିଲେ ରଜା । ଆମ ଦେଶ ଧାନ ଚାଉଳ ଆମକୁ ବଳୁଥିଲା, ବିଦେଶକୁ ଜିନିଷ ଯାଉ ନ ଥିଲା, କି ବିଦେଶରୁ ଜିନିଷ ଆସୁ ନ ଥିଲା । ଏବେ ତ ଆଉ ସେ କାଳ ପଖାଳ ନାହିଁ, ଏବେ ଆମ ଦେଶକୁ ଘରଅଡ଼ ବାଟ ଫିଟିଛି । ପୃଥିବୀର ସବୁ ଦେଶର ଲୋକେ ଆସି ଆମ ଦେଶରୁ ଧନ ନେଇ ଯାଉଛନ୍ତି । ଆମେ କେଉଁ ଦେଶରୁ କିଛି ଆଣି ପାରୁ ନ ଥାଉଁ । ଏବେ ତ ସମସ୍ତଙ୍କ ସଙ୍ଗେ ଝଣ୍ଟା ଭିଡ଼ ଚଳିବାକୁ ପଡ଼ୁଛି । ଯାହାର ବୁଦ୍ଧି ବଳ ବେଶି, ସେ ଜିତୁଛି । ସେମାନେ ଆମ ଦେଶକୁ ଯେପରି ଆସୁଛନ୍ତି, ଆମ ଦେଶର ପିଲାଏ ସେହିପରି ଅନ୍ୟାନ୍ୟ ଦେଶକୁ ଯାଇ, ପାଠ ପଢ଼ି, ନାନା ବିଦ୍ୟା ଶିଖି, ଆମ ଦେଶ ଅନ୍ୟ ଦେଶରୁ କିପରି ଧନ ଆଣି ପାରିବ, ସେପରି କରିବାକୁ ହେବ । ନ ହେଲେ ସେମାନେ ଆମକୁ ମାଡ଼ି ମକଚି ଦଳି ଦେବେ । ଆଉ ଲୋକଙ୍କ ଘରକଣରେ ସାଇତି ରଖିଲେ ଚଳିବ ନାହିଁ । ଜାଲମଣି ଗଲେ, ସେଠାରେ ପଢ଼ି ପାଶ କରି ଆସିଲେ, ଏଠାରେ ମେଜେଷ୍ଟର ଚାକିରି ପାଇଲେ । ଏ ଚାକିରି ସାହେବମାନେ ପାଉଥିଲେ । ଆମ ଦେଶରେ ସେପରି ପଢ଼ିବାକୁ ସ୍କୁଲ ନାହିଁ । ସେଠାରେ ଯାଇ ପଢ଼ିଲେ, ସାହେବ ଲୋକଙ୍କ ସଙ୍ଗେ ଟକ୍କର ଦେଇ ପାଶ କଲେ । ଏବେ ହାକିମ ହୋଇ

ବସିଲେ । ତାଙ୍କର କ’ଣ ବୟସ ବେଶି ? ବୟସ ମୋଟେ କୋଡ଼ିଏ ବାଇଶି । ଓଡ଼ିଆ ପିଲା, ଆମ ଗାଁ ପାଖରେ ତାଙ୍କ ଘର । ଏଠୁ ବି. ଏ. ପାଶକଲେ ଅଠର ଊଣିଶି ବର୍ଷ ବୟସରେ, ଏଠୁ ସାହସ କରି ଗଲେ । ସାତ ସମୁଦ୍ର ତେର ନଈ ପାର ହେଲେ ବିଲାତରେ ପଢ଼ିଲେ, ସେଠାରେ ପାଶ କଲେ, ଓଡ଼ିଶା, ଓଡ଼ିଆ ଜାତି ନାମ ରଖିଲେ । ପୁଅ ଜନ୍ମ କରିବ ତ ଏହିପରି ପୁଅ ଜନ୍ମ କରିବ । ଏବେ ତାଙ୍କୁ ଲୋକେ ଧନ୍ୟ ଧନ୍ୟ କହୁଛନ୍ତି । ମା ବାପଙ୍କ ମନ କୁଣ୍ଢେ । ଦେଶବାସୀଙ୍କ ମନ କୁଣ୍ଢେ ।

---

## ନବମ ପରିଚ୍ଛେଦ

ସ୍ୱା—ମା ଠାରୁ ଦୁଧ ଖାଇବାବେଳୁ ପିଲାଙ୍କୁ ଶିକ୍ଷା ଦେବ । ଯେତେ ବୟସ ବଢ଼ୁଥିବ, ତେତେ ଶିକ୍ଷା ବଢ଼ୁଥିବ ।

ସ୍ତ୍ରୀ—ଏ କି କଥା ମ, ଦୁଧ ଖାଇଲାବେଳୁ କିପରି ବହି ପଢ଼ିବ ମ ? ପିଲାଟା ଦୁଧ ଖାଇଲାବେଳୁ ପାଠ ପଢ଼ିବ କିପରି ? ତା ବୁଦ୍ଧି ବିବେକ ହେଲେ ସିନା ପଢ଼ିବ ? ଆଉ କଣ ଦୁଧପିଆ ପିଲାଟା ଗୁରୁଶାଳୀକି ଯିବ ?

ସ୍ୱା—କଥାଟା ବେଶ୍ ବୁଝିଲ ଦେଖୁଛି ! ଆହେ, ଖାଲି କଣ ଗୁରୁଶାଳୀକି ଗଲେ ଶିକ୍ଷା ହେବ ? ପିଲା କିପରି ଜାଣ, କୁମ୍ଭାର ଯେଉଁ ହାଣ୍ଡି ଗଢ଼େ ସେହିପରି । କଞ୍ଚା ଥିବାବେଳେ ହାଣ୍ଡିକି ଯେପରି ଚାହିଁ ତା ଆକାର କରିବାକୁ ଚାହିଁବ ସେହିପରି କରିବ । ହାଣ୍ଡି ପୋଡ଼ା ସରିଲେ ତା ଉପରେ କୌଣସି ପ୍ରକାର କାରିଗରି ହୋଇ ପାରିବ ନାହିଁ । ସେହିପରି ପିଲାଙ୍କୁ ଯେପରି ଶିଖାଇବ,

ପିଲା ସେପରି ଶିଖିବ । ଆମ ଦେଶ ମାଇପେ ଏ କଥା ବୁଝନ୍ତି ନାହିଁ । ପିଲାକୁ ଟେକିବପରି କରି ଖରାପ କରନ୍ତି । ପିଲାଙ୍କୁ ନାନାମିଛ କଥା କହି, ଭୟ ଦେଖାଇ, ଶାସନ କରନ୍ତି । ଫଳରେ ପିଲାଙ୍କ ମନରେ ସେହି କଥା ଭୟ ରହିଯାଏ । ପିଲାମାନେ ମଧ୍ୟ ମିଛକଥା କହନ୍ତି । ଅଭ୍ୟାସ ବେଳ ବଳି ପଡ଼ିଲେ, ପୁଣି ସୁଧାରିବାକୁ ଚାହିଁଲେ ପାରନ୍ତି ନାହିଁ । ସେଥିପାଇଁ କଥା ଅଛି—ସାନ ଦିନରୁ କାନ ବନ୍ଧିଲେ ବଡ଼ ଦିନକୁ ନଡ଼ିଆ, ଯାହା ନାହିଁ ବାଡ଼ିଲେ, ତାହା ନାହିଁ ବାଡ଼ିଲେ ଭାଙ୍ଗିଲେ, ଲେଉଟି ଗୁଡ଼ କହୁଣୀକି କୋହିଗଲେ ଉପାୟ ନ ଥାଏ । ସାନ ସାନ ପିଲାଙ୍କୁ ଯାହା ଶିଖାଇଦେବ ସେ ଅତି ଚଞ୍ଚଳ ତାହା ଶିଖିବେ । ପିଲାଦିନରୁ ଯେପରି ଭାବ ତାଙ୍କୁ ଦେବ, ସେମାନେ ସେହି ଭାବରେ ବଢ଼ିବେ । ଅନ୍ଧାର ଗୁଡ଼ୁଗୁଡ଼ୁ ଭୟ ଯାବଜ୍ଜୀବନ ପିଲା ମନରେ ଥାଏ । ଭଲ କଥା, ସାହସ କଥା, ବୀରତ୍ୱ କଥା, ଧର୍ମକଥାମାନ ପିଲାଙ୍କ କାନରେ ବେଳୁଁ ପଡ଼ିଲେ ସେମାନଙ୍କ ମନ ସେହି ଦିଗକୁ ଯିବ । ତେଣୁ ଦୁଧ ଦେଇ ଶୋଇଲେ କଥା-ବେଳେ ମଧ୍ୟ ଭଲ କଥା କହି ଶୋଇ କରିବାକୁ ହେବ । ପିଲାଦିନୁ ଛାଡ଼ି ଦେଇ, ବଡ଼ ଦିନକୁ ବାଉଁଶ ପିଟା କଲେ କଣ ହେବ ? ବାଡ଼ିଆ ପିଟାରେ କିଛି ଫଳ ନାହିଁ ।

ସ୍ତ୍ରୀ— ଆଚ୍ଛା, ପିଲାଦିନୁ କିପରି କଣ ଶିଖାଇବାକୁ ହୁଏ କହିଲ ?

ସ୍ୱା—ଆଗ ପିଲାକୁ ଦୁଧ ଦେଉଥିବେଳେ, ଭାତ ଖୁଆଉଥିବେଳେ, ଶୁଆଉଥିବେଳେ, ଉଠାଉଥିବେଳେ, ଅଡ଼ୁଆ ହେଲେ, ବୁଝାଉଥିବେଳେ, ମା ମାନେ କେତେପ୍ରକାର ଗୀତ ବୋଲନ୍ତି, କିନ୍ତୁ ଅନେକ ସମୟରେ ଯେଉଁ ଗୀତ ବୋଲନ୍ତି ସେଗୁଡ଼ାକରେ କିଛି ଲାଭ ନ ଥାଏ । ଅନର୍ଥକ ଗୀତ ବୋଲନ୍ତି । ଭଲ ଭଲ ଗୀତ ଗାଉଥିଲେ ପିଲା ମନରେ ଭଲ ଭାବ ହୁଅନ୍ତା ।

ସ୍ତ୍ରୀ—ଆମକୁ ଯାହା ଜଣାଥାଏ, ତାହା ବୋଲୁଁ । ଭଲ ଭଲ ଗୀତ ଦେଉ ନାହଁ ।

ସ୍ୱାମୀ—ସ୍ତ୍ରୀଅମାନଙ୍କ ପାଇଁ ଅଲଗା ଗୀତ, ପୁଅମାନଙ୍କ ପାଇଁ ଅଲଗା ଗୀତ ହେବା ଆବଶ୍ୟକ ।

—ସ୍ତ୍ରୀଅମାନଙ୍କ ପାଇଁ—

ଉଠ ଲୋ ଉଠ ଲୋ ବାଇଅଣି ମୋର ରାତି ପାହୁ ଖରା ପଡ଼ିଲାଣି ।
ଅଧିକ ଶୋଇଲେ ଗୁଣ ପଳାଇବେ ତୋହଠାରୁ ଲକ୍ଷ୍ମୀ ଠାକୁରାଣୀ ।
ତୁ ପରଧନ ଲୋ ଗୃହଲକ୍ଷ୍ମୀ ହେବୁ ରାତି ଥାଉ ଉଠି ଖରଡରେ ।
ବାସିଅଳ୍ପତ ତୁ ସାର ଦେଉଥିବୁ ନ କହୁବ କେହୁ ପଦେ ହେଲେ ।
ଘରକୁ ଘରଣୀ ହେବୁ ତୁ ଲୋ ଧନ ଅଳସୋଇ ହେଲେ ଅସୁନ୍ଦର ।
ତୋ ଶାଶୁ ନଣନ୍ଦ ଟିକ୍କି ମରୁଥିବେ ନ ହେଲେ କାମରେ ତତ୍ପର ।
ଦେବୀ ସୁଲକ୍ଷଣୀ ଘର ମାଲିକାଣୀ ଅନ୍ନପୂର୍ଣ୍ଣା ମାଗୋ ହେବୁ ତୁହୁ ।
ଶୋଷୀ ଭୋକୀ ଦେଖି ଅନ୍ନ ଦେଉଥିବୁ ଭଲେ ହେଲେ ନ ଶୁଣିବେ କେହୁ
ସୀତା ଦମୟନ୍ତୀ ସାବିତ୍ରୀ ଶ୍ରୀମତୀ ଲକ୍ଷ୍ମୀ ସରସ୍ୱତୀ ପରି ହେଲେ ।
ଜାଗିବ ଭାରତ ଜାଗିବ ଉତ୍କଳ ଜାଗିବ ପୁଣି ଧରଣୀ ତଳେ ।

---

କିପାଇଁ ଅଜାଡ ହେଉ ବାଇଅଣି କାନ୍ଦ କାନ୍ଦ ଲୁହ ଯାଏ ବହି ।
ଚନ୍ଦ୍ରମା ବଦନ ହେଲାଣି ମଳିନ କିପାଇଁ କାନ୍ଦୁ ଅଜାଡ ହୋଇ ।
ଇତର ପିଲାଙ୍କ ପରି ତୁ କାନ୍ଦୁଛୁ ଦେଖିଲେ ହସିବେ ଲୋକମାନେ ।
ଟିଇ ଦେ ପିଇ ଦେ ଜଗୁ ଶାମୁକାଏ ପିଇଦେ ଅତ ହରଷମନେ ।
ପିଇ ଦେଏ ଦୁଧ ଖାଇ ଦେଏ ଭାତ ଦଉଡ଼ି ଧପଡ଼ି ଖେଳ ଖେଳ ।
ଉର ଭିତ୍ତି ଛାଡ଼ି କାମ କର ମା ଗୋ ଦେହରେ ହୋଇବ ବେଶୀ ବଳ ।

---

ମୋ ଚନ୍ଦ୍ରବଦନ ଧନ ଗୁଣମଣି ତାହାଙ୍କ ମଳିନ ଚନ୍ଦ୍ରମୁଖ ।
ବାଇଥଣୀ ପଣ୍ଡ ହେଉଛନ୍ତି ତାହାଙ୍କ ମନରେ କାହିଁକି ନାହିଁ ସୁଖ ।
ଚନ୍ଦ୍ରାବଳୀଙ୍କ ପରି ଜୀବଧନ ମୋର ପାଠ ପଢ଼ିବୁ ତୁ ମନ ଦେଇ ।
ସରସ୍ୱତୀ ପରି ପଣ୍ଡିତା ହେବୁ ତୁ ଦିନ ନେବୁ ପ୍ରଭୁଗୁଣ ଗାଇ ।
ଅନ୍ନପୂର୍ଣ୍ଣା ପରି ଶୋଷୀ ଭୋକୀ ଦେଖି ଦେବୁ ଅନ୍ନଦାନ ଗୁଣମୟୀ ।
ଅତିଥି ସେବାରେ ଦେଇଥିବୁ ମନ ଯେବେ ତୁ ନିଜେ କ୍ଷୁଧାତୁର ରହି ।

---

## ନବମ ପରିଚ୍ଛେଦ ।

—ପୁଅଙ୍କପାଇଁ—

ଉଠ ରେ ଉଠ ରେ ବାପୁଧନ ମୋର ଉଇଁ ଅଛିଲେଣି ଦିନମଣି ।
ଦିନରେ ଶୋଇଲେ ଲକ୍ଷ୍ମୀ ଛାଡ଼ିଯିବେ ପାଠପଢ଼ା ବେଳ ହୋଇଗଲାଣି ।
ସାଥିପିଲା ଅସି ପାଠ ପଢ଼ିଲେଣି ତୋତେ ପୁଣି ଡାକି ଆସିଲେଣି ।
ନ ଗଲେ ବେଳ ହୋଇଗଲେ ଅବେଳ ତୋତେ ଛାଡ଼ି ପଢ଼ି ଯିବେ ପୁଣି ।
ନ କର ତୁ ମଠ ବେଗେ ପଢ଼ ପାଠ ସଭାରେ କହିବେ ଧନ୍ୟ ଧନ୍ୟ ।
ଶୁଣି ମୋର ମନ କେତେ ହୋଇଯିବ ହେଲେ ତୁ ପଣ୍ଡିତ-ମଧ୍ୟେ ଗଣ୍ୟ ।
ବିଦ୍ୟାଠାରୁ ବଳି କି ଅଛି ଭୂଷଣ ପୁରୁଷ ପୁଅର ଅରେ ଧନ ।
ଜଗତରେ ପୂଜା ପାଇବୁ ଯେବେ ତେ ପାଠରେ ତୁ ବେଗେ ଦେଇ ମନ ।
ଇତର ବାଳକମାନଙ୍କ ସଙ୍ଗରେ ନ ଖେଳିବୁ କେବେଁ ବାପୁମଣି ।
ମନ ଦେଇ ପାଠ ପଢ଼ ଅରେ ଧନ ପ୍ରଶଂସିବେ ସକଳେ ଶୁଣି ।

---

ଉଠ ଉଠ ବାବୁ ନ କର ତୁ ମଠ ଉଠ ରେ ଉଠ ରେ ବୀରମଣି ।
ପଢ଼ ବୀର ଗାଥା ଶୁଣ ବୀରକଥା ବୀର ଗୁଣେ ହୁଅ ଗୁଣମଣି ।

ବୀର ସୁତ ତୁହି ବୀରପରି ହୋଇ କାମ କର ରେ ମୋ ବାପୁମଣି ।
ଅଳସୁଆ ହୋଇ ଶୋଇ ରହ ନାହିଁ ହସିବେ ବଇରୀ ଏହା ଶୁଣି ।
ତୋ ପୂର୍ବପୁରୁଷ ଅରଜିଲେ ଯଶ କେତେ କେତେ ରାଜ୍ୟ ଥିଲେ ଜିଣି ।
ଗଙ୍ଗାଠାରୁ ଗୋଦାବରୀପାଏ ଦେଶ ଥିଲା ଉତ୍କଳର ଧନମଣି ।
ଉଡ଼ାଇଣ ଧ୍ୱଜା ବଜାଇଣ ବାଜା ବୀର ଦର୍ପେ କମ୍ପାଇ ମେଦନୀ ।
ହେତୁ କଣେ ତୋର ଜନମ କୁମର ପଚ୍ଛଘୁଞ୍ଚା ଦେବୁ ନାହିଁ ଶୁଣି ।
ବୀରର ଲକ୍ଷଣ ମାରିବ ମରିବ ପଚ୍ଛଘୁଞ୍ଚାକୁ ଦେ ମୁଣ୍ଡ ମଣି ।
ସେହିପରି କାମ କରିବୁ କୁମର ମୋ ବଣେଷ୍ଟ ତଲେ ଧନମଣି ।

---

ଜନମି ଅଛୁ ତୁ ଓଡ଼ିଶା ଦେଶରେ ଓଡ଼ିଶା ତୋର ଜନମ-ଭୂଇଁ ।
ଜନନୀ ଜଠରୁ ପଡ଼ିଲୁ ଯେକାଳେ ଅଗେ ତା କୋଳରେ ଥିଲୁ ଶୋଇ
ଜନନୀ ଜନମ-ଭୂଇଁ ତୋ ଦେବତା ସ୍ୱରଗରୁ ବଳି ପୁଣ୍ୟ ସ୍ଥାନ ।
ବେଳ ପଡ଼ିଗଲେ ସେ ଦୁହିଁଙ୍କ ପାଇଁ ଆନନ୍ଦରେ ଦେବୁ ତୋ ପରାଣ ।
ଜନମଭୂଇଁର ପୂତ ଧୂଳି କଣା ଅଟଇ ପବିତ୍ର ଶିରେ ଘେନ ।
ସେହି ମାଟି ଦିଏ ତୋତେ ଅନ୍ନ ମୁଠି ତାକୁ ନ ମଣିବୁ କେବେ ସାନ ।
ଜନମ-ଭୂଇଁର ଯଶ ଗଉରବ ଶୁଣି ଫୁଲି ଉଠୁଥିବ ଛାତି ।
ମୋ ଜନମ-ଭୂଇଁଠାରୁ କିଏ ବଡ଼ ଭାବି ଭାବି ନୋହୁ ଦିନରାତି ।
ନିଜ ଦେଶ ଅନ୍ନ ନିଜର ବସନ ନିଜ ଦେଶ ଯାହା ଯାହା ଦେବ ।
ତାହା ଖାଇ ପିନ୍ଧି ଦେଶହିତ ପାଇଁ କାମ କଲେ ତୋର ଯଶ ହେବ ।
କେବେହେଁ ନିରାଶ ନ ହେବୁ କୁମର ଅସାଧ୍ୟ କିଛିହିଁ ନାହିଁ ତୋର ।
ମାନବ ଯା କରେ ତାହା କରିପାରୁ ମନେ ନ ରଖିବୁ ତିଳେ ଡର ।
ପ୍ରଭୁ ପାଦପଦ୍ମେ ଚିତ୍ତ ଦେଇଥିବୁ ବିଶ୍ୱାସ ରଖି କରିବୁ କାମ ।
ରାମ ନାମ ଧରି ବୀର ହନୁମାନ ପାରିବାର ଡେଇଁ ଥିଲା ଜାଣ ।

---

ଏହିପରି ନାନା କଥା ପିଲାମାନଙ୍କ କାନରେ ପଶାଇଲେ ପିଲା ହୃଦୟରେ ସେ ସବୁ ଭାବ ଅଙ୍କିତ ହୋଇଯିବ । ବଡ଼ ହେଲା ପରେ ବହୁତ କଥା ଜାଣି ଥିବ । ପିଲା କାନ୍ଦିଲେ, ଅନାଥ ହେଲେ ମାଆ ମାନେ ମାରନ୍ତି, ବିରକ୍ତ ହୋଇ ଗାଳି ମନ୍ଦ କରନ୍ତି । ଏହା ଅତି ଖରାପ ବ୍ୟବହାର । ଏପରି କଲେ ପିଲା ଖରାପ ହୁଏ । ପିଲାର ଯେତେବେଳେ ଯେଉଁ ଅଭାବ ହୁଏ, ସେଥିପାଇଁ ସେ କାନ୍ଦେ । ଅତି ପିଲାମାନେ କାନ୍ଦିବା ବ୍ୟତୀତ ଅନ୍ୟ କିଛି ପ୍ରକାଶ କରିପାରନ୍ତି ନାହିଁ । ସୁତରାଂ ଯେତେବେଳେ ଯେଉଁ କାନ୍ଦର କି ଅର୍ଥ ସେ କଥା ବୁଝି, ତାର ଅଭାବ ପୂରଣ କଲେ ସେ ଆଉ କାନ୍ଦେ ନାହିଁ, ତା ସୁଖରେ ସେ ଖେଳିବ । ମାରଧର କଲେ ପିଲାଏ ଗାଳିଆ ଜିଦ୍‌ଖୋର ହୁଅନ୍ତି, ଆଉ କଥା ମାନନ୍ତି ନାହିଁ । କଥା କଥାକେ ଜବାବ ଦିଅନ୍ତି । ପିଲାଙ୍କୁ ଯାହା କହିବ ସେ ତାହା କହନ୍ତି । ତେଣୁ ପିଲାଙ୍କୁ ମନ୍ଦ କଥା କହିବ ନାହିଁ । ସେ ମନ୍ଦ କଥା ଶୁଣିଲେ ମନ୍ଦ କଥା କହିବ, ଡରିଗ କଥା ଶୁଣିଲେ ଡରିଯିବ, ସାହସ କଥା ଶୁଣିଲେ ସାହସୀ ହେବ, ବୀର କଥା ଶୁଣିଲେ ବୀର ହେବ; ପାପ କଥା ଶୁଣିଲେ ପାପ ଆଡ଼କୁ ମନ ଯିବ । ପିଲାଙ୍କୁ ଭଲ ମଣିଷ କରିବା ସହଜ କଥା ନୁହେଁ । ଚିଡ଼ିଲେ ରାଗିଲେ, ବିରକ୍ତ ହେଲେ ଚଳିବ ନାହିଁ । ସବୁ କାର୍ଯ୍ୟ ମନ ଆନନ୍ଦରେ କରିବାକୁ ହେବ । ସଂସାର ପ୍ରତି ବିରକ୍ତ ହେଲେ ସଂସାର ତୁମ ପ୍ରତି ବିରକ୍ତ ହେବ । ଘରେ ପିଲାପିଲି ହେଲେ ତାଙ୍କ ଜଞ୍ଜାଳ ଆନନ୍ଦରେ ନ ସହି ବିରକ୍ତ ହେଲେ ଚଳିବ କିପରି ? ସବୁ ଆନନ୍ଦରେ କର, ଫଳରେ ଆନନ୍ଦ ଲାଭ କରିବ । ବିରକ୍ତ ହେଲେ ନିରାନନ୍ଦରେ କାଳ ଯିବ ।

ସ୍ତ୍ରୀ—ହଁ, ଯାହା କହୁଛ ସତ, ମାଆ ଖାଲି କଣ ମା ବାପଙ୍କ ଦୋଷରୁ ପିଲା ଖରାପ ହୁଏ ? ଯାହାର ଯେମନ୍ତ ସ୍ୱଭାବ, ଗୁରୁ ବଚନେ କିସ ହେବ । ଏ କଥା ତ ଅଛି ।

ସ୍ତ୍ରୀ—କଥା ଅଛି "ଅତୀତ୍ୟ ହି ଗୁଣାନ୍ ସର୍ବାନ୍ ସ୍ୱଭାବେ ମୂର୍ଦ୍ଧ୍ନି ବର୍ତ୍ତତେ" ଅର୍ଥାତ୍ ସବୁଗୁଣକୁ ଅତିକ୍ରମ କରି ସ୍ୱଭାବ ମୁଣ୍ଡ ଉପରେ ରହେ । ଏ ତ ଗୋଟାଏ କାରଣ; ମାତ୍ର ଅନ୍ୟର କଥା ଅଛି "ସଂସର୍ଗଜା ଦୋଷଗୁଣା ଭବନ୍ତି ।" ସଂସର୍ଗ ହେତୁ ଦୋଷ-ଗୁଣମାନ ଜନ୍ମ ହୁଅନ୍ତି । ଯେପରି ସଂସର୍ଗରେ ରହୁଚ, ଯାହାଙ୍କ ସଂସର୍ଗରେ ରହୁବ; ସେମାନଙ୍କ ଦୋଷ ଗୁଣ ପିଲା ଶିଖିବ । ସେହି ହେତୁ ମା ବାପ ଯେପରି ପିଲାକୁ ବଢ଼ାଇବେ, ପିଲା ସେପରି ବଢ଼ିବ । ଅତି ଶିଶୁ ସମୟରୁ ପିଲା ଭଲ ହେବ ଏ କଥା ମାଆମାନେ ବୁଝନ୍ତି ନାହିଁ । ପୁତ୍ର କନ୍ୟାଙ୍କୁ ଅତି ସ୍ନେହହେତୁ ଖେଳିବସର କରିଦିଅନ୍ତି, ହେଉ ହେଲେ ଭଲ କରିବ ବୋଲି ମନବୋଧ କରନ୍ତି । ଫଳରେ ପିଲାଟା ସ୍ୱେଚ୍ଛାଗ୍ରସ୍ତ ହୋଇ ପଡ଼େ । ପିଲା ଖରାପ ହେଲେ ଦୁଃଖ କରନ୍ତି; ମାତ୍ର ପିଲାକୁ ଭଲ ଶିକ୍ଷା ଦେବାକୁ ଚିନ୍ତା କରନ୍ତି ନାହିଁ ।

ସ୍ୱା—ଯାହାଙ୍କର ଟଙ୍କା ପଇସା ନାହିଁ, ସେ ପୁଅକୁ କିପରି ପାଠ ପଢ଼ାଇବ ?

ସ୍ତ୍ରୀ—ଅହେ, ଖାଲି କଣ ଗୁହାଳୀ ସ୍କୁଲକୁ ଗଲେ ପିଲା ପଣ୍ଡିତ ହେବ ? ଘରେ ଶିକ୍ଷା ଦେବାପାଇଁ ତ ପଇସା ଲାଗିବ ନାହିଁ । ଘରେ ପିଲାଙ୍କୁ ଶିକ୍ଷା ଦେଲେ ଚରିତ୍ର ଭଲ ହେବ । ଯାହାର ଚରିତ୍ର ଭଲ ହେବ, ସେ ଭଲ ମନୁଷ୍ୟ ହେବ । ଭଲ ଚରିତ୍ରହିଁ ଲୋକର ପ୍ରକୃତ ଅଳଙ୍କାର । ସେଥିଲାଗି କଥା ଅଛି, "ଗୁଣ୍ଠଘର ପୁଅ ଗୁଣ୍ଠ, ଚୋରଘର ପୁଅ ଚୋର" ଅର୍ଥାତ୍ ଘରେ ଯେପରି ଶିକ୍ଷା ପାଇବ ସେପରି ହେବ । ଯାହାର ଘର ଶିକ୍ଷାର ଠିକଣା ନାହିଁ, ତାର ସବୁ ଭୁଲ୍ ।

ସ୍ତ୍ରୀ—ପିଲା କପାଳେ ଯାହା ଥିବ ତାହା ହେବ ନା କହିଲେ କଣ ହେବ ? ଯାହାର ଗୁଣ ଥିବ ବଳେ ଫୁଟି ବାହାରିବ ।

ସ୍ୱାମୀ—ତମକୁ ଥରେ ଏ କପାଳ କଥା କହିଥିଲି । କାଲ କର୍ମଠ କପାଳ, କପାଳ କଣ ଗଛରେ ଫଳୁଛି ? ତମ ସନ୍ତାନ ତ କେବଳ ତମର ନୁହେଁ—ସେ ଜାତିର ଜଣେ । ତା ଭଲ ମନ୍ଦ ଉପରେ ଦେଶର, ଜାତିର ଭଲ ମନ୍ଦ ନିର୍ଭର କରେ । ତମେ ସେହିପରି କେବଳ ପୁଅର ମାତା ନୁହଁ, ଦେଶର ମାତା । ଦେଶର ଭଲ, ମନ୍ଦ, ଜାତିର ଭଲ, ମନ୍ଦ ତମ ହାତରେ ନିର୍ଭର କରେ । ମାତାମାନଙ୍କ ଉପରେ ଦେଶର ଗୁରୁ ଦାୟିତ୍ୱ ଅଛି । ତମେ ମାତାମାନେ ସେ କଥା ବୁଝି ସୁଝି କାମ କରିବା ଉଚିତ ।

ସ୍ତ୍ରୀ—ଆମ ହାତରେ କଣ ହେବ ମ ? ଆମେ ତ ହାଣ୍ଡିଶାଳ ଲୋକ, ଆମଦେଇ କି ଉନ୍ନତି ହେବ ?

ସ୍ୱାମୀ—ଅଗୋ, ହାଣ୍ଡିଶାଳଟା କଣ ଖରାପ ସ୍ଥାନ କି ? ହାଣ୍ଡିଶାଳରେ ତ ମଣିଷର ଜୀବନ । ଖାଇଲେ ସିନା ଜୀବନ ରହିବ ! ଆଗ ଜୀବନ ରକ୍ଷା, ପଛେ ଅନ୍ୟ କଥା । ଭଗବାନ ତମମାନଙ୍କ ହାତେ ହାଣ୍ଡିଶାଳଟି ଦେଇ ଅନପୂର୍ଣ୍ଣା କରି ଦେଇଛନ୍ତି । ନିଜ ହସ୍ତରେ ଅନ୍ନ ପାକକରି ଲୋକଙ୍କୁ ବିତରଣ କଲାବେଳେ ମନରେ କି ଆନନ୍ଦ ହେଉ ନ ଥିବ ! ସେହି ହାଣ୍ଡିଶାଳେ ତୁମେ ଯାହା କରିପାରି, ତହିଁରେ ମଣିଷ ମଣିଷ ହେବ । ମା, ମାଈପ ଭଲ ଶିକ୍ଷା ଦେଲେ ମଣିଷ ମଣିଷ ହେବ । ହାଣ୍ଡିଶାଳ କୁମ୍ଭାରଶାଳ, ସେଠାରେ ହାଣ୍ଡି ଗଢ଼ା କାମ ଭଲ ହୁଏ । ମାତା ଯେବେ ହାଣ୍ଡିଶାଳରେ ଥାଇ ପିଲାକୁ ଗଢ଼ି ଦେଇଥିବ, ତେବେ ସେ ଜଗତରେ ଶ୍ରେଷ୍ଠ ପୁତ୍ର ହେବ । ପ୍ରଥମ କଥା ଜୀବନ

ରକ୍ଷା, ଖାଦ୍ୟପେୟ ଭଲ ହେଲେ ଦେହ ସୁସ୍ଥ ସବଳ ହେବ । ଖାଦ୍ୟ ଉପରେ ସୁସ୍ଥତା ଅଧିକାଂଶ ପରିମାଣରେ ନିର୍ଭର କରେ । ଖାଦ୍ୟ ଦୋଷରୁ ନାନାରୋଗ ଜନ୍ମେ । ଦେହର ଖାଦ୍ୟ ତ ମା ହାତରେ ! ଠିକ୍ ସମୟରେ ଖାଇବ, ଉଚିତ ପରିମାଣରେ ଖାଇବ, ସ୍ୱାସ୍ଥ୍ୟ ସବଳକର ପଦାର୍ଥ ଖାଇବ, ଇତ୍ୟାଦି ବିଷୟ ଲାଗି ମାତା ଦାୟୀ । ସ୍ୱାସ୍ଥ୍ୟ ଭଲ ନ ହେଲେ କି ପାଠ ପଢ଼ିବ ? ନିଜପାଇଁ କଣ କରିପାରିବ ବା ଦେଶପାଇଁ କଣ କରିପାରିବ ରୋଗୀ ହେଲେ ତ ଅକାମୀ ହୋଇଗଲ ?

ସ୍ତ୍ରୀ—ରୋଗ ହେଲେ ଡାକ୍ତର, ବୈଦ୍ୟ ଔଷଧ ଦେବେ ସିନା, ଆମେ କଣ କରିବୁ ?

ସ୍ୱା—ଅହେ, ମା ଯେବେ ରୋଗକଥା କିଛି ଜାଣିଥିବ ତେବେ ସବୁବେଳେ ବୈଦ୍ୟଙ୍କୁ ଡାକିବାକୁ ପଡ଼ିବ ନାହିଁ । ରୋଗ ନ ହେବ ଯେପରି, ସେପରି ଚେଷ୍ଟା ମା ହାତରେ । ଅନିୟମରେ ଚଳିବା, ଅତ୍ୟଧିକ ଆହାର କରିବା, ଅସମୟରେ ଖାଇବା ହେତୁ ଅନେକ ରୋଗ ଜନ୍ମେ । ଏ ସବୁ ପ୍ରତି ମା ନଜର ଦେଲେ ରୋଗ ହେବାର ଆଶଙ୍କା ନ ଥିବ । ପଶୁପକ୍ଷୀଙ୍କର ମଣିଷପରି ଏତେ ରୋଗ ହୁଏ ନାହିଁ ।

ସ୍ତ୍ରୀ—କାହିଁକି ମ ? ପଶୁ ପକ୍ଷୀଙ୍କ ବୁଦ୍ଧି କଣ ମଣିଷର ବୁଦ୍ଧିଠାରୁ ବେଶୀ ? ମଣିଷ ତ ସବୁଠାରୁ ଶ୍ରେଷ୍ଠ ପ୍ରାଣୀ, ତାର କାହିଁକି ବେଶୀ ରୋଗ ?

ସ୍ୱା—ପଶୁ ପକ୍ଷୀ ନିଜ ପ୍ରକୃତି ଅନୁସାରେ ଚଳନ୍ତି, ମଣିଷ ଆପଣା ବୁଦ୍ଧିରେ ଚଳେ । ମଣିଷର ବିଚାର କରିବାର କ୍ଷମତା ଅଛି । ଏ କାମ କରିବି କି ନ କରିବି, ଏ କାମ ଭଲ କି ମନ୍ଦ, ଏ ସବୁ ବିଚାର କରି ମନୁଷ୍ୟ ଚଳେ । ଯାକୁ କହନ୍ତି ସ୍ୱାଧୀନତା

ରୋଗ ହେଲେ ଖାଇବା ନ ଖାଇବା ମୋ ହାତର କଥା—ଖାଇଲେ ଖାଇଲି, ନ ଖାଇଲେ ନ ଖାଇଲି; ଇଚ୍ଛା କଲେ ଓଳିଏ ଉପାସେ ରହିଗଲି । ମାତ୍ର ପଶୁ ପକ୍ଷୀ ଏପରି ବିଚାର କରିପାରନ୍ତି ନାହିଁ । ପ୍ରକୃତି ଯାହା କରାଏ, ପଶୁପକ୍ଷୀ ତାହା କରନ୍ତି । ବିଚାର କରିବାର ସ୍ୱାଧୀନତା ସେମାନଙ୍କର ନାହିଁ । ସ୍ୱାଧୀନତା ଯେଉଁଠି ଅତ୍ୟାଚାର ସେଇଠି, ଅତ୍ୟାଚାର ଯେଉଁଠି ଦଣ୍ଡ ସେଇଠି । ରୋଗ କଣ କି ? ପ୍ରକୃତିର ନିୟମ ନ ମାନି ଚାଲିଲେ ଯେଉଁ ଦଣ୍ଡ ମିଳେ, ତାହାହିଁ ରୋଗ । ପଶୁପକ୍ଷୀ ପ୍ରକୃତି ଅନୁସାରେ ଯେତେବେଳେ ଆବଶ୍ୟକ ହୁଏ ଖାଆନ୍ତି, ଶୁଅନ୍ତି, ମାତ୍ର ମଣିଷ ଇଚ୍ଛା କଲେ ଖାଇବାର ବେଳ ଗଡ଼ିଯାଏ, ଶୋଇବା ବେଳ ଗଡ଼ିଯାଏ । ମାତ୍ର ଦେଖି ଦେଖି ରାତି ପାହିଗଲା, ଗଳ୍ପ କରୁ କରୁ ଖାଇବା ବେଳ ଗଡ଼ିଗଲା; ଏହିପରି ଅନେକ ନିୟମ ବ୍ୟତିକ୍ରମ ହୁଏ । ପ୍ରକୃତି ବିରୁଦ୍ଧରେ କାର୍ଯ୍ୟ ହେଲା । ଫଳରେ ରୋଗ ହୁଏ, ଅସୁସ୍ଥତା ବଢ଼େ । ଆହାର, ନିଦ୍ରା, ଶ୍ରମ, ଜଳବାୟୁ ଏଗୁଡ଼ିକ ଶରୀରର ଉପକରଣ । ସୁତରାଂ ଠିକ୍ ସମୟରେ ଖାଇବା, ଠିକ ସମୟରେ ଶୋଇବା ପ୍ରଭୃତି ନିୟମରେ ନ ଚାଲିଲେ ଦଣ୍ଡ ମିଳିବ । ପିଲାଙ୍କୁ ଧାରା ବାନ୍ଧିକି ଖାଇବାକୁ ଦେବ । ଧାରା ବେଧାରା ହେଲେ ଶରୀର ଅସୁସ୍ଥ ହେବ । ଖାଇବା ଦୋଷରୁ ଅଜୀର୍ଣ୍ଣ ଝାଡ଼ା, ବାନ୍ତି, ଶୂଳ ଇତ୍ୟାଦି ନାନା ପ୍ରକାର ପେଟର ବେମାର ହୁଏ । ଖାଦ୍ୟ କିପରି ହଜମ ହୁଏ ଜାଣ ?

ସ୍ତ୍ରୀ—ମୁଁ ତା ଜାଣେ ଯେ ପେଟରେ ଅଗ୍ନି ଥାଏ । ଯାହା ଖାଇବ ତାହା ହଜମ ହୋଇଯାଏ । ଆଜି ଏଥିରେ ଅଧିକା କି ପାଠ ଅଛି ?

ସ୍ବା—ମୋଟା ମୋଟି ଅର୍ଥରେ ସେ କଥା ଠିକ୍, ମାତ୍ର ପେଟ ଭିତର ଖବର ଯେ ଜାଣି ନ ଥିବ, ସେ ସହଜରେ କହି ପାରିବ ନାହିଁ । ଏ ଶରୀର ବଡ଼ ଆଶ୍ଚର୍ଯ୍ୟ । କହନ୍ତି ପିଣ୍ଡ ବ୍ରହ୍ମାଣ୍ଡ ସମାନ । ବ୍ରହ୍ମାଣ୍ଡରେ ଯାହା ଅଛି, ଏ ଛୋଟିଆ ପିଣ୍ଡ ମଧ୍ୟରେ ସେ ସମସ୍ତ କଥା ଅଛି । ଦେହ ଉପରୁ ଚମ, ଚର୍ବି, ମାଂସ ପ୍ରଭୃତି କାଢ଼ି-ଦେଲେ ଗୋଟିଏ ଭୟଙ୍କର ମୂର୍ତ୍ତି ଦେଖାଯିବ—କେବଳ ଅସ୍ଥି କଙ୍କାଳମାନ । ଏ ଶରୀର ମଧ୍ୟରେ ଅସଂଖ୍ୟ ଯନ୍ତ୍ର ଅଛି । ଘଣ୍ଟା ଭିତର କେବେ ଦେଖିଛ ? ସବୁ ଯନ୍ତ୍ରପାତି ଏପରି ଖଞ୍ଜା ହୋଇ ବସିଛି ଯେ, ଥରେ ଚାବି ମୋଡ଼ିଦେଲେ ନିର୍ଦ୍ଦିଷ୍ଟ ଦିନଯାଏ ସମୟ ଦେଉଥିବ । ଚାବି ଦେବାର ଅନିୟମ ହେଲେ, କିମ୍ବା ତେଲ ପ୍ରଭୃତିରେ ଟିକିଏ ମଇଳା ହେଲେ ଯନ୍ତ୍ର ଖରାପ ହୁଏ—ଘଣ୍ଟା ଠିକ୍ ଚାଲେ ନାହିଁ; ହୁଏତ ବନ୍ଦ ହୋଇଯାଏ । ଖାଦ୍ୟ ଶରୀର ଘଣ୍ଟାର ଚାବି । ନିୟମିତ ଖାଦ୍ୟ ଖାଉଥିଲେ ଶରୀର ଚାଲୁଥିବ । ଆମେ ଯାହା ଖାଉ ତାହାକୁ ଦାନ୍ତ ଚୋବାଏ । ଚୋବାଇବାବେଳେ ପାଟି ମଧ୍ୟରେ ଲାଳ ବାହାରେ । ଖାଦ୍ୟ ସେହି ଲାଳ ସଙ୍ଗେ ମିଶି କଣ୍ଠନଳୀ ବାଟେ ପେଟ ଭିତରକୁ ଯାଏ । ଖାଦ୍ୟ ଯାଇ ପାକସ୍ଥଳୀରେ ପହଞ୍ଚିଲାରୁ ସେଠାରେ ଆଉ ଏକ ପ୍ରକାର ଲାଳ ବାହାରି ସେ ଖାଦ୍ୟ ସଙ୍ଗେ ମିଶେ । ଏହାକୁ ଜଠରାଗ୍ନି କହନ୍ତି । ଏ ରସ ଖାଦ୍ୟକୁ ହଜମ କରିଦିଏ । ଚୁଲି ଉପରେ ହାଣ୍ଡି ବସି ତଳେ ନିଆଁ ଜଳୁଥାଏ । ନିଆଁ ଜଳିଲାରୁ ଡାଲି, ଚାଉଳ ସିଝେ, ଫୁଟେ, ଶେଷରେ ସିଦ୍ଧ ହୋଇଯାଏ । ସେହିପରି ପାକସ୍ଥଳୀଟା ହାଣ୍ଡି, ଆଉ ଜଠରାଗ୍ନି ନିଆଁ, ଖାଦ୍ୟଦ୍ରବ୍ୟ ଡାଲି ଚାଉଳ ପରି । ସନେଇର ସ୍ୱାଭ ଦରଫଟା କି ଧନପା ଫଟା ହୋଇଛି, ଆଉ

ଅରେ କଞ୍ଚା ଗୁଡ଼ଲ ପକାଇଲ । ଫଳ କଣ ହେବ ? ଭାତ ଅଧେ ସିଝା, ଅଧେ କଞ୍ଚା । କିଏ ଦରୁଟି, କିଏ ଗୁଣ୍ଡଳିଆ, କିଏ କଅଁଳ, କିଏ ନକେଇ ହୋଇଯିବ । ସେହିପରି ପେଟରେ ଖାଦ୍ୟ ଥାଇ ଅଳ୍ପ ଉପରେ ଖାଇଲେ ଏହିପରି ଫଳ ହୁଏ । ଆମ ଦେଶ ମାମାନେ ଏ କଥା ବୁଝନ୍ତି ନାହିଁ । ଯେତେ ପିଲାଙ୍କ ଧରି ତେବେ ଦ୍ୱଳାଏ ଟିକାଇ ଦଅନ୍ତି । ମନେ କରନ୍ତି, ବେଶି ବେଶି ଖାଇଦେଲେ ପିଲା ବଢ଼ି ପଡ଼ିବ: କିନ୍ତୁ ଫଳ ଓଲଟା ହୁଏ । ପିଲାର ଅଜୀର୍ଣ୍ଣ ହୁଏ, ଅଗ୍ନିମାନ୍ଦ୍ୟ ହୁଏ । ଏଥିରୁ କ୍ରମେ ନାନାରୋଗ ଜନ୍ମେ—କ୍ରିମି, ଜର, କାଶ, କଫ ଇତ୍ୟାଦି । ଦାନ୍ତ ନ ଉଠିବା ଯାଏ ଅତି ସାବଧାନରେ ଖାଦ୍ୟ ଦେବ । ଯେଉଁମାନେ ମା ଦୁଧ ଖାନ୍ତି ନାହିଁ, ସେମାନଙ୍କୁ ଗାଈଦୁଧ ବା ଛେଳିଦୁଧ ଦେବ, ମାତ୍ର ସେ ଦୁଧ ଯେପରି ଘନ ଅଣ୍ଠା ନ ହୁଏ । ପିଲାର ହଜମ କରିବା ଅନୁସାରେ ତିନିଭାଗ ପାଣି ଭାଗେ ଦୁଧ ବା ଅଧେ ପାଣି ଅଧେ ଦୁଧ ଦ ତିନି ଉତୁରି ଆସିଲା ପରେ ଖାଇବାକୁ ଦେବ ।

ସ୍ତ୍ରୀ—ମା ଦୁଧରେ ପାଣି ମିଶା ଯାଏ ନାହିଁ । ସେ ଦୁଧ ବିନା ଅଣ୍ଠାରେ କିପରି ପିଲା ଖାଏ ?

ସ୍ୱାମୀ—ଅହେ, ସେ ତ ଈଶ୍ୱର-ଦତ୍ତ ଖାଦ୍ୟ । ପିଲାର ଜନ୍ମ ପୂର୍ବରୁ ମା ଥନରେ କ୍ଷୀର ଥୁଆ ଯାଇଛି । ତିନି ଭାଗେ ପାଣି ଭାଗେ ଗାଈଦୁଧ ମିଶିଲେ ଯେତେ ପତଳା ହେବ, ମା ଥନ କ୍ଷୀର ତାଠାରୁ ପତଳା । ସେ ଦୁଧ ପିଲାର ବୟସବୃଦ୍ଧି ସଙ୍ଗେ ସଙ୍ଗେ ଘନ ହୋଇ ଆସେ । ପିଲା ସହଜରେ ହଜମ କରେ । ଯେବେ ମାଙ୍କଠାରେ କ୍ଷୀର ନ ଥାଏ ବା ଅଳ୍ପ ଥାଏ ବା ରୋଗ ପ୍ରଭୃତି ଜାତ ହେବା ହେତୁ ସେ କ୍ଷୀର ଦିଆଯାଏ ନାହିଁ, ତେବେ

ଗାଈଦୁଧ ପ୍ରଭୃତି ଅବଶ୍ୟକ ହୁଏ । ଗାଈ ନୀରୋଗୀ ହୋଇଥିବ, କଅଁଳା ଦୁଧ ହୋଇଥିବ, ପଣ୍ଡିଆ ଗାଈଦୁଧ ହୋଇ ନ ଥିବ, ଏପରି ଦୁଧ ଦେବ । ପିଲାଟି ସୁସ୍ଥ ସବଳ ହୋଇ ମଣିଷ ହେବା ବଡ଼ ସହଜ କଥାଟିଏ ନୁହେ । ପିଲାପାଳିବା କାର୍ଯ୍ୟ ପର ଉପରେ ପକାଇଦେଇ ନିଜେ ନିଶ୍ଚିନ୍ତ ହୋଇ ବସିଲେ ଚଳିବ କିପରି ? ପରମଣିଷ ଏତେ ଯତ୍ନ ନେବା ସହଜ ନୁହେଁ । ଏ ସବୁ କାମ କ୍ଷମତାପନ୍ନ ଦେଲେ ଚଳିବ ନାହିଁ, ସେପରି ଲୋକ ମିଳିବା ମଧ୍ୟ ସହଜ ନୁହେଁ । ଆମ ଦେଶରେ ସବୁ ମାଇପେ ଏହିପରି ବୁଝନ୍ତି, ତାହା ମାରଫତ ଦେଇ ନିଶ୍ଚିନ୍ତ ହେବ । ଏତିକି କଥା ମାମାନେ ଜାଣନ୍ତି ନାହିଁ, ସାବଧାନ ହୁଅନ୍ତି ନାହିଁ । ଯେବେ ପିଲା ଦେହ ଖରାପ ହେଲା, ତେବେ ମହାବ୍ୟସ୍ତ, ଦିଅଁ ଦେବତାଙ୍କୁ ଡାକରା, ବୈଦ୍ୟ ଡାକ୍ତରଙ୍କୁ ଡାକରା, କେତେ ଖର୍ଚ୍ଚା ତାର ସୀମା ନାହିଁ । ମାମାନେ ଅଶିକ୍ଷିତା, ଅମନଯୋଗିନୀ ହେଲେ ଏ ସବୁ ଫଳ ମିଳେ । ପିଲାଙ୍କ ଦାନ୍ତ ଉଠିଲେ ପ୍ରତିଦିନ ଦାନ୍ତ ପରିଷ୍କାର କରାଇବ । ଅପରିଷ୍କାର ରହିଲେ ଦାନ୍ତ ଖରାପ ହୁଏ, ସନ୍ଧି ମେଲା ହୁଏ, ଦାନ୍ତରୋଗ ଜନ୍ମେ, ଦାନ୍ତର ଚୋବାଇବା ଶକ୍ତି କମିଯାଏ । ଦାନ୍ତ ଘୋରଣାର କାମ କରେ । ଘୋରଣାରେ ଯେପରି ସବୁ ଜିନିଷ ପେଷା ଯାଏ, ଦାନ୍ତ ସେହିପରି ସବୁ ଜିନିଷ ଚୋବାଇ ପେଷିଦିଏ । ପେଷଣା ଯନ୍ତ୍ରଟି ପରିଷ୍କାର ପରିଚ୍ଛନ୍ନ ଥିବା ଆବଶ୍ୟକ । ସେଥିଲାଗି ପିଲାର ଦାନ୍ତ ପରିଷ୍କାର କରିବା ଉଚିତ । ପିଲାମାନଙ୍କ ସ୍ୱାସ୍ଥ୍ୟ ଲାଗି ମାମାନେ ଦାୟୀ । ସେମାନେ ଖାଦ୍ୟ ବିଷୟରେ ସାବଧାନ ନ ହେଲେ ପିଲା ସୁସ୍ଥ, ସବଳ ଓ ନୀରୋଗୀ ହେବେନାହିଁ । ପିଲା ଯେତିକି ହଜମ କରି ପାରିବ, ତାହା ଦେଖିକରି ଦେବ ।

ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଖାଇବାକୁ ଦେବ । ଅତି ସ୍ନେହରେ ଯାହା ତାହା ଦେବ ନାହିଁ । ସାହେବମାନେ ଏ ସବୁ ବିଷୟରେ ବଡ ହୁସିଆର । ସାହେବମାନଙ୍କ ଘରେ ଯେଉଁ ଧାଈମାନେ ଥାଆନ୍ତି, ସେମାନେ ପିଲଙ୍କୁ ବଡ ସୁନ୍ଦରଭାବରେ ପାଳନ୍ତି । ଆମ ଘର ଧାଈମାନେ ଗୋଟିଏ ଗୋଟିଏ ଜନ୍ତୁ । ତାଙ୍କର ବା ଦୋଷ କଣ ? ଆମ ଘର ମାଇପେ ତ ସେହିପରି; ଧାଈ ଉପରେ ସବୁ ପକାଇ ଦେଇ ନିଶ୍ଚିନ୍ତ । ପ୍ରଥମେ ମାଇପେ ଏ ସବୁ କଥା ଜାଣିବା ଆବଶ୍ୟକ । ମୁଁ ଦେଖୁଛୁ, ସ୍ତ୍ରୀଶିକ୍ଷା ମଧ୍ୟରେ ଏ ଗୋଟିଏ ପ୍ରଧାନ ବିଷୟ ହେବା ଉଚିତ ।

ସ୍ତ୍ରୀ—ଅଚ୍ଛା, ଅମେ ଯାହା ଖାଉ ସେ କଣ ହୁଏ ?

ସ୍ଵାମୀ—ଖାଦ୍ୟ ଯାଇ ପାକସ୍ଥଳୀ-ହାଣ୍ଡିରେ ପଡେ । ଜଠରାଗ୍ନି ତାକୁ ପାକ କରେ । ଯଦି ସମ୍ପୂର୍ଣ୍ଣ ପରିପାକ ହୋଇଗଲା, ତେବେ ସାରଯାକ ରକ୍ତ ହୁଏ । ଅସାରଯାକ ମଳ ହୋଇ ବାହାରି ଯାଏ । ରକ୍ତରୁ ମାଂସ ହୁଏ । ମାଂସରୁ ଅସ୍ଥି, ଅସ୍ଥିରୁ ମେଦ ଏବଂ ମେଦରୁ ଶୁକ୍ର ହୁଏ । ରକ୍ତ ଏ ଦେହକୁ ଚଳାଏ । ରକ୍ତ ଯିବା ଆସିବା ପାଇଁ କେତେ ନଳୀ, ଶିରନଳୀ ବସିଛି । ଏହି ବାଟ ଦେଇ ରକ୍ତ ସମସ୍ତ ଶରୀର ଭିତରକୁ ଯିବା ଆସିବା କରେ । ତାକୁ ତଳେ ମସ୍ତିଷ୍କ ଅଛି । ମସ୍ତିଷ୍କ ମଜ୍ଜାପେଶୀ ପରି, ତା ଭିତରେ ଜାତିଏ କୋମଳ ପଦାର୍ଥ ଅଛି, ତାକୁ ଦାନ୍ତ କହନ୍ତି । ଏ ମସ୍ତିଷ୍କ ଟେଲିଗ୍ରାଫ ତାର ଯନ୍ତ୍ର ପରି । ଟେଲିଗ୍ରାଫ ଯନ୍ତ୍ରରେ ହାତ ମାରିଦେବା ମାତ୍ରକେ ବହୁ ଦୂରକୁ ଖବର ଚାଲିଯାଏ । ସେହିପରି ମସ୍ତିଷ୍କ-ତାରଯନ୍ତ୍ର ଶରୀରର କେଉଁଠି କି ଅଭାବ ସ୍ଵତଃ ଜାଣିପାରେ ଏବଂ ତଦନୁସାରେ ସେ ସ୍ଥାନକୁ ରକ୍ତ ପଠାଇ ଅଭାବ ପୂରଣ କରେ । ଏ କଳ ତା ମନକୁ

ଚାଲୁଛି । ଯେ ଯାହା କାର୍ଯ୍ୟରେ ଲାଗିଛନ୍ତି । ଶରୀର ମଧ୍ୟରେ ଅନେକ ଯନ୍ତ୍ର ଅଛି । ପ୍ରତି ଯନ୍ତ୍ରର କାମ ଅଲଗା । କୌଣସି ଜିନିଷ ପେଟ ଭିତରକୁ ଯିବା ପୂର୍ବରୁ ଆଖି-ଡାକ୍ତର ଦେଖିବ, ପରୀକ୍ଷା କରିବ, ଆଖିକୁ ଭଲ ଲାଗିଲେ ପାଟି ଭିତରକୁ ଯିବ । ନାକ ଶୁଙ୍ଘିବ, ଭଲ ବାସିଲେ ନେବ, ଦୁର୍ଗନ୍ଧ ହେଲେ ପକାଇ ଦେବ । ଜିଭ ସ୍ୱାଦୁ ବାରିବ, ଭଲ ହେଲେ ଦାନ୍ତ ଚୋବାଇବ, ଧାନ ତଷ ପ୍ରଭୃତି ଥିଲେ ପକାଇ ଦେବ । ଭିତରକୁ ଗଲାରୁ ଅସାର ପଦାର୍ଥ ଯାହା ମଳ, ମୂତ୍ର, ଝାଳ, କାନଗଳ, ସିଙ୍ଘାଣି ପ୍ରଭୃତି ହୋଇ ବାହାରି ପଡ଼ିବ । ପ୍ରତ୍ୟେକ ଜିନିଷ ବାହାରିବାପାଇଁ ଭିନ୍ନ ଭିନ୍ନ ବାଟ ଅଛି । ସବୁଠାରୁ ସାର ପଦାର୍ଥ ଭିତରେ ରହି ଶରୀରକୁ ପୁଷ୍ଟ କରିବ । ଏ ଯେତେ କାମ ହେଉଛି ନିୟମରେ ଚାଲୁଛି । ଠିକ ଏ ଅନିୟମ ହେଲେ କଳ ବିଗିଡ଼ିବ । କଳ ବିଗିଡ଼ିଲେ ନାନା ରୋଗ ଜାତ ହେବ । ଅଧିକାଂଶ ରୋଗ ଖାଦ୍ୟ ଦୋଷରୁ ହୁଏ । ଖାଇବା ଶୋଇବା କାର୍ଯ୍ୟରେ ବାଧା ହେଲେ ଅନିୟମ ହେବ ।

---

## ଦଶମ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ସେ ଦିନ କଣ ମହାଭାରତ ପଢ଼ିଲାବେଳେ କହୁଲ, ମା ହେଲେ ଦେବଳା ଦେବୀପରି ହେବ । ଦେବଳା ଦେବୀ କଣ କରିଥିଲେ କି ?

ସ୍ୱାମୀ—ଦେବଳା ଦେବୀ ଜଣେ ଅଦର୍ଶ ମାତା । ସେ ଗୋଟିଏ ବିଧବା ସ୍ତ୍ରୀ । ଜାତିରେ କ୍ଷତ୍ରିୟ । ତାଙ୍କର ଏକମାତ୍ର ପୁତ୍ର ସଞ୍ଜୟ । ପୁଅ ବୋଲି ଗୋଟିଏ, ସଞ୍ଜୟ ଏକଇର ବଳା । ପିତାଙ୍କୁ ହରାଇ ସଞ୍ଜୟ ନିରାଶ୍ରୟ ହେଲା । ଇତି ମଧ୍ୟରେ ତାଙ୍କ ରାଜ୍ୟ ଶତ୍ରୁ-

ଦ୍ୱାରା ଅକାନ୍ତ ହେଲା । ସଞ୍ଜୟ କିଛି ସମୟ ଯୁଦ୍ଧ କରି ପରାସ୍ତ ହେଲା । ଯୁଦ୍ଧକ୍ଷେତ୍ରରୁ ପଳାଇ ଆସି ଖଟ ଉପରେ ମୁହଁ ମାଡ଼ି ଶୋଇଲା । ମାଆ ଦେବଳା ଆସି ଦେଖନ୍ତି, ପୁଅ ଶୋଇ ରହୁଛି, ଯୁଦ୍ଧକୁ ଯାଉ ନାହିଁ । କ୍ଷତ୍ରିୟ ରମଣୀର ରକ୍ତ ଉତ୍ତେଜିତ ହେଲା । ସେ ପୁତ୍ରକୁ ଧିକ୍କାରକରି କହିଲେ—"ତୁ ଶୋଇ ରହିଛୁ ? ମୋ ଗର୍ଭରେ ଜନ୍ମ ହୋଇ ତୁ ଏଡ଼େ କାପୁରୁଷ ! ଶତ୍ରୁ ହସୁଥିବ, ତୁ କପରି ସହୁଛୁ ! ମୋ କାନରେ ଶତ୍ରୁର ଅଟ୍ଟହାସ ପ୍ରବେଶ କରୁଛି, ମୋତେ ସେ ଶତ୍ରୁ ଦେଖା ଯାଉଛି !"

ସ୍ତ୍ରୀ—ଅହା, ସେ ମାଆଟାର ମନ କେମନ୍ତ ଗୋ । ଏକଇଟ ବଳା ବଣିକେସନ ପରି ଗୋଟିଏ ପୁଅ, ମା ହୋଇ ବାଘମୁହଁକୁ ପଠାଇ ଦେବାକୁ କମିତ୍ତ କହୁଛି ଲେ । ରାଜ୍ୟ ନ ହେଲେ ନାହିଁ, ଭିକ ମାଗି ଖାଇବ । ଯେ ଜନ୍ମ ଦେଇଛି; ସେ ମୁଠାଏ ଖାଇବାକୁ ଦେବ ନାହିଁ ? ପ୍ରାଣ ଥିଲେ ସବୁ ଅଛି । ମାଆ ହୋଇ ପୁଅକୁ ମରିବାକୁ ଯିବାକୁ କହିବାକୁ କପରି ଜିଭ ଲେଉଟିଲା ମ ?

ସ୍ୱା—ତୁମେ ହୋଇଥିଲେ ପୁଅକୁ ସେଡ଼ୀନର ପରିଉଳ ଶିକାରେ ଝୁଲାଇ ଦିଅନ୍ତ ପରା ?

ସ୍ତ୍ରୀ—ମୁଁ ହୁଏ, ତୁମେ ହୁଅ, କିଏ ଏ କଥା କରନ୍ତା ମ ? ମତେ ଖାଲି କହୁଛ ନା ଆଉ କିଛି ଅଛି ? ତମେ କଣ ପୁଅକୁ ବାଘମୁହଁକୁ ଠେଲି ଦିଅନ୍ତ ?

ସ୍ୱା—ଅହେ, ମଣିଷ ଜନ୍ମିଛି, ଦିନେ ଅବଶ୍ୟ ମରିବ । ବୀର ପରି ମଲେ କପରି, ଆଉ ଘରକଣରେ ବସି ମଲେ କପରି ? ଆଜିକାଲି ବାବୁଙ୍କର ଯେତେ ଧମକ ଚମକ, ଗାଲି ଗୁଲୁଜ, କଥାଗୁରୁଗି, ବାହାଦୁରୀ ଇତ୍ୟାଦି ସେ ସବୁ ଖାଲି ମାଇପଙ୍କ

ଅଟନ୍ତେ, ଦାଣ୍ଡ ପିଣ୍ଡା ଉପରେ । କଥା ଅଛି 'ଠାଣି କରଥାଏ ମାଇପ ଅଟେ, ଗୋଡ଼ ନ ପଡ଼ଇ ପାଇକ ଅଟେ' । ଅଳ୍ପବାଳୁ ପିଲାମାନେ ଏହି ଶ୍ରେଣୀର । ସବୁ ଠାଣି କରୁଥାନ୍ତି, ମାତ୍ର ଶତ୍ରୁକୁ ଦେଖିଲେ ହେଁସ ଘୋଡ଼ି ହୋଇ ଶୋଇ ପଡ଼ନ୍ତି । ଚରଣେ ଜାଣି ଭରଣେ କହନ୍ତି ବେଣି ପୁଣି, ମଫସଲିଆ ଲୋକଙ୍କ ଅଗରେ ଢେର ଫୁଲଣିଆ କଥା କହନ୍ତି । ମନେ କରନ୍ତି ଆମକୁ କଣ ଏମାନେ ଚିହ୍ନି ପାରିବେ ? ଲୋକେ କମେ ବୁଝିଲେଣି—ଏଗୁଡ଼ାକ ଅକାଳ କୁଷ୍ମାଣ୍ଡ, ଧ ବଡ଼ାର ମୂଲ୍ୟ ନୁହନ୍ତି । ହଇ ହେ, ପଶୁ ପକ୍ଷୀମାନେ କଣ ପିଲା ଜନ୍ମ କରୁ ନାହାନ୍ତି କି ? ସେମାନେ କଣ ଖାଇ ପିଇ ବଞ୍ଚୁ ନାହାନ୍ତି କି ? ମଣିଷପିଲାଗୁଡ଼ାକ ଯେବେ ପଶୁପକ୍ଷୀଙ୍କ ପିଲାଙ୍କପରି ଖାଲି ଖାଇ ପିଇ ଶୋଇବେ, ତେବେ ମଣିଷ ପଶୁ ମଧ୍ୟରେ ପ୍ରଭେଦ କଣ ? ପୁଅ ଯେବେ ଗୁଣବାନ ନ ହେଲା, ତେବେ ସେ ପୁଅ ପୁଅ ନୁହେଁ । ନୀତିଶାସ୍ତ୍ର କହୁଛି ଗୁଣୀ ସନ୍ତାନମାନଙ୍କ ଗଣନା ବେଳେ ଯେଉଁ ପୁଅ ନାମରେ ଖଡ଼ି ଗାର ନ ପଡ଼ିଲା, ସେ ମା ପୁତ୍ରବତୀ ନୁହେଁ । ସୁତରାଂ କେବଳ ପୁଅଟିଏ ଯେନ ତେନ ପ୍ରକାରେ ଜୀବନରେ ରହିବ, ଶାଗ ଭାତ ମୁଠାଏ ଖାଇବ, ମରଣ ବେଳେ ମୁଖାଗ୍ନି ଦେବ, ଏତିକି ହେଲେ ଯେ କାମ ସରିଲା ତାହା ନୁହେଁ । ପୁଅ ଗୁଣବାନ୍ ବୀର ହୋଇ ଯଶ କୀର୍ତ୍ତି ରଖି ନ ପାରିଲେ ସେ ପୁଅ ପୁଅ ନୁହେଁ । ଭୀମ ଅର୍ଜୁନ ପରି ପୁଅ ଥିଲେ, ତାଙ୍କ ନାମ ଅଦ୍ୟାପି ଲୋକେ ଘୋଷି ହେଉଛନ୍ତି । ମନୁଷ୍ୟ ତ ଦିନେ ମରିବ, ମାତ୍ର ଯେ ମରିଗଲା ତାର ଗୁଣ ଗାଇ ଲୋକେ ଚିରକାଳ ଘୋଷି ହେଉଥିବେ, ସେହି ପୁଅ ପୁଅ, ସେହି ମାତା ମାତା । ବିଦୁଲା ପରି ମାତା ଥିଲେ ସଞ୍ଜୟ ପରି

ପୁଅ ଥିଲ । ଆଜଯାଏ ମହାଭାରତ ସେମାନଙ୍କ ଗୁଣ ଗାଉଛି । ଧନ୍ୟ ବିଦୁଲା ! ଧନ୍ୟ ସଞ୍ଜୟ ! ଭାରତ ରମଣୀମାନେ ବିଦୁଲାପରି ମାତା ନ ହେଲେ ଜାତୀୟ ଜୀବନ ହେବ କିପରି ? ସବୁ ମାତାମାନଙ୍କୁ ଅଣ୍ଟା ଭିଡ଼ିବାକୁ ହେବ । ପୁଅମାନଙ୍କୁ ସେହିପରି ଛାଞ୍ଚରେ ଢାଳିବାକୁ ହେବ । କେବଳ ଗେଲବସର ହେଲେ ମାତାର କର୍ତ୍ତବ୍ୟ ଶେଷ ହେବ ନାହିଁ । ଅନେକ ଲୋକ ଭାବୁଛନ୍ତି, ପରଦା ଖୋଲିଦେଲେ ଭାରତ ଉଦ୍ଧାର ହେବ । କିଏ ଭାବୁଛି, ସ୍ତ୍ରୀ ସ୍ୱାଧୀନତା ହେଲେ ଭାରତ ବୈକୁଣ୍ଠ ଯିବ । କିଏ ଭାବୁଛି, ଉପନ୍ୟାସ ପଢ଼ି ଦୋଳିରେ ଶୋଇଲେ ଦେଶ ଉଦ୍ଧାର ହେବ । କିଏ ଭାବୁଛି, ବିଧବାମାନେ ବିବାହ ହେଲେ ଜାତି ଉଠି ବସିବ । କିଏ ଭାବୁଛି, ମାଇପେ ବି, ଏ; ଏମ୍, ଏ, ପାଶ କଲେ ଦେଶ ଉଦ୍ଧାର ହେବ; ଇତ୍ୟାଦି ନାନା କଥା କଳ୍ପନା ଚାଲିଛି । ଆଦର୍ଶ ମାତା, ଆଦର୍ଶ ଗୃହିଣୀ ଆଦର୍ଶ ତନୟା କିପରି ହେବେ, ସେ କଥା କେହି ପାଞ୍ଚୁ ନାହିଁ । ସୀତା, ସାବିତ୍ରୀ ପ୍ରଭୃତି ଏହି ଦେଶର ରମଣୀ । ବିଦୁଲା ଜଣେ ସେହି ପ୍ରାଚୀନ କାଳର ରମଣୀ ।

ସ୍ତ୍ରୀ—ସେ ପୁଅକୁ ଏପରି କହିବାକୁ କିପରି ସତ କଲାଲ ମ ?

ସ୍ୱାମୀ—ତମେ ତ ତାଙ୍କ କଥା ସବୁ ଶୁଣି ନାହିଁ । ଶୁଣିଲେ ତମର ବୋଧହୁଏ ମୂର୍ଚ୍ଛା ହେବ । ସେ କହିଲେ, "ରେ କୁଳାଙ୍ଗାର ସଞ୍ଜୟ, ଏପରି ଶୋଇଛୁ, ଶତ୍ରୁ ନ ସୁଖିବେ ସିନା ! ତୁ ମୋ ଗର୍ଭରେ ଏବଂ ପିତାଙ୍କ ଔରସରେ ଜନ୍ମ ହୋଇ ନାହୁଁ । କେଉଁ ଅଜଣା ଦେଶରୁ ଆସିଛୁ ? ତୋଠାରେ କ୍ରୋଧ ନାହିଁ ! ତୁ ନିର୍ବୀର୍ଯ୍ୟ ପୁରୁଷପରି ନିରାଶ ହୋଇ ଶୋଇ ଶୋଇ ଦିନ କାଟୁଛୁ କାହିଁକି ? ଉଠ୍, ଜାଗ୍ରତ ହୋ, କାର୍ଯ୍ୟ କର୍, ଆପଣାକୁ ସାନ

ବୋଲି ଅପମାନ ଦେଲା । ଅଳ୍ପରେ ସନ୍ତୁଷ୍ଟ ହେଉଛୁ କାହିଁକି ? ଉଠ ଭୟ କଣ ? ନିର୍ଭୟ ଚିତ୍ତରେ ମଙ୍ଗଳକର କାର୍ଯ୍ୟ କର । ରେ କାପୁରୁଷ, ଉଠ, ଶଯ୍ୟା ତ୍ୟାଗ କର୍ । ପରାକ୍ରମ ଦେଖାଇ କେତେ କାଳ ଶତ୍ରୁର ଆନନ୍ଦ ବର୍ଦ୍ଧନ କରିବୁ ? ମିତ୍ରପକ୍ଷ ଲୋକଙ୍କୁ କେତେକାଳ ଶୋକସାଗରରେ ଭସାଇବୁ ? ଛୋଟିଆ ନଈ ଅଳ୍ପ ପାଣିରେ ପୂରିଯାଏ । ମୂଷା ଅଞ୍ଜଳି ଅଳ୍ପ ପଦାର୍ଥରେ ପୂରିଯାଏ । ଭୀରୁ ଲୋକ ଅଳ୍ପ ଲାଭରେ ସନ୍ତୁଷ୍ଟ ହୁଏ । ରେ, ଅଧମ ଯେପରି କୁକୁରକୁ ସାପ କାମୁଡ଼ିଲେ ସେ କେବେ ନିଧନପ୍ରାପ୍ତ ହୁଏ ନାହିଁ, ସେପରି ଶତ୍ରୁ ଦ୍ୱାରା ପରାଜିତ ଅବସ୍ଥାରେ ମର୍ ନା, ଆପଣା ବଳ ବିକ୍ରମ ତେଜ ପ୍ରକାଶ କର୍ । ତୋର କେହି ସାହାଯ୍ୟ ହୁଅନ୍ତୁ ବା ନ ହୁଅନ୍ତୁ, ନିଜେ ଅସ୍ତ୍ର ଭିଡ଼ି ଶତ୍ରୁ ସଙ୍ଗେ ଲଢ଼ିବା ତୋର କର୍ତ୍ତବ୍ୟ ।"

ସ୍ତ୍ରୀ—ସଞ୍ଜୟ ଏ କଥା ଶୁଣି କଣ କହିଲେ ମ ?

ସ୍ୱା—କିଛି କହିଲେ ନାହିଁ । ଗାଇଟିଏ ପଢ଼ିଥାଏ । ବିଦୁଳା ପୁଣି ଉଚ୍ଚସ୍ୱରରେ କହିଲେ—

"ଶୋଇଛୁ କିପାଇଁ ମଲା ସାପ ପରି ।
ଶୁଦ୍ଧ ନାହିଁ କିରେ ଅରି ଡ଼ରି ଭେଣ୍ଟି ।
ଅସ୍ତ୍ର ଭିଡ଼ି ଅଗ୍ରେ ରଣକ୍ଷେତ୍ରେ ପଶ ।
ପରାକ୍ରମ ଫଳେ ଜାଣି ରଖ ଯଶ ।
ମଧ୍ୟମ ଉପାୟ ଅଟେ ସିନା ସନ୍ଧି ।
ଅଧମ ଉପାୟ ଅଟେ ଭେଦ ବୁଦ୍ଧି ।
ସବୁଠାରୁ ନୀଚ ଅଟଇଟି ଦାନ ।
ନ କର ମାନସ କରିବ ଏମାନ ।

ସବୁଠାରୁ ଶ୍ରେଷ୍ଠ ଉପାୟଟି ଦଣ୍ଡ ।
ସାର କର ତାକୁ ନୁହ ଲଣ୍ଡଭଣ୍ଡ ॥
କ୍ଷଣେ ହେଲେ ଜଳ ଉଠରେ ସନ୍ତାନ ।
କୁହୁଳି ନ ରହେ ତୃଷ ଅଗ୍ନି ସମ ॥
ଅତ ପରଚଣ୍ଡ ଅତ ମୃଦୁ ମୂଢ ।
ରାଜା ଘରେ ନ ଜନମୁ କଦାଚତ ॥
କରମ କରେ ଯେ ରଣକ୍ଷେତ୍ରେ ଯାଇ ।
ଧରମ ରଣରୁ ମୁକତି ଲଭଇ ॥
ଲଭି ହୁଏ ତାର ସକଳ କଲ୍ୟାଣ ।
ଲଭି ଲୋକମାନ ମଣେ ସେ ସମାନ ॥
ତେଜି ଧନ ଆଶା ଯଶ ଲଭି ଅଶେ ।
ଯଥାଶକ୍ତି କର୍ମ କରେ ନିରଳସେ ॥
ହେ ପୁତ୍ର ଯେବେ ତୁ କ୍ଷତ୍ରିୟ ସନ୍ତାନ ।
ଦେଖାଅ ଦେଖାଅ ନିଜ ବୀରପଣ ॥
ନାହିଁ ଯେବେ ତୋର ଏସନ ଶକତ ।
ତେଜିଲେ ପରାଣ ହେବ ସଦଗତ ॥
ଧରମକୁ ଛାଡ଼ି ରହିଲେ ଜୀବତ ।
ଅଜୀବତ ବାନା ଉଡ଼ିବ ତୁରତ ॥
ମରିଯିବା ଭଲ କି କାର୍ଯ୍ୟ ଜୀବନେ ।
କେଉଁ ଅଶେ ଅଉ ରହୁବୁ ତୁ କ୍ଷଣେ ॥
ରେ କ୍ଳୀବ ଅକାଳ-କୁଷ୍ମାଣ୍ଡ ସନ୍ତାନ ।
ଭଞ୍ଜିଛନ୍ତି ବନାଶ ତୋ କୀରତମାନ ॥
ହରିଛନ୍ତି ରାଜ୍ୟ ହରିଛନ୍ତି ଧନ ।
ମନୋବାଞ୍ଛାମାନ ଭଞ୍ଜିଛନ୍ତି ମଳିନ ॥

କେଉଁ ଲଭ ଅଶେ ଜୀବନ ଧାରଣ ।
କର ବିଦ୍ଧନ୍ତୁ ତୁ ଅଧମ ସନ୍ତାନ ॥
ଥିବ ଯାର ବୁଦ୍ଧି ହେଲେହେଁ ପତନ ।
ପଣ୍ଡିତ ବଇଷ୍ଣ ବେଦ ଧର ଜାଣ ॥
ବଢ଼ାଇ ଦଗୁଣ ଉତ୍ସାହ ଉଦ୍ୟମ ।
ସହସ୍ର ଗୁଣରେ କର ତୁ ଉଦ୍ୟମ ॥
ତୋର ଦୋଷେ ତୋର କୁଳ ଯିବ ନାଶ ।
ଉଦ୍ଧର ଏ କୁଳ ବାନ୍ଧ ତୁ ସାହସ ॥
ଯାହାର କୀରତ ଚରିତ ମହତ ।
ନ ଶୋଭେ ଏ ଲୋକ ମଣି ଅଦଭୁତ ॥
ନୁହେ ସେ ପୁରୁଷ ଅଥବା ରମଣୀ ।
ନ ଗଣେ ଯେ ତାଙ୍କୁ ଶ୍ରେଷ୍ଠ ତୁଲେ ପୁଣି ॥
ଅର୍ଥଲଭ ବିଦ୍ୟା ତପ ଦାନ ସତ୍ୟ ।
ଭୂଷଣେ ଭୂଷିତ ନ ହୁଏ ଯେ ସୁତ ॥
ମାତାର ସେ ସୁତ ଅଟେ ସିନା ମଳ ।
ତାର ଜନମରେ କିଛି ନାହିଁ ଫଳ ॥
ବିଦ୍ୟା ତପ ଧନ ଧର୍ମରୁ ବିକ୍ରମ ।
ବଳେ ଯେ ଅନକୁ ହସାଇ ଉତ୍ତମ ॥
ସେହି ଏକା ସିନା ପୁରୁଷ ଉତ୍ତମ ।
ଅନ କାପୁରୁଷ ମୂରୁଖ ଅଧମ ॥
ଭିକ୍ଷାଠାରୁ ବଳି ନାହିଁ ହୀନବୃତ୍ତି ।
ଧରି ଲଭିବୁ କି ସଂସାର କୀରତି ॥
ଶତ୍ରୁ ହସେ ଶୁଣି ଯାହାର ଚରିତ ।
ଲୋକ ସମାଜରେ ଯେହୁ ଅବଜ୍ଞାତ ॥

ଯାର ନାହିଁ ଶକ୍ତି ନିଜ ବାହୁ ପିଠି ।
ଖାଇବ ପିନ୍ଧିବ ଅରଜିବ ଲୁଟି ।
ନୀଚସେବକ ଅଶେ କରି ନିଏ ଧନ ।
ନାହିଁ ବଳବୀର୍ଯ୍ୟ ନାହିଁ ପରାକ୍ରମ ।
ଏପରି ସନ୍ତାନ ହୋଇଲେ ଜନମ ।
ବନ୍ଧୁବରଗର ସୁଖ ଭକେ ଲୀନ ।
ଜାଣୁଛୁ ଏ ରାଜ୍ୟ ଛାଡ଼ିବା ନିଶ୍ଚିତ ।
ସକଳ ସମ୍ପଦ ହରାଇଛୁ ତୁ ତ ।
ଦୀନ ଭାବେ କାଳ କାଟିଯିବ ପ୍ରାଣ ।
ଦେଖୁଛୁ ମୁଠାଏ ନ ମିଳିବ ଅନ୍ନ ।
ରେ ସୁତ ମୋ ଗର୍ଭେ ଜନମିଲୁ ତୁହି ।
ଅମଙ୍ଗଳକାରୀ କୁଳନାଶ ପାଇଁ ।
କଳିରୂପେ ହୋଇଅଛୁ ଅବତାର ।
ନାଶିଲୁ ତୁ କୁଳ ଅଧମ କୁମର ।
ନିଦାବସ୍ଥା ପରି କାଟିଲେ ତୁ ଦିନ ।
ନ ଘୋଷିବେ ଭୁଲେ କେହି ତୋର ନାମ ।
ରମଣୀଙ୍କ ପରି କାଳ କାଟୁ ତୁହି ।
ଧିକ ତୋ ଜନମ ନ ମଲୁ କିପାଇଁ ।
ଲଢ଼ାଠାରୁ ବଳି ଠାଣି କର ମନ ।
ସିଂହପରି ରଣେ ଦେଖାଅ ବିକ୍ରମ ।

ସ୍ତ୍ରୀ—ଏ କଥା ଶୁଣି ସଞ୍ଜୟ କଣ କହିଲା ?

ସ୍ୱା—ସେ କହିଲା, "ହଇ ଗୋ ମା, ତୁ ଯାହା କହୁଛୁ ସତ । ମୁଁ ଯୁଦ୍ଧ କରିବାକୁ ଯିବି । ଯୁଦ୍ଧରେ ମରିବି । ମୁଁ ତ ମଲେ ଗଲା । ତୁ ତ

ଅଙ୍ଗ ମତେ ଦେଖିବୁ ନାହିଁ ! ତୋର ଅଙ୍ଗ ଅଳଙ୍କାର, ଭୋଗ-ରାଜ୍ୟ, ପୃଥିବୀରୁ କି ପ୍ରୟୋଜନ ?"

ସ୍ୱା:—ପୁଅର ଏ କଥା ଶୁଣି ମା ମନ କିଛି ବଦଳିଲା ଭଲା ?

ସ୍ତ୍ରୀ—ସେ ତ ତୁମ ପରି ମା ନୁହନ୍ତି । ସେ କହିଲେ, "ଅରେ ପୁଅ, ମନୁଷ୍ୟ ଜନ୍ମିଛୁ, ଧନେ ମରିବ । ଯେ ରଣରେ ହାତ ପକାଇ ମରି ନ ପାରିଲା ତା ଜୀବନକୁ ଧିକ୍—ଶତଧିକ୍ । ସିଂହ ପରି ଢାଲ କାଟି ମରି ପାରିଲେ ଭଲ । ଧୃଷ୍ଟରିପରି କେତେ ଲୋକ କାଳ କାଟୁନାହାଁନ୍ତି କି ? ଯେ ଲୋକ ଆପଣା ବାହା ପିଟି ପେଟ ପୋଷି ନ ପାରିଲା, ଯେ ପରକୁ ଅପେକ୍ଷା କରି ଆଳସ୍ୟରେ ଦିନ କଟାଇଲା, ତାର ଜୀବନର କି ମୂଲ୍ୟ ଅଛି ? ଫଳତଃ ଚିର ପରି ଯାହା ବାହୁ ଛାୟାତଳେ ବହୁତ ଲୋକ ଆଶ୍ରୟ ନେଇ ନ ପାରିଲେ, ସେପରି କୁଳାଙ୍ଗାର ପୁତ୍ର ଥାଇ କି ଲାଭ, ନ ଥିଲେ କି କ୍ଷତି ? ପରାନ୍ନଭୋଜୀ ହୋ ନା, ଆପଣା ବିକ୍ରମ ଦେଖା । ଯାହାର ଶକ୍ତି ନାହିଁ ତାକୁ ସମସ୍ତେ ଛାଡନ୍ତି । ତୁ ପରାଜିତ କାପୁରୁଷ ପରି ଫେରିଲେ ଲୋକେ ତତେ ଅତି ହୀନ ମନେ କରିବେ । ତୁ କ୍ଷତ୍ରିୟ ସନ୍ତାନ ! କ୍ଷତ୍ରିୟ ନିଜ ବାହୁ ବଳରେ ଜୀବନ ରକ୍ଷା କରି ନ ପାରିଲେ ଚୋର ବୋଲି ଲୋକରେ ବିଦିତ ହୁଏ । ମୋ କଥା ତୋତେ ସୁଖ ଲାଗୁ ନ ଥିବ । ସିନ୍ଧୁ ରାଜା ଅମର ଅଜର ନୁହେ । ତତେ ଏପରି ଦେଖିଲେ ତୋ ପକ୍ଷ ଲୋକଙ୍କ ବଳ ସାହସ କମିଯିବ । ସେମାନେ ବାଘ ହୋଇ ତତେ ଛାଡି ଶତ୍ରୁ ସଙ୍ଗେ ମିଶିବେ । ପ୍ରଜାମାନେ ସିନ୍ଧୁ ରାଜା ପ୍ରତି ସନ୍ତୁଷ୍ଟ ନୁହନ୍ତି, ମାତ୍ର ଦେଖୁଛନ୍ତି ତୁ ଦୁର୍ବଳ, କାପୁରୁଷ, ତୋ ହାତରେ କିଛି କାମ ହେବ ନାହିଁ । ତେଣୁ ସେମାନେ ସିନ୍ଧୁରାଜା ପକ୍ଷ ଛାଡୁ ନାହାନ୍ତି । ଶୀଘ୍ର ଗିରି ଦୁର୍ଗକୁ ଯା;

ସେଠାରେ ହେ ଶତ୍ରୁର କେଉଁଟି ଦୁର୍ବଳତା ଅଛି ଅନୁସନ୍ଧାନ କର । ତୋର ନାମ ସଞ୍ଜୟ । କାହିଁ ତୋ ନାମର ତ ସାର୍ଥକତା କିଛି ଦେଖୁ ନାହିଁ । ତୋ ନାମର ସାର୍ଥକତା କର୍ । ତୋ ପିଲାବେଳେ ଜଣେ ବ୍ରାହ୍ମଣ ତୋ କପାଳ ଦେଖି କହିଥିଲେ; ତୁ ପ୍ରଥମେ ବିପଦରେ ପଡ଼ିବୁ, ପଛକୁ ତୋର ଭାରି ଭାଗ୍ୟ ଫେରିବ । ସେ ବ୍ରାହ୍ମଣ କଥା ମୋ ମନେ ପଡ଼ୁଛି । ମୁଁ ଆଶା କରୁଛି ତୋର ଜୟ ହେବ । ହେ ପୁତ୍ର ! ଯାହାର ବେଳକର ଭୋଜନ ସାମଗ୍ରୀ ଉପାର୍ଜନ କରିବାର ଶକ୍ତି ନାହିଁ, ତା'ଠାରୁ ବଳି ହୀନ ଅଧମ ଲୋକ ଆଉ କିଏ ଅଛି ? ଦରିଦ୍ରତା ଏକପ୍ରକାର ମୃତ୍ୟୁ । ପତି ପୁତ୍ରର ନିଧନ ଅପେକ୍ଷା ଦାରିଦ୍ରତା ଅଧିକ ଦୁଃଖ ଦିଏ । ମୁଁ କାଲି ରାଜରାଣୀ ଥିଲି ତୁ ରାଜପୁତ୍ର ଥିଲୁ, କେତେ ଭୋଗ ବିଳାସରେ ଦିନ କଟାଇଛୁ—ଆଜି ଯେବେ ତୋ ସ୍ତ୍ରୀକି ଖଣ୍ଡେ ଲୁଗା କିଣିଦେଇ ନ ପାରିବୁ, ମତେ ମୁଠାଏ ଖାଇବାକୁ ନ ଦେବୁ, ତୋର ଜୀବନ ଧାରଣ କରିବା ବୃଥା ହେବ ନାହିଁକି ? ତୋର ଏ ହୀନ ଅକର୍ମା ଅବସ୍ଥା ଦେଖି ଦାସ ଦାସୀ ଚାଲିଯିବେ । ପୁରୋହିତ ଅର୍ଥଲୁବ୍ଧ ତୋ କାର୍ଯ୍ୟରେ ମନ ଦେବେ ନାହିଁ । ସେମାନେ ତୋତେ କାହିଁକି ଖାତିର କରିବେ ? ତୋଠାରୁ ଦେବାର ପାଇବାର ଆଶା ନାହିଁ । ପାଉଥିଲେ—ସେବାରେ ହାଜର ଥିଲେ; ଏବେ ଦଣ୍ଡବତ ହେବେ ନାହିଁ । ଏପରି ଅବସ୍ଥାରେ ବଞ୍ଚିରହିବା କି ପ୍ରୟୋଜନ ? ତୋର ପୂର୍ବ ଯଶ; ପୂର୍ବ ଧନ, ପୂର୍ବ ସମ୍ପତ୍ତି ନ ଦେଖିବାଯାଏ ମୁଁ ଶାନ୍ତିରେ ରହି ପାରିବି ନାହିଁ । କାଲି କିଏ ଆସି କିଛି ମାଗିଲେ 'ନା' ବୋଲି କେମିତି କହିବ ? କେବେ ପରର ଆଜ୍ଞାକାରୀ ହୋଇ ନାହିଁ, ତାହାକୁ କେବେ 'ନା' କହି ନାହିଁ । ବର୍ତ୍ତମାନ ଆଉ ଜଣକୁ

ଅସ୍ତ୍ରା କର ପେଟ ପାଳିବ, ଏପରି ପ୍ରାଣ ମୁଁ କେବେ ଧାରଣ କରି ରହି ପାରିବ ନାହିଁ । ପରଘରେ ଘିଭାତ ମିଳିଲେ ମଧ୍ୟ ଯୋଗାଏ ନାହିଁ । ପର ଓଳିତଳେ ରହି ପର ନାକ ଛୁଅଁସ ଦାନ ଛୁଅଁସ ସହି ପେଟ ପାଳିବା ଅପେକ୍ଷା ମରିଯିବା ଭଲ । ବିନା ପରିଶ୍ରମରେ ଅନ୍ୟ ଉପରେ ନିର୍ଭର କରି ଯେଉଁମାନେ ଚଳନ୍ତି, ସେମାନେ ନିତାନ୍ତ ଅଧମ । ସେମାନଙ୍କ ମୁହଁ ଚାହିଁଲେ ଅମଙ୍ଗଳ । ସେମାନଙ୍କ ସଙ୍ଗେ ସାଥି ହେଲେ ଲକ୍ଷ୍ମୀ ଛାଡ଼ିଯାନ୍ତି । କ୍ଷତ୍ରିୟ ସନ୍ତାନ କେବେ କାହା ନିକଟରେ ମୁଣ୍ଡ ନୁଆଁଏ ନାହିଁ । କାଙ୍କଁରିଅ କାଠି ଭାଙ୍ଗିଯିବ ପଛକେ ନଇଁବ ନାହିଁ । ପାପାତ୍ମା-ମାନଙ୍କର ଦଣ୍ଡବିଧାନ କ୍ଷତ୍ରିୟର କାର୍ଯ୍ୟ । ଭୀତହେବା କାପୁରୁଷତା ।"

ସ୍ତ୍ରୀ—ଏ କଥା ତ ସଞ୍ଜୟ୍ଙ୍କ ହୃଦୟରେ ଗଲି ଯାଇଥିବ, ସେ କଣ କହୁଥିଲେ ଭଲ ?

ସ୍ବାମୀ—ସେ କହିଲେ, "ମା ! ତୋର ହୃଦୟ କଣ ପାଷାଣରେ ଗଢ଼ା ହୋଇଛି ? ନା ଲୁହାରେ ଗଢ଼ା ହୋଇଛି ? ବିଧାତା କଣ ତୋ ହୃଦୟ-ମନ୍ଦିରରେ ଧାନେ ହେଲେ କରୁଣା ଜଥା ରଖି ନାହାନ୍ତି ? ଓଃ, କ୍ଷତ୍ରିୟଧର୍ମ କି କଠୋର !

"ଏକମାତ୍ର ପୁତ୍ର ତୋର ଲୋ ଜନନି,
ମୋ ବିନୁ ଅନ କେ ନାହିଁ,
କିପରି ଜନନି ! କହୁଛୁ ମତେ ଲୋ
ସମର କରିବା ପାଇଁ ।
ରଣ କ୍ଷେତ୍ରେ ଯାଇ ପଶିବି ଜନନି,
ସମରେ ହେଲେ ନିହତ,
କିପରି ତୋ ହୃଦ ସହିବ ଜନନି,
ନ ହେବୁ କିଲୋ ମୂର୍ଚ୍ଛିତ ?

ମୋ ମନ୍ତ୍ର ବାରତା ଧାଇଲା ବେଳେ ଲୋ
ତାଳିବୁ ନାହିଁ କି ଲୁହ ?
ଧନ ଅର୍ଜନ ଶ୍ରେଷ୍ଠ ରାଜ୍ୟ ସୁଖ
ଦେଲା କି ବନ୍ଧିବୁ କହ ?
ମାତା ହୋଇ ପରମାତା ପରି ମୋତେ
କରୁଛୁ ନିରବ ରଣ,
କି ସୁଖ ଲଭିବୁ କହ ଲୋ ଜନନୀ,
ହୋଇଲେ ମୋର ମରଣ ।"

ସ୍ତ୍ରୀ—( ଲୁହ ପୋଛୁ ପୋଛୁ ) ଅହା, ପିଲାଟା କଥା ଶୁଣି ତ ଛାତି ଫାଟି ଯାଉଛି । ଏ କଥା ଶୁଣି ବିଦୁଲା କଣ କହିଲେ ?

ସ୍ୱାମୀ—ବିଦୁଲା କହିଲେ—"ବତ୍ସ ! ସ୍ତ୍ରୀ ଲୋକମାନଙ୍କ ପରି କାତର ହୋଇ କ୍ରନ୍ଦନ କରିବା କ୍ଷତ୍ରିୟର ଧର୍ମ ନୁହେ । ମନୁଷ୍ୟ ଯେ ଅବସ୍ଥାରେ ଥାଉ ଧର୍ମ ଓ ଅର୍ଥ ଚିନ୍ତା କରିବା ମନୁଷ୍ୟର କର୍ତ୍ତବ୍ୟ । ଏ ଦୁଇ ବିଷୟ ଲାଭ କରିବା ପାଇଁ ମୁଁ ତତେ ଯୁଦ୍ଧକୁ ପଠାଉଛି । ମୁଁ ଜାଣେ, ତୋର ଅସାଧାରଣ କ୍ଷମତା ଅଛି । ଶତ୍ରୁକୁ ଆକ୍ରମଣ କରିବା ପାଇଁ ବେଳ ଆସିଛି । ଯଦି ଏ ସମୟ ଯାଏ, ତୁ ତୋର କର୍ତ୍ତବ୍ୟ ନ କରୁ, ତେବେ ତୋର ଭବିଷ୍ୟତ ଅନ୍ଧକାରମୟ ହେବ । ତୋ କୀର୍ତ୍ତି, ତୋ ଯଶ ଶୁଣିଲେ ମୋ ଜନ୍ମ ସାର୍ଥକ ହେବ । ପ୍ରାଣଭୟରେ ତତେ ଯେବେ ଯୁଦ୍ଧ ନ କରିବୁ, ତେବେ କେବଳ ଅକାରଣ ପୁତ୍ରସ୍ନେହ ଦେଖାଇବାର ହେବ । ଅଯଥା ଗେଲବସର କରି ପୁଅକୁ କର୍ତ୍ତବ୍ୟ ଶିକ୍ଷା ନ ଦେବା ମାତାର ଧର୍ମ ନୁହେ । ପୁଅ ଯେବେ ପଣ୍ଡିତ ହୁଏ, ପୁଅ ଯେବେ ପଚାଶିଜଣରେ ଜଣେ ହୁଏ; ପୁଅ ଯେବେ ଦୈବ ପୁରୁଷକାର ଉଭୟ ଥାଏ, ତେବେ ସେପରି ପୁଅ ଜନ୍ମ କଲେ

ମାତାର ଆନନ୍ଦ କେତେ ? ପୁତ୍ରପର ପୁତ୍ର ହୁଅ । ଯେଉଁ ପୁଅ ଆଳସ୍ୟପରାୟଣ, ଶୋଇ ଶୋଇ ପଶୁପରି ମୁଠାଏ ଖାଇ ଗଣ୍ଡେ ପିଇ କାଳ କାଟେ, ଯାହାଠାରେ ଉଦ୍ୟମ ନାହିଁ, ଯାହାର ଚରିତ୍ର ନାହିଁ, ଲୋକ ସମାଜରେ ଯେ ନିନ୍ଦିତ, ଅପମାନିତ, ସେ ପୁଅ ପୁଅ ନୁହେ । ତାର ଇହକାଳ ପରକାଳ କୌଣସିଠାରେ ସୁଖ ନାହିଁ । ଯୁଦ୍ଧ କରିବା କ୍ଷତ୍ରିୟର ଧର୍ମ । କ୍ଷତ୍ରିୟ ରଣକ୍ଷେତ୍ରରେ ମଲେ କିମ୍ବା ଜୟଲାଭ କଲେ ସେ ଇନ୍ଦ୍ରଲୋକ ପାଏ । କୀର୍ତ୍ତି ଲାଭ କରିବାପାଇଁ ସର୍ବଦା ଚେଷ୍ଟା କରିବ; କେବେ ଅଳ୍ପରେ ସନ୍ତୁଷ୍ଟ ହେବ ନାହିଁ, ଏପରି ଯେଉଁ ପୁତ୍ର ଆଚରଣ କରେ ସେହି କେବଳ ପୁତ୍ର ।”

ସ୍ତ୍ରୀ—ସଞ୍ଜୟ ଏ କଥା ଶୁଣି କଣ କହିଲା ?

ସ୍ୱାମୀ—ସଞ୍ଜୟ କହିଲା, “ମା, ଏଡ଼େ କଠୋର କଥା କହୁଛୁ କାହିଁକି ? ତୁ ମୋର ମା, ମତେ ଦଶମାସ ଗର୍ଭରେ ଧରି ଜନ୍ମ କରିଛୁ । ମତେ ଏପରି କଠୋର କଥା କହିବା ଅନୁଚିତ । ମୋ ପ୍ରତି ଦୟା ପ୍ରଦର୍ଶନ କରିବା ଉଚିତ ।” ଏ କଥା ଶୁଣି ବିଦୁଲା ଦେବୀ କହିଲେ, “ପୁତ୍ର ! ତୁ କହୁଛୁ ମୁଁ ଦୟା ପ୍ରକାଶ କରିବି । କଥାଟା ଶୁଣି ମନରେ ବଡ଼ ଆନନ୍ଦ ହେଲା । ହେ ପୁତ୍ର ! ଯେତେବେଳେ ଦେଖିବି ଯେ, ତୁ ସିନ୍ଧୁଦେଶ ଜୟ କରିଛୁ, ତେବେ ସମ୍ମାନ କରିବି । ତୁ ମନେ କରିଛୁ ଧନ ନାହିଁ, ସାଥିରେ କେହି ନାହିଁ, କି ଭରସାରେ ଜୟ କରିବୁ ? ଅର୍ଥ ଥିଲା ନାହିଁ, ସେଥିପାଇଁ ଆପଣାକୁ ସାନ ମଣୁଛୁ କାହିଁକି ? ଅର୍ଥ ନ ଥିଲେ ସଞ୍ଚୟ କରିବାକୁ ହେବ । ହାତରେ ଥିବା ଧନର ନାଶ ହୁଏ । ଅତି ମୂର୍ଖ ଲୋକ ମଧ୍ୟ କ୍ରୋଧରେ କାର୍ଯ୍ୟ ଆରମ୍ଭ କରନ୍ତି ନାହିଁ । ସବୁ କର୍ମର ଫଳ ଅନିତ୍ୟ । ପଣ୍ଡିତମାନେ ଜାଣନ୍ତି

କର୍ମଫଳ ଅନିତ୍ୟ ତଥାପି କର୍ମ କରନ୍ତୁ, କ୍ଷାନ୍ତ ହୁଅନ୍ତୁ ନାହିଁ । କେତେବେଳେ ଫଳ ମିଳେ, କେତେବେଳେ ନ ମିଳେ । ଯେଉଁମାନେ ଅଳସୁଆ, ଅକର୍ମା, ଯାହାର ଚେଷ୍ଟା ନାହିଁ, ଉଦ୍ୟମ ନାହିଁ, ଯତ୍ନ ନାହିଁ; ସେମାନେ କେବେ କୌଣସି ଫଳ ପାଆନ୍ତି ନାହିଁ । ଚେଷ୍ଟା କଲେ ଅବଶ୍ୟ ଫଳ ହେବ । ଦେବତା ବ୍ରାହ୍ମଣ ପୂଜା କର, ମଙ୍ଗଳ ପଦାର୍ଥ ଦର୍ଶନ କର, ଉଠ, ଜାଗ୍ରତ ହୋ, ଏବଂ ମଙ୍ଗଳଜନକ କର୍ମ କର । ଅବଶ୍ୟ ଜୟ ହେବ । ଅବଶ୍ୟ ଲକ୍ଷ୍ମୀ ବରଦାୟିକ ହେବେ । ଉଦ୍ୟମୀ ପୁରୁଷଙ୍କୁ ଅନେକ ବାଟ ଦିଶିବ । କ୍ରନ୍ଦନ ଭୟ ତ୍ୟାଗ କର, ପୁରୁଷ ପିଙ୍ଗରେ ଅଣ୍ଟାରେ ଲୁଗା ଭିଡ଼ି ଯୁଦ୍ଧକୁ ଯାଅ । ପ୍ରଥମେ ସର୍ଗୀ, ଲୋଭୀ, ଗର୍ବି, ଅବମାନନାକାଙ୍କ୍ଷୀ ଓ କପଟୀ ଲୋକଙ୍କୁ ବଶ କର । ତେବେ ପବନ ମେଘକୁ ଭେଦ କଲାପରି ତୁ ଶତ୍ରୁ ପକ୍ଷକୁ ଭେଦ କରି ପାରିବୁ । ସେମାନଙ୍କୁ ଧନ ଦେଇ, ତାହାର ହିତ ଚେଷ୍ଟା କରି, ତାହାଙ୍କୁ ମଧୁର ବଚନ କହି, ବଶ କର । ସେମାନେ ଅବଶ୍ୟ ପ୍ରିୟ ହେବେ । ବଶ କରି ନ ପାରିଲେ ଦଣ୍ଡ ବା ଦାନ କଥା ପକାଇବ । ଭେଦ ଦ୍ୱାରା ଏ କାର୍ଯ୍ୟ ହୁଏ । ମାଇପଙ୍କ ପରି କାନ୍ଦିଲେ ହେବ ନାହିଁ ।”

“ଉଠ ଉଠ ସୁତ ବିଳମ୍ବ ନ କର,
ଶତ୍ରୁ ନାଶିବାକୁ କରେ ଅସି ଧର ।
ଯାଅ ରଣକ୍ଷେତ୍ରେ କମ୍ପାଇ ମେଦିନୀ,
ଜନମ ମରଣ ସମାନରେ ଗଣି ।
ଯାଉ ଏ ଶରୀର ହେଉ କାର୍ଯ୍ୟ ସିଦ୍ଧି;
କର ଏହି ପଣ ଠାଣି କର ବୁଦ୍ଧି ।”

ସଞ୍ଜୟ କ୍ଷତ୍ରିୟ ସନ୍ତାନ, କ୍ଷତ୍ରିୟ ରକ୍ତ ତା ଶିରା ପ୍ରଶିରାରେ ବହୁଛି । ମାତାର କଟୂକ୍ତି, ମାତାର ଛଳୋକ୍ତି, ଉତ୍ସାହପୂର୍ଣ୍ଣ ବୀରବାଣୀ ସଞ୍ଜୟ ରକ୍ତକୁ ଗରମ କରିଦେଲା । ନାଗ ସାପ ପଦ୍ମତୋଳା ଶୁଣି ଫଣା ଟେକେ, ମାଟିଗଣ୍ଡ଼ି ଟେକେ ନାହିଁ । ସଞ୍ଜୟ ନାଗବଛା । ମାତା କଥାରେ ତାର ମନ ବଦଳିଲା । ଦ୍ୱିଗୁଣ ଉତ୍ସାହରେ ଯୁଦ୍ଧ କରିବାକୁ ପଣ କଲା । "ପିତୃରାଜ୍ୟ ଉଦ୍ଧାର କରିବ, ନ କରିପାରିଲେ ରଣକ୍ଷେତ୍ରରେ ପ୍ରାଣତ୍ୟାଗ କରିବ, ଅଉ ପୃଷ୍ଠଭଙ୍ଗ ଦେବ ନାହିଁ ।" ଏହି ପ୍ରତିଜ୍ଞାବଦ୍ଧ ହୋଇ ମାତାଙ୍କ ଆଶୀର୍ବାଦ ନେଇ ଯୁଦ୍ଧକୁ ଗଲା ଏବଂ ଜୟୀ ହେଲା ।

ଅଉ ପ୍ରକାରେ ଅଳସୁଆ ମାଟିବଣ୍ଡ଼ି ପିଲା ଅଛନ୍ତି; ସେମାନଙ୍କୁ "ଯେତେ ବୋଲୁଥିବ ବୋଲ, ତାଙ୍କ ଦେହଠାଯାଉ ଫୋଲ । ଯେତେ ମାରୁଥିବ ମାଠ, ତାଙ୍କ ଦେହଠାଯାଉ କାଠ— ସେ ସେହି ଦରଯୋଡ଼ା ଭାତ ।"

ସ୍ତ୍ରୀ—ମୋର ତ ଏ କଥା ଶୁଣି ଛାତି ଥରୁଛି । କଥା ଯାହା କହିଲ ସତ, ମାତ୍ର ମୋର ତ ଏ କଥା ଶୁଣି ଦେହ କିପରି ହୋଇ ଯାଉଛି ।

ସ୍ୱାମୀ—ନ ହେବ କାହିଁକି ? ଆଜି ସେ ସବୁ କଥା ସ୍ୱପ୍ନପରି ଲାଗୁଛି । ସେ କାଳ ଗଲାଣି । ରାଣୀ ଦୁର୍ଗାବତୀ ନିଜେ ଅଶ୍ୱପୃଷ୍ଠରେ ଚଢ଼ି ଯୁଦ୍ଧକ୍ଷେତ୍ରକୁ ଯାଇ ଯୁଦ୍ଧ କରିଥିଲେ । ପୃଥ୍ୱୀରାଜ ଯୁଦ୍ଧକୁ ଗଲାବେଳେ, ତାଙ୍କ ସ୍ତ୍ରୀ ତାଙ୍କୁ ଯୁଦ୍ଧ ବେଶ କରି ଦେଇଥିଲେ । ଦୁର୍ଗା ଯୁଦ୍ଧ କରି ମହିଷାସୁରକୁ ବଧ କରିଥିଲେ ଏବଂ ତାଙ୍କ ନାମ ଅଛି ମହିଷମର୍ଦ୍ଦିନୀ । ଭାରତରେ ଏପରି ସ୍ତ୍ରୀ ଥିଲେ । ଆଜି ଯୁଦ୍ଧ ନାମ ଶୁଣିଲେ, ତୁମ୍ଭ ଛାତି ଥରୁଛି । ଦେଖ ଦେଖି,

ଭାରତ ରମଣୀମାନଙ୍କର କି ଅଧଃପତନ ହୋଇଅଛି । ଅଜି ପୁଅ ଝିଅଙ୍କୁ ପାଠ ପଢ଼ି ଗଲେ ମାମାନଙ୍କ ଅକ୍ଷିରେ ଲୁହ ରହୁ ନାହିଁ । ସେମାନେ ପୁଅଙ୍କୁ ଶିକ୍ଷା ଦେବେ କଣ ? ସ୍କୁଲ୍ କଲେଜ ଅପେକ୍ଷା ଗୃହରେ ଶିକ୍ଷାର ବେଶି ମୂଲ୍ୟ ଅଛି । ଏ କଥା ସ୍ତ୍ରୀ ପୁରୁଷ ଉଭୟେ ନ ବୁଝିବା ଯାଏ, କିଛି ଫଳ ହେବ ନାହିଁ । ଶକ୍ତି ସଞ୍ଚାର କରିବା ବ୍ୟକ୍ତି ମାତା । ମାତା ଯେତେଦିନଯାଏ ନିଜର ଦାୟିତ୍ୱ ବୁଝିନାହାନ୍ତି, ପିଲାଙ୍କୁ ଆବଶ୍ୟକମତେ ଗଢ଼ି ନାହାନ୍ତି, ସେତେଦିନଯାଏ ସକଳ ଚେଷ୍ଟା ଅବଶ୍ୟ ରୋଦନରେ ପରିଣତ ହେବ ।

ସ୍ତ୍ରୀ—ସାହେବମାନେ ତାଙ୍କ ସ୍ତ୍ରୀଙ୍କୁ ଯେପରି ସ୍ୱାଧୀନତା ଦେଉଛନ୍ତି, ତମେମାନେ ଦେଉ ନାହଁ ?

ସ୍ୱା—ସାହେବମାନେ କଣ ଅଧିକ ସ୍ୱାଧୀନତା ଦେଉଛନ୍ତି ମ ? ତୁମେ ଦେଖୁଛ, ସାହେବାଣୀମାନେ ଦାଣ୍ଡରେ, ହାଟରେ ବୁଲୁଛନ୍ତି, ତମେ ବୁଝୁଛ ସେମାନେ ସ୍ୱାଧୀନ । ଭାରତବର୍ଷରେ ସ୍ତ୍ରୀଙ୍କୁ ଯେ ସ୍ଥାନ ଦିଆଯାଇଛି, ଅଉ କେଉଁ ଦେଶ ସେପରି ସ୍ଥାନ କେବେ ଦେଇ ନାହିଁ । ରମଣୀମାନଙ୍କ ସ୍ଥାନ ଆଗରେ । ଦେଖ ରାଧାକୃଷ୍ଣ, ସୀତାରାମ, ଉମାମହେଶ୍ୱର; ରତିମଦନ, ପାର୍ବତୀପରମେଶ୍ୱର, ଲକ୍ଷ୍ମୀନାରାୟଣ ଇତ୍ୟାଦିରେ ରମଣୀର ନାମ ଆଗ । ସ୍ତ୍ରୀଙ୍କୁ ଆଦ୍ୟାଶକ୍ତି କୁହାଯାଏ । ଶକ୍ତିର ବିନା ସାହାଯ୍ୟରେ ଭଗବାନ ମିଳନ୍ତି ନାହିଁ । ଏପରି ଆଦର୍ଶ ଅନ୍ୟ କୌଣସି ଦେଶରେ ନାହିଁ । ସ୍ତ୍ରୀମାନେ ସ୍ୱୟମ୍ବର ହେଉଥିଲେ । ସାବିତ୍ରୀ ଆଦର୍ଶ ରମଣୀ, ସତୀଶିରୋମଣି, ଭାରତୀୟ ନାରୀମାନଙ୍କ ମଧ୍ୟରେ ପୂଜ୍ୟା । ସେ ନିଜେ ସ୍ୱଚ୍ଛନ୍ଦଭାବରେ ଯାଇ ନାନା ସ୍ଥାନ ଭ୍ରମଣ କରି ନିଜର ପତି, ନିଜେ ବାଛୁଥିଲେ । ଦ୍ରୌପଦୀ,

ଦମୟନ୍ତୀ ପ୍ରଭୃତି ନିଜ ଇଚ୍ଛାନୁସାରେ ନିଜର ପତି ବରଣ କରିଥିଲେ । ଏମାନେ ରାଜକନ୍ୟା ଥିଲେ । ଏହାଠାରୁ ବଳି ଅଉ ଅଧିକ କି ସ୍ୱାଧୀନତା ଦିଆଯାଇପାରେ ? ଅବଶ୍ୟ କାଳକ୍ରମେ ସେ ଭାରତ ନାନାପ୍ରକାର ବୈଦେଶିକ ଆକ୍ରମଣ-ଦ୍ୱାରା ପ୍ରପୀଡ଼ିତ ହୋଇ ଅନେକ ନିଜତ୍ୱ ହରାଇଛି । ପରଦା ପ୍ରଥା ଏଥିମଧ୍ୟରୁ ଏକ ଦୃଷ୍ଟାନ୍ତ । ପୁନର୍ବାର ଦିନେ ଭାରତ ନିଜତ୍ୱ ଲାଭକରିବ । ଭାରତରେ ସ୍ତ୍ରୀ ପୁରୁଷ ମଧ୍ୟରେ ଯେପରି ପବିତ୍ର ସମ୍ବନ୍ଧ ଏବଂ ଭାରତର ଗୃହସ୍ଥାଶ୍ରମ ଯେପରି ଶାନ୍ତି ସୁଖ-ପ୍ରଦ, ଅନ୍ୟ କୌଣସି ଦେଶରେ ସେପରି ଦେଖାଯାଏ ନାହିଁ । ଅନ୍ୟାନ୍ୟ ଦେଶରେ କଥା କଥାକେ ସ୍ତ୍ରୀ ପୁରୁଷକୁ ଛାଡ଼ପତ୍ର ଦେଉଛି; ପୁରୁଷ ସ୍ତ୍ରୀକି ଛାଡ଼ପତ୍ର ଦେଉଛି । କଥା କଥାକେ ଅଦାଲତରେ ମାମଲା ମକଦ୍ଦମା ହୋଇ ସ୍ତ୍ରୀ ପୁରୁଷ ଛଡ଼ାଛଡ଼ି ହେଉଛନ୍ତି; ମାତ୍ର ଭାରତରେ ସେପରି ନାହିଁ । ଯେଉଁ ନିମ୍ନ ଶ୍ରେଣୀୟ ଲୋକଙ୍କ ମଧ୍ୟରେ ବିଧବା ବିବାହ, ଛାଡ଼ପତ୍ର ପ୍ରଥା ଅଛି, ସେମାନଙ୍କ ଘରେ ସେହି ଅଶାନ୍ତି । ଭାରତୀୟ ବିବାହ-ସମ୍ବନ୍ଧ ମଧ୍ୟରେ ପବିତ୍ର ଦେବଭାବ ବିଦ୍ୟମାନ । ତୁମେ କଣ ମନେ କରୁଛ, ଯେ ଯାହାକୁ ଯେତେବେଳେ ଇଚ୍ଛା ବିବାହ କରିବ, ଯେତେବେଳେ ଇଚ୍ଛା କରିବ ଛାଡ଼ିଦେବ, ଏ ପ୍ରଥା ଭଲ ?

ସ୍ତ୍ରୀ—ନାହିଁ ନାହିଁ, ଆମ ପ୍ରଥା ଭଲ ବୋଲି ଦେଖା ଯାଉଛି ।

---

## ଏକାଦଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ସମସ୍ତେ ଧର୍ମକୁ ଦୋହାଇ ଦେଉଛନ୍ତି, ଧର୍ମ କଣ ? ମୁଁ ତ କିଛି ବୁଝି ପାରୁ ନାହିଁ ?

ସ୍ୱା—ଅହେ, ଭାଗବତରେ ଅଛି "ଧର୍ମ ଧାରଣା ଏ ଜଗତ—ଧର୍ମେ ପୃଥିବୀ ଅଛଯାତ ।" ଏଥିରୁ ଜଣାଯାଉଛି ଧର୍ମ ଏ ଜଗତର ଧାରଣା ସ୍ୱରୂପ । ଧାରଣା କଣ ଜାଣ ଟିକି ? ଦେଖ ଆମ ଧାନକୋଠି ତଳେ କାଠର ଧାରଣା ପଡ଼ିଛି । ତା ଉପରେ କୋଠି ତିଆର ହୋଇଛି । ଧାରଣା ଶକ୍ତ ଥିବାରୁ କୋଠି ପଡ଼ି ନ ଯାଇ ଦୃଢ଼ଭାବରେ ଅଛି । ଧାରଣା ଯେବେ ପୋକଖିଆ ହୋଇଯିବ କି ଭାଙ୍ଗିପଡ଼ିବ, ତେବେ କୋଠିଟି ତଳେ ପଡ଼ିଯିବ । ସେହିପରି ଏ ପୃଥିବୀଟି ଧର୍ମ ଧାରଣା ଉପରେ ରହିଛି । ସୁତରାଂ ଧର୍ମ ପୃଥିବୀର ଧାରଣା । ଧର୍ମ କଣ ବୋଲି ପଗ୍ଗରିଲ ଯେ, ଧର୍ମ ଅବଶ୍ୟ କୋଠିଧାରଣା ପରି କାଠ, ପଥର ବା ଲୁହା ଧାରଣା ନୁହେଁ । ଧର୍ମ ଅର୍ଥ ସତ୍ୟ । ସତ୍ୟ ସନାତନ ଅର୍ଥାତ୍ ଥିଲା, ଅଛି, ରହିବ । ସତ୍ୟର କ୍ଷୟ ବୃଦ୍ଧି ନାହିଁ । ଅତୀତରେ ଯାହା ଥିଲା ବର୍ତ୍ତମାନ ତାହା ଅଛି ଏବଂ ଭବିଷ୍ୟତକୁ ତାହା ରହିବ । ଏପରି ଲକ୍ଷଣବିଶିଷ୍ଟ ଯେଉଁ ସତ୍ୟ, ସେ ପୃଥିବୀର ଧାରଣା ।

ସ୍ତ୍ରୀ—ସତ୍ୟ କଣ ?

ସ୍ୱା—ଯାହା ମିଥ୍ୟା ନୁହେ, ତାହା ସତ୍ୟ । ମିଥ୍ୟା ଅର୍ଥ ଯାହା ପ୍ରକୃତ ନୁହେଁ । ଯାହାର ଜନ୍ମ ମରଣ ଅଭିବୃଦ୍ଧି ଅଛି, ସେ ମିଥ୍ୟା; ଯାହା ଚିରସ୍ଥାୟୀ ନୁହେ ତାହା ମିଥ୍ୟା ।

ସ୍ତ୍ରୀ—ଏପରି କି ଜିନିଷ ଅଛି ଯେ, ସେ ଚିରକାଳ ଥିବ ? ଜନ୍ମ

ମରଣ ତ କାହାକୁ ଛାଡ଼ୁ ନାହିଁ । ପଶୁ, ପକ୍ଷୀ, କୀଟ, ପତଙ୍ଗ ପର୍ଯ୍ୟନ୍ତ ଜନ୍ମ ମରଣ ବାରଣ କରି ପାରୁ ନାହାନ୍ତି । ଗଛପତ୍ରଙ୍କ ଦଶା ତ ସେହିପରି । ଆଉ ଏପରି କି ଜିନିଷ ଅଛି ଯେ, ସେ କେବେ ମରିବ ନାହିଁ, ଜନ୍ମ ହେବ ନାହିଁ ମ ?

ସ୍ୱା—ପୃଥିବୀରେ ଗୋଟିଏ ମାତ୍ର ଜିନିଷ ଅଛି; ସେ ଜନ୍ମେ ନାହିଁ, ମରେ ନାହିଁ, ତାର କ୍ଷୟ ନାହିଁ, ବୃଦ୍ଧି ନାହିଁ, ସେ କିଏ ଜାଣ ?—ପରମେଶ୍ୱର । ତାକୁ କିଏ ବ୍ରହ୍ମ ବୋଲି କହେ, କିଏ ପରମାତ୍ମା ବୋଲି କହେ, କିଏ ପରମେଶ୍ୱର ବୋଲି କହେ, ଇତ୍ୟାଦି । ସେ କେବଳ ଅଜର, ଅମର । ସେ ଏ ପୃଥିବୀର ପ୍ରାଣ ବା ଧାରଣା ।

ସ୍ତ୍ରୀ—ସେ କେଉଁଠି ଥାନ୍ତି ?

ସ୍ୱା—ସେ ସବୁଠାରେ ଅଛନ୍ତି । ଭାଗବତ ପଢ଼ି ନାହିଁ ? ସେଥିରେ ପଦ ଅଛି, "କାଷ୍ଠ ପାଷାଣ ତରୁ ତୃଣେ । ବସନ୍ତି ଅନାଦି କାରଣେ ।" ସେ ନାହାନ୍ତି ଏପରି ସ୍ଥାନ ନାହିଁ । ସମସ୍ତେ ତାଙ୍କଠାରୁ ଜାତ, ମାତ୍ର ସେ କାହାରିଠାରୁ ଜାତ ହୋଇ ନାହାନ୍ତି । ସେ ପରମବ୍ରହ୍ମ ସତ୍ୟ, ଆଉ ସବୁ ମିଥ୍ୟା ।

ସ୍ତ୍ରୀ—ଅଚ୍ଛା, ସେ ଆମ ଦେହରେ ଅଛନ୍ତି ?

ସ୍ୱା—ଆମ ଦେହରେ ନ ଥିଲେ ଆମେ ବଞ୍ଚିଥାନ୍ତେ କିପରି ମ ? ସେ ଥିବାରୁ ସିନା ଏ ଘଟ ଚେତାଘଟ ହୋଇ ବୁଲୁଛି, ଚାଲୁଛି । ସେ ଚୈତନ୍ୟ, ତାଙ୍କ ବ୍ୟତୀତ ଆଉ ସବୁ ଜଡ଼ପିଣ୍ଡ । ତାଙ୍କ ଉପସ୍ଥିତି ହେତୁ ଏ ଦେହ ଜୀବିତ ଅଛି । ସେ ଏ ଘଟ ଛାଡ଼ିଲେ ଏ ମାଟିପିଣ୍ଡ ପଡ଼ି ରହିବ, ଆଉ ଚାଲିବ ନାହିଁ । ତମେ କହିବ, ସେ ଯେବେ ଅଛନ୍ତି । ଆମେ ଜାଣି ପାରୁ ନ ଥାଉଁ କିପରି ? ଗୋଟାଏ ସହଜ କଥାରେ ଏଥିର ଉତ୍ତର ଜାଣି ପାରିବ । ତମେ କହ ଏ ଘର ମୋର ? ତମେ କଣ ଘର ?

ସ୍ତ୍ରୀ—ନା, ମୁଁ ଅଲଗା, ଘର ଅଲଗା, ମୁଁ ଘରର ମାଲିକ।

ସ୍ୱାମୀ—ବେଶ୍ କଥା, ସେହିପରି ତୁମେ କହ ଏ ଦେହଟା ମୋର, ତେବେ ତ ତୁମେ ଦେହ ନୁହ। ତୁମ କଥା ଅନୁସାରେ ତୁମେ ଦେହର ମାଲିକ ହୋଇପାର। ତେବେ ଯେ କହୁଛ ଏ ଦେହ ମୋର ବୋଲି, ସେ ଦେହ ନୁହେ, ମାତ୍ର ଦେହର ମାଲିକ। ସେ ପରମାତ୍ମା। ସେ ତ ଆମ ଦେହରେ ଅଛନ୍ତି, ତାଙ୍କୁ ଯେଉଁଠି ଖୋଜିବ ସେଠି ଅଛନ୍ତି। ପ୍ରହ୍ଲାଦ ବିଶ୍ୱାସ କଲା ଖମ୍ବରେ ଅଛନ୍ତି, ସେ ଖମ୍ବରୁ ବାହାରିଲେ ନରି। ସେ ଏ ପୃଥିବୀର ଧାରଣା। ସେ ଧର୍ମର ମୂଳ। ଏ ସୃଷ୍ଟି ଭଗବାନଙ୍କର। ଲୋକହିତ ଲାଗି, ଏ ସୃଷ୍ଟି ରକ୍ଷାଲାଗି ପୃଥିବୀର ଯାବତୀୟ ପ୍ରାଣୀ ଦାୟୀ। ପ୍ରତ୍ୟେକର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ଅଛି। ପ୍ରତ୍ୟେକ ପ୍ରାଣୀ, ପ୍ରତ୍ୟେକ ବସ୍ତୁ ନିଜ ନିଜର କର୍ତ୍ତବ୍ୟ ପାଳନ କଲେ ଏ ସୃଷ୍ଟି ସୁପାଳିତ ହେବ। ଯେ ନିଜର କର୍ତ୍ତବ୍ୟ ନ କରିବ, ସେ ପାପରେ ଦାୟୀ ହେବ। ଯେ କର୍ତ୍ତବ୍ୟ କର୍ମ କରିବ, ସେ ପୁଣ୍ୟ ଲାଭ କରି ଈଶ୍ୱର ସାକ୍ଷାତ୍କାର ଲାଭ କରିବ। ଏହି କର୍ତ୍ତବ୍ୟକର୍ମକୁ ଧର୍ମ କୁହାଯାଏ। ଭଗବାନଙ୍କୁ ଜାଣିବା, ତାଙ୍କ ନିର୍ଦ୍ଦିଷ୍ଟ ଧର୍ମ ପଥରେ କାର୍ଯ୍ୟ କରିବା ପ୍ରତ୍ୟେକର ଧର୍ମ। ଯେ ଏ ପୃଥିବୀକୁ ଧାରଣ କରିଛନ୍ତି, ତାଙ୍କ ସୃଷ୍ଟି ରକ୍ଷା ଉଦ୍ଦେଶ୍ୟରେ ଯେଉଁ କର୍ତ୍ତବ୍ୟ କର୍ମ କରାଯାଏ, ତାହା ଧର୍ମ। ଧର୍ମ ସମ୍ବନ୍ଧରେ ଭାଗବତ କହୁଛି—"ଧନ ଅର୍ଜିଲେ ଧର୍ମ କର, ଧର୍ମେ ପ୍ରାପତ ନରହରି"। ଈଶ୍ୱର ବା ପରମେଶ୍ୱର ସତ୍, ଧର୍ମ ସତ୍, ସୁତରାଂ ସତ୍‌କର୍ମନିରତ ହେବା ମନୁଷ୍ୟର ଧର୍ମ। ସତ୍‌କର୍ମ କଣ? ଯାହା ସୃଷ୍ଟି ପାଳନର ପୋଷକ, ତାହା ସତ୍‌କର୍ମ। ପରମେଶ୍ୱରଙ୍କର ଆମେମାନେ ହାତବାରଣୀ ପର। ଆମେମାନେ ଅସତ୍

ପଥରେ ଗଲେ, ପରମେଶ୍ୱରଙ୍କ ସୃଷ୍ଟିରେ ଗଣ୍ଡଗୋଳ ହେବ ଏବଂ ତାହାର ଫଳସ୍ୱରୂପ ଆମେମାନେ ପାପଭାଗୀ ହୋଇ ଅଧୋଗତି ଲାଭ କରିବା । ଏଣୁ ପ୍ରତ୍ୟେକ ପ୍ରାଣୀ ଧର୍ମରେ ରହି ନିଜ ନିଜର କର୍ତ୍ତବ୍ୟ କରିବ ।

ସ୍ତ୍ରୀ—ଏ ପୃଥିବୀରେ ତ ଅସଂଖ୍ୟ କାମ ଅଛି, ତାହି ମଧ୍ୟରୁ କେଉଁଟି ଧର୍ମ, କେଉଁଟି ଅଧର୍ମ, କିପରି ଜଣାଯିବ ମ ? ଏ କଥା ଠିକଣା କରୁ କରୁ ତ ଦିହକ ବିତିଯିବ ।

ସ୍ୱାମୀ—ନାହିଁ, ତମକୁ ଏତେ କାମ କରିବାକୁ ହେବ ନାହିଁ । ପୂର୍ବକାଳରୁ ଯୋଗୀ, ଋଷି, ମୁନି, ମହାତ୍ମା, ମହାପୁରୁଷ, ସ୍ୱୟଂ ଭଗବାନ ମଧ୍ୟ ସମୟ ସମୟରେ ଅବତୀର୍ଣ୍ଣ ହୋଇ ଧର୍ମପୁସ୍ତକମାନ ଲେଖି ଯାଇଛନ୍ତି । ଆମେମାନେ ବଡ଼ ଭାଗ୍ୟବାନ୍ ଯେ, ସେ ସବୁ ସ୍ଥିର କରିବା ପାଇଁ ବେଶୀ ପରିଶ୍ରମ କରିବାକୁ ହେବ ନାହିଁ । ଏ ବିଷୟରେ ଅନେକ ଶାସ୍ତ୍ର ଲେଖା ହୋଇ ରହିଛି, ପଢ଼ି ଜାଣିଲେ ହେଲା । ଧର୍ମଶାସ୍ତ୍ର ପାଠ କଲେ, ଆମର କଣ ଧର୍ମ, କଣ କର୍ତ୍ତବ୍ୟ, ଏ କଥା ଜାଣି ପାରିବା ଏବଂ ତଦନୁସାରେ କାମ କଲେ, କିଛି କ୍ଷତି ହେବ ନାହିଁ, ଅଗଗୋଡ଼ରେ କଣ୍ଟା ବାଜିବ ନାହିଁ ।

ସ୍ତ୍ରୀ—ଶାସ୍ତ୍ରରେ କଣ ସବୁ କର୍ମ ଅକର୍ମ ବିଷୟ ଲେଖା ହୋଇଛି ?

ସ୍ୱାମୀ—ନିଶ୍ଚୟ; ପୁରାଣ, ବେଦ, ସ୍ମୃତି, ଶ୍ରୁତି; ଅନେକ ଧର୍ମଶାସ୍ତ୍ରରେ କେଉଁ କାର୍ଯ୍ୟ କର୍ତ୍ତବ୍ୟ, କେଉଁ କାର୍ଯ୍ୟ ଅକର୍ତ୍ତବ୍ୟ ଲେଖା ଅଛି । ଭଗବାନଙ୍କ ଭଜନ, ସ୍ମରଣ କିପରି କରିବାକୁ ହେବ, କିପରି ପୂଜା କରିବାକୁ ହେବ, ଇତ୍ୟାଦି କଥା ଧର୍ମଶାସ୍ତ୍ରମାନଙ୍କରେ ଲେଖା ଅଛି । ଶାସ୍ତ୍ରରେ ଲେଖାଥିବା ବିଧିବିଧାନ-

ମାନ ଲଙ୍ଘିଲେ ବିପଦ ଅଛି । ଶାସ୍ତ୍ର ବିଧି ଅନୁସାରେ କାର୍ଯ୍ୟ କଲେ ଜୀବନର ମଙ୍ଗଳ ହେବ ।

ସ୍ତ୍ରୀ—ଶାସ୍ତ୍ର ଲେଖିଲା ଏ କାମ କରିବ, ଏ କାମ ନ କରିବ, ତେବେ ଅଜ ଭଗବାନଙ୍କ ପୂଜା କରିବ କାହିଁକି ?

ସ୍ୱା—ଭଗବାନ ପରା ଏ ସୃଷ୍ଟିର ମୂଳ । ସେ ପରା ଧର୍ମର ମୂଳ । ଆମେ ଯେ ମଣିଷ ଜନ୍ମ ପାଇଲେଇଁ, ଆଉ ଯେ ଏ ଧର୍ମ ଅଧର୍ମ ବିଷୟ ବୁଝିବାର କ୍ଷମତା ହେଲା, ଏ ସମସ୍ତର ମୂଳରେ ଭଗବାନ । ସେ ସୃଷ୍ଟିକର୍ତ୍ତା । ସେ ଏ ବିଶ୍ୱସୁନ୍ଦର ସୃଷ୍ଟି କରିଛନ୍ତି । ପ୍ରାଣୀମାନଙ୍କ ଖାଦ୍ୟଲାଗି କେତେ କେତେ ପଦାର୍ଥ ସୃଷ୍ଟି କରିଛନ୍ତି । ରୋଗ ହେଲେ ଔଷଧ ଗଢ଼ିଛନ୍ତି, ଆଲୋକ ପାଇଁ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ତାରା ଆକାଶରେ ଖଞ୍ଜି ଦେଇଛନ୍ତି । ମନୁଷ୍ୟ ଯାହା କିଛି ଏ ସଂସାରରେ ଭୋଗକରୁଛି, ତାର କାରଣ ଭଗବାନ । ଆମେମାନେ ଭଗବାନଙ୍କ ନିକଟରେ କେତେ-ପ୍ରକାର ଋଣୀ, ତାର ସୀମା ନାହିଁ । ଜୀବ କେତେ କେତେ ଯୋନିରେ ଜନ୍ମ ଗ୍ରହଣ କଲାପରେ ମନୁଷ୍ୟ ଦେହ ଧାରଣ କରିଛି । ସୁତରାଂ ଭଗବାନ ଆମମାନଙ୍କର ପୂଜ୍ୟ ଓ ନମସ୍ୟ । ଭାଗବତ କହୁଛି, "ମାନବ ଜନମ ଦୁର୍ଲ୍ଲଭ, ଯେବେ ଗୋବିନ୍ଦେ କର ଭାବ ।" ସବୁ କର, ମାତ୍ର ସଦା ଈଶ୍ୱରଙ୍କ ସକାଶେ କରୁଛ ବୋଲି ବିଶ୍ୱାସ ଥାଏ, ତେବେ ସଂସାରରେ କିଛି ଦୁଃଖ ନାହିଁ । ସବୁ ଖାଅ, ମାତ୍ର ପରମେଶ୍ୱରଙ୍କୁ ନୈବେଦ୍ୟ କରି ଖାଇଲେ ପରମ ଆନନ୍ଦ ଅଛି । ଯେଉଁମାନଙ୍କ ମନରେ ଅହଂ-କାର ଅଛି, ସେମାନେ ସବୁ ନିଜପାଇଁ କରୁଛନ୍ତି ବୋଲି କହନ୍ତି । ସେମାନେ ମୂଢ଼, ଅଜ୍ଞାନୀ; ସେମାନେ ଅପରାଧ କର୍ମଫଳ ଅପେ ଭୋଗନ୍ତି । ଯେଉଁମାନେ ଭଗବାନଙ୍କଠାରେ ନିର୍ଭର

ରଖି ସକଳ କର୍ମ କରନ୍ତି, ସେମାନେ ମନରେ ସର୍ବଦା ଶାନ୍ତି ସୁଖ ଭୋଗକରନ୍ତି । ଭଗବାନଙ୍କଠାରେ ବିଶ୍ୱାସ ଥିଲେ, ତୋର ମୋର କିଛି ରହେ ନାହିଁ । ସେ ସକଳ ପ୍ରାଣୀଙ୍କି ସମାନ ଦୃଷ୍ଟିରେ ଦେଖନ୍ତି । ସବୁଠାରେ ତ ଭଗବାନ ଅଛନ୍ତି, କାହାକୁ କହିବ ପର, କାହାକୁ କହିବ ଆପଣାର ? ଗୃହସ୍ଥାଶ୍ରମ ସୁଖକର, ଯେବେ ଗୃହସ୍ଥ ମନେକରେ ଯେ; ଏ ଈଶ୍ୱରଙ୍କ ଫୁଲବାଡ, ସେ କେବଳ ଈଶ୍ୱରନିର୍ଦ୍ଦିଷ୍ଟ ମାଳୀ । ମଣିଷ କାମ କରିବ, ମାତ୍ର ଈଶ୍ୱରଙ୍କ ସୃଷ୍ଟି ରକ୍ଷାଲାଗି, ଲୋକହିତଲାଗି କାମ କରୁଛି ବୋଲି ବିଶ୍ୱାସ ଥିଲେ କର୍ମ କରିବାରେ ଆନନ୍ଦ ଅଛି । ଈଶ୍ୱରନିର୍ଭରତା ଥିଲେ ମନୁଷ୍ୟ ଅବାଟକୁ ଯିବ ନାହିଁ, ଅକର୍ମ କରିବ ନାହିଁ, ଅକଥା କହିବ ନାହିଁ, ଅନାଚାର କରିବ ନାହିଁ, କାରଣ ଏ ସବୁ ଈଶ୍ୱରବିରୁଦ୍ଧ କାର୍ଯ୍ୟ । ଏପରି ଯେଉଁମାନେ ଅକାର୍ଯ୍ୟ କରନ୍ତି, ସେମାନେ ଈଶ୍ୱରଙ୍କର ଅପ୍ରିୟ ହୁଅନ୍ତି । ଏମାନଙ୍କ ଅଧର୍ମାଚରଣ ବଢ଼ିଲେ, ଭଗବାନ ନିଜେ ଅବତାର ଗ୍ରହଣ କରି ଧର୍ମ ସଂସ୍ଥାପନ କରନ୍ତି, ଅଧର୍ମକୁ ବିନାଶ କରନ୍ତି । ଅଧର୍ମାଚାରୀମାନେ ରାକ୍ଷସ । ପୁରାଣ ପଢ଼ି ନାହଁ ? ରାକ୍ଷସମାନେ ଅତ୍ୟାଚାରୀ ହୋଇ ଉଠିଲେ ଭଗବାନ ସମ୍ଭାଳି ପାରନ୍ତି ନାହିଁ । ସେ ନିଜେ ଅବତାର ଗ୍ରହଣ କରି ରାକ୍ଷସମାନଙ୍କୁ ମାରନ୍ତି ।

ସ୍ତ୍ରୀ—ଯେଉଁମାନେ ଅଧର୍ମ କରନ୍ତି, ସେମାନେ କଣ କିଛି ଦଣ୍ଡ ଭୋଗ କରନ୍ତି ?

ସ୍ୱା—ଦଣ୍ଡ ଭୋଗ କରନ୍ତି, ଯେଉଁ ପାପକୁ ଯହିଁ ଯେପରି ଦଣ୍ଡ ପାନ୍ତି । କିଏ ନୀଚ ଯୋନିରେ ଜନ୍ମ ହୁଏ, କିଏ ଉତ୍କଟ ରୋଗ ଯନ୍ତ୍ରଣା ଭୋଗ କରେ, ସେ କଥା ଶାସ୍ତ୍ରରେ ଲେଖା ଅଛି । ଯେଉଁ କର୍ମ କଲେ ଯେପରି ଫଳ ମିଳିବ, ସେ କଥା ଶାସ୍ତ୍ରରେ ଅଛି ।

ମଣିଷର ଜ୍ଞାନ ଅଛି, ସେ ନ୍ୟାୟ ଅନ୍ୟାୟ ଜାଣିପାରେ । ସବୁ ଜାଣି ଶୁଣି ଯେବେ ଅଗ୍ନେ ନିଅଁରେ ହାତ ଦେବା, ହାତ ପୋଡ଼ିଯିବ ନାହିଁ ? ସୁତରାଂ ଧର୍ମାଚରଣ କରିବା ମନୁଷ୍ୟର କର୍ତ୍ତବ୍ୟ । ଧର୍ମ ସତ୍ୟ—ଧର୍ମ ସନାତନ ।

---

## ଦ୍ୱାଦଶ ପରିଚ୍ଛେଦ

ସ୍ତ୍ରୀ—ଏ ପିଲାଗୁଡ଼ାକ ମତେ ବଡ଼ ବିରକ୍ତ କରୁଛନ୍ତି ! ଟିକିଏ ସୁଅର ବସାଇ ଦେଲେ ନାହିଁ । ମଣିଷ ମରିଗଲେ ବାହୁ ପାଆନ୍ତା ।

ସ୍ୱା—ହଇ ହେ, ଅଳ୍ପ ଏତେ ଖପା କିଅଁ ? ପିଲା ଯାହାଙ୍କର ନାହିଁ, ସେମାନେ ପିଲାଟିଏ ହେବାପାଇଁ କେତେ ଦିଅଁ ଦେବତା ପୂଜୁଛନ୍ତି । ବାଣ୍ଟରେ ଅନ୍ୟପିଲା ଦେଖିଲେ ଆଖିରେ ଲୁହ ଗଡ଼ାଉଛନ୍ତି । ସୁତ ଧନ ସେହି ଜାଣନ୍ତି । ତମର ପିଲା ହେଲା, ତେବେ ପୁଣି ତମେ ବିରକ୍ତ, ଏଥିରେ ପିଲା ହେବା ଭଲ କି ନ ହେବା ଭଲ, କିଛି ବୁଝିପାରୁ ନାହିଁ ।

ସ୍ତ୍ରୀ—ମ, ମୁଁ କଣ ପିଲା ନ ହେବା କଥା କହୁଛି ? ପିଲାଟା ଅଙ୍ଗଟ ହେଲା ବୋଲି, ମନ ରଡ଼ିଲା ବୋଲି ପ କଥା କହୁଦେଲି ନା । ପିଲା ନ ଥିଲେ ସେ ଘର କଣ ଘର ପରି ଲାଗେ ? ଯେତେ ଇଚ୍ଛା ତେତେ ସମ୍ପତ୍ତି ବାଡ଼ି ଥାଉ, ଟଙ୍କା ଥାଉ, ଯାନ ବାହାନ ଥାଉ, କୋଠାରେ ଯେବେ ପିଲା ଖେଳୁନାହିଁ, ତେବେ ସେ ସବୁ ବୃଥା । ଯେଉଁ ଗୁଡ଼ାକ ମଡ଼ଛୀ, ଯେଉଁ ଗୁଡ଼ାକ ବାଞ୍ଝ, ତାଙ୍କ ମୁହଁ ଗୃହିଁଲେ ଅମଙ୍ଗଳ ବୋଲି କହନ୍ତି ପରା ! କୌଣସି ଶୁଭକାର୍ଯ୍ୟରେ ସେମାନଙ୍କ ମୁହଁ ଗୃହିଁ ଅନୁକୂଳ କରିବାକୁ

ମନା କରନ୍ତୁ ପରା ! ସନ୍ତାନ ସ୍ତ୍ରୀଜାତିର ଭୂଷଣ, ନିଃସନ୍ତାନ ହେଲେ ତ ଦୂଷ ।

ସ୍ୱା—ଏ କଥା ଜାଣ ଠିକ ? ଭଗବାନ ତ ସନ୍ତାନ ଦେଉଛନ୍ତି, ଅଉ ସେମାନଙ୍କ ଉପରେ ବିରକ୍ତ ଚାହିଁକି ? ପିଲାଙ୍କ ଅଳଙ୍ଗଳ ଅନାଦରରେ ସହିବ । ମାତାର ଦାୟିତ୍ୱ ବଡ଼ ବେଶୀ । ମା ହେବା ତ ସହଜ କଥାଟିଏ ନୁହେ । ପିଲା ଗର୍ଭରେ ରହିବା ଦିନଠାରୁ ପିଲା ମଣିଷ ହେବା ପର୍ଯ୍ୟନ୍ତ ମା'କୁ ନାନାଦି କଷ୍ଟ ସହିବାକୁ ପଡ଼େ । ଆମମାନଙ୍କ ଅର୍ଯ୍ୟଋଷିମାନେ ସନ୍ତାନ ହେବା ବିଷୟରେ ବହୁତ କଡ଼ା ନିୟମ କରିଛନ୍ତି । କିପରି ବୀର ସନ୍ତାନ ହେବ, କିପରି ଧାର୍ମିକ ସନ୍ତାନ ହେବ, କିପରି ଦୀର୍ଘଜୀବୀ ସନ୍ତାନ ହେବ, କିପରି ସବଳ ସୁସ୍ଥ ସନ୍ତାନ ହେବ, କିପରି ସୁକନ୍ୟା ହେବ, ଏଥିଲାଗି ପିତା ମାତା ଦାୟୀ । ଏଥିଲାଗି ପିତା ମାତାଙ୍କୁ ବହୁତ ନିୟମ ପାଳିବାକୁ ହେବ ।

ସ୍ତ୍ରୀ—ମା ବାପ କଣ କରିବେ ମ ? ସେ ତ ଈଶ୍ୱର ଘଟଣା କଥା, ମଣିଷ ହାତରେ କଣ ଅଛି ମ ? ତମେ ସବୁ କଥାରେ ଗୋଟାଏ ନୂଆ କଥା ବାହାର କର ।

ସ୍ୱା—ଅହେ ନାହିଁ ହେ, ମୁଁ କିଛି ନୂଆ କଥା କହୁ ନାହିଁ । ମୁଁ ଯାହା କହୁଛି ସବୁ ପୁରୁଣା କଥା, ଶାସ୍ତ୍ର କଥା । ମୋର ଏଥିରେ ମନଗଢ଼ା କଥା କିଛି ନାହିଁ, ତମର ଅବିଶ୍ୱାସ ହେଲେ ଶାସ୍ତ୍ର ପଢ଼ । ସନ୍ତାନ ଗର୍ଭରେ ରହିବା ପୂର୍ବରୁ କେତେକ ନିୟମରେ ରହିବ, ସନ୍ତାନ ଜନ୍ମ ପରେ ଅନ୍ତତଃ ପାଞ୍ଚବର୍ଷ ପର୍ଯ୍ୟନ୍ତ କେତେକ ନିୟମ ପାଳିବ ।

ସ୍ତ୍ରୀ—ସନ୍ତାନ ହେବା ପୂର୍ବରୁ କଣ ନିୟମରେ ରହିବ ?

ସ୍ତ୍ରୀ—କେବଳ ସ୍ତ୍ରୀ ନୁହେ, ଉଭୟ ପୁରୁଷ ସ୍ତ୍ରୀ ସେତେବେଳେ ନିୟମାଧୀନରେ ରହିବେ । ହିନ୍ଦୁଋଷିମାନଙ୍କ ମତରେ, କେବଳ ଋତୁ ସମୟ ସହବାସ ଲାଗି ଉପଯୁକ୍ତ ସମୟ । ଋତୁ ସମୟ ୧୬ ଦିନ ମଧ୍ୟରୁ ପ୍ରଥମ ପାଞ୍ଚଦିନ ନିଷେଧ । ପାଞ୍ଜିରେ ଯେ ସବୁ ଦିନ ନିଷେଧ ବୋଲି ଲେଖା ଅଛି, ସେ ଦିନ ସବୁ ନିଷେଧ । ସ୍ତ୍ରୀ ପୁରୁଷ ଉଭୟଙ୍କର ଉତ୍ତମ ସତ୍ପୁତ୍ର ବା କନ୍ୟା ଲାଭ ବାଞ୍ଛା ମନରେ ଥିବ । ପରେ ସନ୍ତାନ ଗର୍ଭରେ ରହିଲେ ମାତାକୁ ବହୁତ ନିୟମ ପାଳିବାକୁ ହେବ । ସର୍ବଦା ସତ୍-କଥାରେ ମନ ଥିବ, ପୁରାଣ ପ୍ରଭୃତି ଧର୍ମଶାସ୍ତ୍ର, ବୀର ବୀରାଙ୍ଗନା-ମାନଙ୍କ କାହାଣୀ ପାଠ, ଉତ୍ତମ ଚିତ୍ର ଦର୍ଶନ, ସଂଯତ ଆହାର, ଯେତେବେଳେ ଯେଉଁ ଆହାର ଖାଇବାକୁ ଇଚ୍ଛା ହେବ ଖାଇବ, ଏପରି ନିୟମରେ ଚଳିବାକୁ ହେବ । ପିଲାର ପ୍ରକୃତି ଏ ସମସ୍ତ ଉପରେ ଅନେକ ପରିମାଣରେ ନିର୍ଭର କରେ । ଏ ବିଷୟ ପୂର୍ଣ୍ଣଭାବରେ ଜାଣିବାକୁ ଇଚ୍ଛା କଲେ, ରତିଶାସ୍ତ୍ର ପାଠ କରିବା ଆବଶ୍ୟକ । ପିଲା ଜନ୍ମ ପରେ ପିଲାର ମା'କ୍ଷୀର ଆହାର । ମାତାର ଆହାର ଉପରେ ଛୁଆର ସ୍ୱାସ୍ଥ୍ୟ ବହୁ ପରିମାଣରେ ନିର୍ଭର କରେ । ଯେତେ ଦିନ ପିଲା ମା'ଦୁଧ ଖାଇବ, ସେତେ ଦିନ ମା ସଂଯତ ଆହାର କରିବ । ଯଦି ପିଲା କୌଣସି କାରଣରୁ ମା କ୍ଷୀର ନ ଖାଇ ଛାଡ଼ିଦିଏ, ତେବେ ପିଲାକୁ ଛେଳିଦୁଧ ବା ଗାଈଦୁଧ ଖାଇବାକୁ ଦେବ । ଯେଉଁ ଛେଳି ବା ଗାଈର ଦୁଧ ପିଲା ଖାଇବ, ସେ ଛେଳି ବା ଗାଈଠାରେ ଯେପରି କୌଣସି ରୋଗ ନ ଥାଏ ଏବଂ ସେ ସୁସ୍ଥ ସବଳ ହୋଇଥାଏ, ତହିଁ ପ୍ରତି ଦୃଷ୍ଟି ଦେବ । ସେ ଗାଈ ବା ଛେଳି ରୋଗୀ ହୋଇଥିଲେ, ସେମାନଙ୍କ ଦୁଧ ଖାଇ ପିଲାର ରୋଗ

ହୋଇପାରେ । ଆଉ ତ ପିଲାଙ୍କ ଶିକ୍ଷା ସମ୍ବନ୍ଧରେ ଆଗେ କହୁଛୁ ।

ସ୍ତ୍ରୀ—ଏତେ ନିୟମ ଆଜିକାଲି କିଏ ପାଳୁଛି ମ ?

ସ୍ୱାମୀ—ହଁ, ପାଳୁ ନାହାନ୍ତି, ମାତ୍ର ଶାସ୍ତ୍ର ତ ମିଛ ନୁହେ । ତମେ ଶାସ୍ତ୍ର ନ ମାନିଲେ ଶାସ୍ତ୍ର କଣ କରିବ ? ନ ମାନିଲେ ଯେଉଁ ଫଳ ହେବ, ତାହା ସବୁ ତ ଭୋଗ କରିବ ? ଶାସ୍ତ୍ର ବିଧି ନ ମାନିବାରୁ ଫଳ କଣ ହେଉଛି ଦେଖିଲ ଦେଖି । ଆଜିକାଲି ପିଲାଗୁଡ଼ାକ ସ୍ୱଳ୍ପାୟୁ, କ୍ଷୀଣଶରୀର, ମନ୍ଦବୁଦ୍ଧି, ବିକଳାଙ୍ଗ, ରୋଗଗ୍ରସ୍ତ ହେଉଛନ୍ତି । ଏବେ ଯେ ମନୁଷ୍ୟ ହେଉଛନ୍ତି, ସେ ତ ବାଇଗଣ ଗଛକୁ ଅଙ୍କୁଶ ଲଗାଇବେ । ଏହି ଦେଶରେ ଭୀମ ଅର୍ଜୁନପରି ପଞ୍ଚହତା ବୀର ଧନୁର୍ଦ୍ଧରମାନେ ଜନ୍ମ ହେଉଥିଲେ । ଏହି ଦେଶରେ ଭଗବାନ ବାର ବାର ମାନବଯୋନିରେ ଅବତୀର୍ଣ୍ଣ ହେଉଥିଲେ, ଏହି ଦେଶରେ ଋଷି ମୁନିମାନେ ଶାସ୍ତ୍ର-ସମୁଦ୍ର ମନ୍ଥନ କରି ତହିଁର ସାର ସିଦ୍ଧାନ୍ତମାନ ଆମମାନଙ୍କପାଇଁ ରଖିଯାଇଛନ୍ତି । ଏହି ଦେଶ ଅଛି, ମାତ୍ର ବଂଶଧରମାନଙ୍କ ଦୁର୍ଗତି କହିଲେ ନ ସରେ । ଏ ସମସ୍ତରୁ ମୂଳ ଶାସ୍ତ୍ରବିଧି ନ ମାନିବା ବ୍ୟତୀତ ଅନ୍ୟ କିଛି ନୁହେଁ । ହିନ୍ଦୁର ପ୍ରତ୍ୟେକ କାର୍ଯ୍ୟ ଧର୍ମ-ଡୋରରେ ବନ୍ଧା ହୋଇ ରହିଛି । ଧର୍ମଶାସ୍ତ୍ର ପ୍ରତ୍ୟେକ କାର୍ଯ୍ୟ ଲାଗି ବିଧି ବିଧାନ କରିଛି । ଆମ୍ଭେମାନେ ଧର୍ମଶାସ୍ତ୍ର ଛାଡ଼ି ଭୂଇଁ ବୁଲୁଥାଉଁ । ଇଂରେଜୀ ଭାଷାରେ ଯାହା ଲେଖା ଅଛି, ସେ ଆମର ବେଦ । ଆମ ଘରେ ଯେ ସବୁ ପ୍ରାଚୀନ ପୋଥି ପତ୍ର ଅଛି, ତାର ମହତ୍ତ୍ୱ ଆମେମାନେ ବୁଝୁଁଛୁ କି ? ଆମମାନଙ୍କ ଧାରଣା, ସେ ଗୁଡ଼ାକ ଗାଲ୍‌ଗଳ୍ପ । ହିନ୍ଦୁ ଧର୍ମଶାସ୍ତ୍ରର ପ୍ରତ୍ୟେକ ବିଧି ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ । କୌଣସି ଉପଦେ

ନିରର୍ଥକ ନୁହେ ବା ତ୍ୟାଜ୍ୟ ନୁହେ । ହଜାର ହଜାର ବର୍ଷ ପୂର୍ବେ ଆର୍ଯ୍ୟ ଋଷିମାନେ ଗମ୍ଭୀର ଗବେଷଣା କରି ଯେଉଁ ସିଦ୍ଧାନ୍ତ କରିଥିଲେ, ଆଜି ପାଶ୍ଚାତ୍ୟ ଦେଶବାସୀମାନେ ସେଥିରୁ କେତେକ ସିଦ୍ଧାନ୍ତ ବିଷୟ ଆଲୋଚନା କରି ସେମାନଙ୍କ ନୂତନ ଆବିଷ୍କାର ବୋଲି ଉଣ୍ଡିମ ବଜାଉଛନ୍ତି । କୁଟୁମ୍ବ ମଧ୍ୟରେ କିମ୍ବା ଆପଣା ଗୋତ୍ରରେ ବିବାହ ନିଷେଧ, ଋତୁ ସମୟରେ ସ୍ତ୍ରୀ ସହବାସ ନିଷେଧ, ଗ୍ରହଣ ସମୟରେ ଭୋଜନ ନିଷେଧ, ତୁଳସୀର ଉପକାରିତା ଇତ୍ୟାଦି ଅନେକ ବିଷୟ ଅଳ୍ପକାଳ ଆମେରିକାରେ ଆବିଷ୍କୃତ ହୋଇଅଛି । ଏଥିଲାଗି କେତେ ଘୋଷଣାପତ୍ର ବାହାରୁଛି, କେତେ ଖବରକାଗଜରେ ଲେଖା ହେଉଛି । ମାତ୍ର ଆମ ଦେଶରେ ମାଇପେ ଏ କଥା ଜାଣନ୍ତି— ଅଙ୍କ ଜାଣୁ ନାହାନ୍ତି । ଏସବୁ ବିଷୟ ସମ୍ବନ୍ଧୀୟ ଜ୍ଞାନ ଆମମାନଙ୍କର ପୈତୃକ ସମ୍ପତ୍ତି । ଆମ ଦେଶର ଅଶିକ୍ଷିତ ବୃଦ୍ଧମାନେ ଜାଣନ୍ତି । ଏ ସମସ୍ତ ବିଷୟ ପ୍ରାଚୀନ ଧର୍ମଗ୍ରନ୍ଥମାନଙ୍କରେ ସ୍ମରଣାତୀତ କାଳରୁ ଲେଖା ହୋଇ ରହିଛି । କି କୁକର୍ମ କଲେ କି ପାପ ଭୋଗ କରିବାକୁ ପଡ଼ିବ, ତାହା ମଧ୍ୟ କର୍ମବିପାକ ନାମକ ଶାସ୍ତ୍ରରେ ଉଲ୍ଲେଖ ଅଛି । ଆମେରିକା ପ୍ରଭୃତି ଦେଶରେ ଏ ସବୁ ଅଜଣା, ସୁତରାଂ ସେ ସମ୍ବନ୍ଧୀୟ ଆବିଷ୍କାରମାନ ସେ ଦେଶରେ ଆଶ୍ଚର୍ଯ୍ୟଜନକ ହୋଇପାରେ; ମାତ୍ର ଆମ ଦେଶରେ ଏ ସବୁ କେତେ କାଳର ପୁରୁଣା କଥା । ଆମ ଦେଶର ସ୍ତ୍ରୀ ପୁରୁଷ ଉଭୟଙ୍କୁ ଏ କଥା ଜଣା । ଏକାଳର ନୂତନ ଶିକ୍ଷିତ ଲୋକେ ଏ ସବୁ କଥା ଜାଣୁ ନାହାନ୍ତି, ମାତ୍ର ଆମେରିକାର ଲୋକଙ୍କ ଆବିଷ୍କାର କଥା ଶୁଣି ସେ ସବୁ ସତ୍ୟ ବୋଲି ମାନିବେ ।

---

## ତ୍ରୟୋଦଶ ପରିଚ୍ଛେଦ

ସ୍ତ୍ରୀ—ଆଜି ମୋର ବଡ଼ ଅଜୀର୍ଣ୍ଣ ହୋଇଛି । ଟିକିଏ କଣ ଔଷଧ ଦିଅନ୍ତ ?

ସ୍ୱାମୀ—କାହିଁକି ? ତମର ଅଜୀର୍ଣ୍ଣ ହେଲା କାହିଁକି ? ବେଶୀକରି ଖାଇ ଦେଇଥିବ ?

ସ୍ତ୍ରୀ—ସବୁଦିନେ ତ ଯାହା, ଆଜି ତାହା, ଆଉ ବେଶୀ କଣ ଖାଇଲି ମ ?

ସ୍ୱାମୀ—ଅହେ, ସେଇଥିରେ କଣ ହୋଇଥିବ । ଅଜୀର୍ଣ୍ଣ ବଡ଼ ଭୟଙ୍କର ରୋଗ । ଅନିୟମିତ ଓ ଅପରିମିତ ଭୋଜନ କଲେ ଏ ରୋଗ ହୁଏ । ପଚା ମାଛ, ମାଂସ, ବାସି ତରକାରି ପ୍ରଭୃତି ଖାଇଲେ ଅଜୀର୍ଣ୍ଣ ହୁଏ । ସାବଧାନ ହେବ, ନଚେତ୍ ଅଜୀର୍ଣ୍ଣରୁ ହଇଜା ହେବ । ଏବେ ତ ତମେମାନେ ସବୁ ପାଶୋରି ପକାଇଲ, ଆଗେ ମା ଆମର ସବୁ ଜାଣିଥିଲେ । କେଉଁ ଜିନିଷ ଖାଇ ଅଜୀର୍ଣ୍ଣ ହେଲେ କି ଜିନିଷ ଖାଇଦେଲେ ସେ ଜୀର୍ଣ୍ଣ ହୋଇଯିବ ତାର ମୁଖସ୍ଥ । ସାଇ ପଡ଼ିଶା ସମସ୍ତେ ଆସି ତାଠାରୁ ବୁଝି ଯାନ୍ତି । ଏବେ ତ ଖାଲି ନଭେଲ୍ ପଢ଼ିଲ, ସେ ଗୁଡ଼ାକ ପଚୁଛନ୍ତି କିଏ ?

ସ୍ତ୍ରୀ—ଅଜୀର୍ଣ୍ଣର କଣ ଔଷଧ କହିଲ ?

ସ୍ୱାମୀ—ଶୁଣ ଶୁଣ କହୁଛି :—

| | | | |
|---|---|---|---|
| ନଡ଼ିଆ | ଖାଇ ଅଜୀର୍ଣ୍ଣ ହେଲେ | ଅରୁଆ ଚାଉଳ | ଖାଇଲେ ଜୀର୍ଣ୍ଣ ହେବ |
| ଆମ୍ବ | ,, | ଦୁଧ | ,, |
| କଦଳୀ | ,, | ଘିଅ | ,, |
| ଗହମ | ,, | କାକୁଡ଼ | ,, |

| ଯେଉଁ ଦ୍ରବ୍ୟ ଖାଇ ଅଜୀର୍ଣ୍ଣ ହେଲେ | | ଯେଉଁ ଦ୍ରବ୍ୟ ଖାଇଲେ ଜୀର୍ଣ୍ଣ ହେବ | |
|---|---|---|---|
| ମାଂସ | ,, | ଅମ୍ବକୋଇଲି | ,, |
| ନାରଙ୍ଗ | ,, | ଗୁଡ଼ | ,, |
| ପିଠା | ,, | ଜଳ | ,, |
| ବ୍ରୀହି | ,, | ଖଣ୍ଡ | ,, |
| ଡାଳିମ୍ବ | ,, | ବଉଳକୋଳି | ,, |
| ଚୂଡ଼ା | ,, | ଜୁଆଣୀ | ,, |
| ଅଖୁ | ,, | ଅଦାରସ | ,, |
| ମଣ୍ଡାପିଠା | ,, | ଶାଗ | ,, |
| କୋଳଥ | ,, | ଦହିମଣ୍ଡ | ,, |
| ବଡ଼ି | ,, | ହେଙ୍ଗୁ | ,, |
| ହଳଦୀ | ,, | ଧନିଆ | ,, |
| ଫେଣା | ,, | ଲବଙ୍ଗ | ,, |
| ମାଲପୁଆ, ଚକୁଳି | ,, | ପିପ୍ପଳୀମୂଳ | ,, |
| କ୍ଷୀର | ,, | ଜଡ଼ାତେଲ | ,, |
| ବାଇଗଣ, ମୂଳା, ପଳାଣ୍ଡୁ | ,, | ଶ୍ୱେତସୋରିଷ | ,, |
| ବରାହମାଂସ | ,, | ଦୁଧ | ,, |
| ଦୁଧ | ,, | ଘୋଳଦହି | ,, |
| ଅମ୍ବ, ମାଛ | ,, | ଅମ୍ବୁଲ | ,, |
| ମଦ | ,, | ତେଲ | ,, |

ପଣସ ଖାଇ ଅଜୀର୍ଣ୍ଣ ହେଲେ      କଦଳୀ ଖାଇଲେ ଜୀର୍ଣ୍ଣ ହେବ
ଘିଅ      ,,      ଜାମ୍ବୁକୋଳି      ,,

ଯେ କୌଣସି ଅଜୀର୍ଣ୍ଣ ହେଉ ବାସିପାଣି ପିଇଲେ ଝାଡ଼ା ହେବ । ଜୁଆଣୀଅଙ୍କ ଟିକିଏ ଖାଇଲେ ଅଜୀର୍ଣ୍ଣ ଭଲ ହୁଏ । ମୂଆ ଦନ୍ତା ବାଟି ଖାଇଦେଲେ ଅଜୀର୍ଣ୍ଣ ଭଲ ହେବ । ସ୍ୱାସ୍ଥ୍ୟ ପ୍ରତି ନଜର ନ ଥିଲେ ଅନେକ ରୋଗ ହୁଏ ।

ସ୍ତ୍ରୀ—ସ୍ୱାସ୍ଥ୍ୟ ପ୍ରତି କଣ ନଜର ଦେବ ମ ?

ସ୍ୱା—ଅହେ, ସ୍ୱାସ୍ଥ୍ୟ ତ ମୂଳ ଜିନିଷ । ଯାହାର ସ୍ୱାସ୍ଥ୍ୟ ନାହିଁ ତାକୁ ଏ ସଂସାର ବିଷପରି ଲାଗେ । ସେଥିପାଇଁ ଋଷୀମାନେ କହିଛନ୍ତି, "ଶରୀରମାଦ୍ୟଂ ଖଳୁ ଧର୍ମ ସାଧନଂ", ଅର୍ଥାତ ଆଗ ଶରୀର ରକ୍ଷା କର, ପରେ ଧର୍ମସାଧନ କର । ସ୍ୱାସ୍ଥ୍ୟ ଅର୍ଥ ସୁସ୍ଥତା, ଅର୍ଥାତ୍ ଯେପରି ଚଳିଲେ ଶରୀର ରୋଗଗ୍ରସ୍ତ ନ ହେବ ସେପରି କରିବ । ପ୍ରଥମ କଥା ଘରଦ୍ୱାର ପରିଚ୍ଛନ୍ନତା ।

(୧) ଘର ଦ୍ୱାର, ପାଣିନାଳ ପ୍ରଭୃତି ସର୍ବଦା ପରିଷ୍କାର ରହିବ । ଯେପରି କୌଣସିଠାରେ ମଇଳା, ଅଳିଆ ଜମି ଦୁର୍ଗନ୍ଧ ନ ହୁଏ, ପ୍ରତିଦିନ ସକାଳୁ ଉଠି ଏଥିପ୍ରତି ଦୃଷ୍ଟି ଦେବ ।

(୨) କୂଅ ପୋଖରୀମାନ ସର୍ବଦା ସଫା ରଖିବ, ଯେପରି କୌଣସି ଅଳିଆ ନ ପଡ଼େ ।

(୩) ପିଇବା ପାଣି ପ୍ରତିଦିନ ଛାଣି ପରିଷ୍କାର କରିବ । ପାଣିକୁ ସିଝାଇ ଥଣ୍ଡା କରି ସେହି ପାଣି ପିଇଲେ ଅଧିକ ଭଲ ।

(୪) ନିୟମିତ ସମୟରେ ଖାଇବ, ନିୟମିତ ସମୟରେ ଶୋଇବ, ଅନ୍ତତଃ ୭ ଘଣ୍ଟା ଶୋଇବ ।

(୫) ଶେଯ, ତକିଆ, ବିଛଣା ଗୁଦଡ଼ି ପ୍ରଭୃତି ପ୍ରତିଦିନ କିମ୍ବା ଦୁଇ ତିନିଦିନରେ ଥରେ ଖରାରେ ଦେବ ।

(୬) ମଇଳା ଲୁଗା ପିନ୍ଧିବ ନାହିଁ । ମଇଳା ଗାମୁଛା ବ୍ୟବହାର କରିବ ନାହିଁ ।

(୭) ହାଣ୍ଡିଶାଳ, ହାଣ୍ଡି ଓ ଅନ୍ୟାନ୍ୟ ରନ୍ଧନପାତ୍ରମାନ ପ୍ରତିଦିନ ପରିଷ୍କାର କରିବ ।

(୮) ବେଶୀ ରାତି ପର୍ଯ୍ୟନ୍ତ ଜାଗ୍ରତ ହେବ ନାହିଁ ।

(୯) ଭୋକବେଳେ ଯାହା ମିଳିବ ଖାଇବ । ଛ ତୁଣ ନ ଭଜା ହେଲୁ ହେଲୁ ଖାଇବାବେଳେ ଗଣ୍ଡଗଲେ ଭୋକ ପଳାଏ । ଭୋକ ନ ଥିଲେ ଦବ୍ୟଶାଳୀ ଅନ୍ନ ଷୀରଖେଚେଡ଼ି ମଧ୍ୟ ସୁଖ ଲାଗେ ନାହିଁ । କଥା ଅଛି 'ଭୋକବେଳେ ଅମ୍ବିଳା ଅମୃତ ସ୍ୱାଦ ଲାଗେ ।

(୧୦) ଯାହା ରାନ୍ଧିବ, ଯାହା ଖାଇବ, ତାହା ପ୍ରଥମେ ଇଷ୍ଟଦେବତାଙ୍କୁ ନୈବେଦ୍ୟ କରି, ପରେ ସେ ସବୁ ପ୍ରସାଦ ଜ୍ଞାନରେ ସେବା କରିବ ।

(୧୧) ପ୍ରାତଃକାଳରୁ ସ୍ନାନ କରିବ । ନଦୀ, ପୁଷ୍କରିଣୀରେ ସ୍ନାନ ଉତ୍କୃଷ୍ଟ । ପ୍ରାତଃକାଳରୁ ଶଯ୍ୟା ତ୍ୟାଗ କରିବ । ଯେ ସକାଳ ଉଠି ସକାଳ ଶୁଏ, ସେ ସୁସ୍ଥ, ସବଳ ଓ ଧନୀ ହୁଏ । ସୂର୍ଯ୍ୟୋଦୟ ପରେ ଶୋଇ ରହିଲେ ସ୍ମରଣଶକ୍ତି ନଷ୍ଟ ହୁଏ, ବୁଦ୍ଧିବୃତ୍ତି ମାନ୍ଦା ହୁଏ । ସୁତରାଂ କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କ ପ୍ରତି ଏ ନିୟମ ପ୍ରଯୁଜ୍ୟ ।

(୧୨) ଦେହରେ ତେଲ ମର୍ଦ୍ଦନ କଲେ ଚର୍ମଗତ ରୋଗ ହୁଏ ନାହିଁ ।

(୧୩) ନିକୁଳା ଗୁଅଦିଅ ଖାଇଲେ ଅନେକ ରୋଗ ନଷ୍ଟ ହୁଏ, ପେଟ ବେମାର ହେବାର ଆଶଙ୍କା ନ ଥାଏ ।

(୧୪) ଆଜିକାଲି ବଜାରରେ ନାନାପ୍ରକାର ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ ହୋଇ ବିକ୍ରୀ ହୁଏ । ସେଥିରେ ମିଶାତେଲ, ମିଶାଘିଅ ବ୍ୟବ-

ହୃତ ହୁଏ । ସେ ଗୁଡ଼ିକ ଏକପ୍ରକାର ଅଖାଦ୍ୟ । ସେ ସବୁ ଖାଇବା ଉଚିତ ନୁହେ ।

(୧୫) ଘର ନିକଟରେ ଦାଣ୍ଡକୁଅର ପାଖେ ଅଳିଆ ବା ଗୋବର ଚନା ପ୍ରଭୃତି ଜମା କରିବ ନାହିଁ ।

(୧୬) ତୁଳସୀ ଗଛ ଅଗଣାରେ ରଖିବ । ପ୍ରତ୍ୟହ ଜଳ ତୁଳସୀ ସେବା କରିବ ।

(୧୭) ଦିନେ ଅଜୀର୍ଣ୍ଣ ହେଲେ ଉପବାସ କରିବ । ଉପବାସଦ୍ୱାରା ଅନେକ ରୋଗ ନଷ୍ଟ ହୁଏ ।

(୧୮) ଭାତ ତରକାରି ପ୍ରଭୃତି ଗରମ ଥାଉ ଖାଇବ । ଥଣ୍ଡା ଜିନିଷ ଖାଇଲେ ସହଜରେ ହଜମ ହୁଏ ନାହିଁ ।

ଏହିପରି କେତେଗୋଟି ସ୍ଥୂଳ ନିୟମ ପାଳନ କଲେ ପରିବାର ମଧ୍ୟରେ ବେଶ ସ୍ୱାସ୍ଥ୍ୟରକ୍ଷା ହୁଏ । କଥା ଅଛି, "ଜଳ ପବନ ଲାଗି ଦେହ, ଆଉ ଅଧିକ ଥିଲେ କହ ।' ଉତ୍ତମ ଜଳ ପାନ, ଉତ୍ତମ ବାୟୁ ସେବନ କଲେ ଶରୀର ସୁସ୍ଥ ଥାଏ । ଏ ଶରୀରଟା ଜଳ ପବନଦ୍ୱାରା ଚାଲୁଛି । ସେ ଦୁଇଟି ସ୍ୱଚ୍ଛ, ପରିଷ୍କାର, ନିର୍ମଳ ଥିଲେ ରୋଗ ହେବା ସହଜ ନୁହେ । ଯେତେ ପ୍ରକାର ଖାଦ୍ୟଜ ରୋଗ, ସେ ସବୁ ସ୍ୱାସ୍ଥ୍ୟ ନିୟମ ପାଳନ କଲେ ଦୂର ହେବ ।

ସ୍ତ୍ରୀ—ଖାଦ୍ୟଜ ରୋଗ କଣ ? ଆଉ ଅନ୍ୟ କୌଣସି ପ୍ରକାର ରୋଗ ଅଛି କି ?

ସ୍ୱା—ଖାଦ୍ୟ ଅନିୟମରୁ ଯେ ରୋଗ ହୁଏ, ତାକୁ ଖାଦ୍ୟଜ ରୋଗ କହନ୍ତି । ଆଉ ଏକପ୍ରକାର ରୋଗ ଅଛି, ତାକୁ କର୍ମଜ ବା ପାପଜ ରୋଗ କହନ୍ତି । ଏ ସବୁ ପୂର୍ବଜନ୍ମକୃତ କର୍ମରୁ ଜନ୍ମେ । ଦେଖାଯାଏ, ପିଲା ଜନ୍ମ ସଙ୍ଗେ ସଙ୍ଗେ ତାର କୁଷ୍ଠରୋଗ ହେଲା

ଜନ୍ମ ସଙ୍ଗେ ସଙ୍ଗେ ଅନ୍ଧ ହେଲ, କୋଠା ହେଲ ଇତ୍ୟାଦ । ଏ ସବୁ କର୍ମଜ ରୋଗ । ଏ ସବୁ ରୋଗ ଭୋଗ ଶେଷ ନ ହେବା ପର୍ଯ୍ୟନ୍ତ ଭଲ ହେବ ନାହିଁ । କର୍ମବିପାକ ବୋଲି ଶାସ୍ତ୍ର ଅଛି, ସେଥିରେ ଏ ସବୁ ରୋଗର ନିଦାନ, ପ୍ରାୟଶ୍ଚିତ୍ତ ପ୍ରଭୃତି ଲେଖା ଅଛି । ଇଚ୍ଛା କଲେ ସେ ପୁସ୍ତକ ପଢ଼ିବ । ସେ ପୁସ୍ତକ ପଢ଼ିଲେ ଜାଣିପାରିବ ଯେ, କି ପାପ କଲେ କି ରୋଗ ହେବ । ସୁତରାଂ ଜାଣିଲେ, ସେ ସବୁ କାର୍ଯ୍ୟ ନ କରିବାକୁ ସାବଧାନ ହେବ । ଯେତେ ବେଶୀ ବିଷୟ ଜାଣିବ ସେତେ ଜ୍ଞାନ ବଢ଼ିବ ।]

——:——

## ଚତୁର୍ଦ୍ଦଶ ପରିଚ୍ଛେଦ

ସ୍ବା—ସେ କି ବହି ପଢ଼ୁଛ କି ?

ସ୍ତ୍ରୀ—ସେ ଗୋଟାଏ ବଙ୍ଗଳା ଉପନ୍ୟାସ । ବିଜୟ ବସନ୍ତ ଉପନ୍ୟାସ

ସ୍ବା—ହଁ, ଆଜି କାଲି ଏ ସବୁ ବହିର ବଡ଼ ଆଦର, ପଢ଼ି ସାରିଲ ତ ?

ସ୍ତ୍ରୀ—ହଁ, ପଢ଼ି ସାରିଲଣି, ତମେ ପଢ଼ିବ କି, ନିଅ ।

ସ୍ବା—ନାହିଁ, ନାହିଁ, ମୁଁ ସେ ଉପନ୍ୟାସ କଥା ଜାଣେ । ଆଚ୍ଛା ତୁମ୍ଭେ ତ ପଢ଼ିସାରିଲଣି କହୁଛ, କହିଲ ଦେଖି, ବସନ୍ତ ସଙ୍ଗେ ତାର ମାତାର ବ୍ୟବହାରଟା କିପରି ? ତୁମ୍ଭଙ୍କୁ ସେ ଚରିତ୍ର କିପରି ଲାଗିଲା ?

ସ୍ତ୍ରୀ—ସେ କଥା ଆଉ କଣ କହିବି ? ସେ ସ୍ତ୍ରୀଟା ଗୋଟାଏ ରାକ୍ଷସୀ । କଣ୍ଢାମିଛ କହି ସତ ଯଲେଇ ଦେଲା ପୁଅଟାକୁ ମରାଇ ଦେଲା ।

ଓଃ ! ପୋଡ଼ାମୁହଁୀର କି ସାହସ ! ମୁଁ ତ ପଢ଼ ପଢ଼ୁ ମନେ କଲି, ସୀତାଙ୍କ ସ୍ୱାମୀ ତାଙ୍କୁ ଛାଡ଼ି ଦେଲେ ! ... ଛପି ଦେଇଥାନ୍ତା ।

ସ୍ୱା—ହଁ, ହଁ, ସେ ମାଇକିନାଆଟା ସେହିପରି । ସେ ଭଲ ଚରିତ୍ରର ଉପନ୍ୟାସ ପଢ଼ିବା ଉଚିତ ନୁହେ । ଭଲ ଚରିତ୍ରର ନାଟକ, ଉପନ୍ୟାସ ପଢ଼ିଲେ ଲାଭ ଅଛି, ମାତ୍ର ମନ୍ଦ ଚରିତ୍ରଗୁଡ଼ାକପ୍ରତି ଅଦୌ ଦୃଷ୍ଟି ଦେବା ଉଚିତ ନୁହେ । ସେହି ଯେ ସ୍ତ୍ରୀ କଥା କହିଲ, ସେ ଗୋଟାଏ ଭୟଙ୍କର ପିଶାଚୀ ! ପୁଅଟାକୁ ମନ୍ଦ କାର୍ଯ୍ୟ କରିବାକୁ ଫୁସୁଲାଇଲା, ପୁଅ ତା ଧର୍ମ ପ୍ରତିପାଳି ଅସ୍ୱୀକାର କରିବାରୁ ଓଲଟି ତା ଉପରେ ଦୋଷାରୋପ କରି ତାର ପ୍ରାଣ ନେବାକୁ ବସିଲା । ଓଃ, ଏହାଠାରୁ ବଳି ଆଉ ଅଧିକ କଣ ହୋଇପାରେ ?

ସ୍ତ୍ରୀ—ହଇ ହେ, ମୁଁ ତ ପଢ଼ ପଢ଼ୁ କାବା ହୋଇଗଲି । ମୁଁ ମନେକଲି ପୃଥିବୀରୁ ଧର୍ମ ଲୋପ ହୋଇଗଲା ।

ସ୍ୱା—ବୁଝିଲ, ସେମାନେ ରାକ୍ଷସୀ, ମାନବୀ ନୁହନ୍ତି । ମୁଁ ସେଥିଲାଗି କହୁଛି, ସେ ସବୁ ଚରିତ୍ର ପାଠ୍ୟ ନୁହେ । ଭଲ ଚରିତ୍ର ବହି ପଢ଼, ନିଜର ଲାଭ ହେବ, ଅନ୍ୟ ଦଶଜଣଙ୍କର ଲାଭ ହେବ ।

ସ୍ତ୍ରୀ—ଚରିତ୍ର ଅର୍ଥ କଣ ମ ? ମତେ ଟିକିଏ ବୁଝାଇଦେଲ !

ସ୍ୱା—ଚରିତ୍ର ଅର୍ଥ ଆଚରଣ, ଲୋକ ନିଜ ସ୍ୱଭାବ ଅନୁସାରେ ଆଚରଣ କରେ । ସୁତରାଂ ଚରିତ୍ର ଅର୍ଥ ସ୍ୱଭାବ । ଭଲସ୍ୱଭାବର ଲୋକଙ୍କ ସ୍ୱଭାବ ଅନ୍ୟ ଦଶଜଣଙ୍କର ଆଦର୍ଶ ହୁଏ । ଆଉ ଗୋଟିଏ କଥା ଦେଖ, ଶ୍ରେଷ୍ଠ ଲୋକେ ଯେପରି ଆଚରଣ କରନ୍ତି, ଅନ୍ୟ ଲୋକେ ସେ ସବୁ ଅନୁକରଣ କରନ୍ତି । ଦେଖ, ଆମ ଘରକୁ ଗାଁ ଲୋକେ ସାନ୍ତ ଘର ବୋଲି ମାନନ୍ତି । ଗାଁରେ ସାନ୍ତଘର ବୋଇଲେ ଶ୍ରେଷ୍ଠ ଘର । ଆମ ଘରେ ଯେ ଯେ

କାର୍ଯ୍ୟ, ଯେ ଯେ ଆଚରଣ କରିଯିବ, ଲୋକେ ସେଗୁଡ଼ିକ ଶିଖିବେ, ସୁତରାଂ ଗ୍ରାମର ଭଲ ମନ୍ଦ ଆଚରଣ ଲାଗି ଆମ ଘର ଦାୟୀ । ତେଣୁ ଆମ ଘର ପରିବାରର ସମସ୍ତ ଲୋକେ ଭଲ ଆଚରଣ କରିବା ଉଚିତ । ଗୀତାରେ ଭଗବାନ କହୁଛନ୍ତି, "ଶ୍ରେଷ୍ଠ ଲୋକେ ଯେ ଆଚରଣ କରିବେ, ଲୋକେ ସେମାନଙ୍କ ଅନୁକରଣ କରିବେ ।" ସୁତରାଂ ଶ୍ରେଷ୍ଠ ଲୋକଙ୍କ ଉପରେ ଭଗବାନ ଗୋଟାଏ ଭାର ଲଦି ଦେଇଛନ୍ତି । ସେ ଭାର କଣ ? ସଦାଚରଣ । ମୁଁ ସେଥିପାଇଁ କହୁଛି, ଏପରି ପୁସ୍ତକ ପାଠ କର—ଯହିଁରୁ ଭଲ କଥା, ଭଲ ଚରିତ୍ର, ଭଲ ଆଦର୍ଶ ଶିଖିବ । ତମେ ଖରାପ ପୁସ୍ତକ ପଢ଼ିଲେ ପିଲାମାନେ ତମଠାରୁ ଦେଖି ପଢ଼ିବେ । ରାଜପୁତ୍ ରମଣୀମାନଙ୍କ ଚରିତ୍ର ପାଠ କର ।

ସ୍ତ୍ରୀ—ରାଜପୁତ ସ୍ତ୍ରୀମାନଙ୍କ ଚରିତ୍ର ପାଠକଲେ କଣ ଜାଣିବ ?

ସ୍ୱା—ସେମାନେ ସତୀତ୍ୱର ଜ୍ୱଳନ୍ତ ଉଦାହରଣ । ସେମାନେ ବୀରାଙ୍ଗନା । ବୀରାଙ୍ଗନାମାନେ ମୁସଲମାନଙ୍କ ଅଧିପତ୍ୟବେଳେ ଅସାଧାରଣ ବୀରତ୍ୱ ଦେଖାଇଥିଲେ । ଜ୍ୱଳନ୍ତଅଗ୍ନିରେ ନିଜ ପ୍ରାଣ ଅମ୍ଳାନ ବଦନରେ ବିସର୍ଜନ କରିଥିଲେ । ମାତ୍ର ମୁସଲ-ମାନମାନେ ସେମାନଙ୍କ ରୂପ ଦେଖିବାର ସୁବିଧା ସୁଯୋଗ ପାଇ ନ ଥିଲେ । ସେହି ପୁଣ୍ୟଚରିତ୍ର ରାଜପୁତ୍ ବୀରାଙ୍ଗନା-ମାନଙ୍କ ଜୀବନଚରିତ ପାଠ କରି ନିଜ ଜୀବନକୁ ଧନ୍ୟ କର । ସେମାନଙ୍କ ତ୍ୟାଗ ପ୍ରତ୍ୟେକ ନାରୀର ଅନୁକରଣୀୟ ।

ସ୍ତ୍ରୀ—ତ୍ୟାଗ କଣ ?

ସ୍ୱା—ତ୍ୟାଗ ଅର୍ଥ ଛାଡ଼ିବା । ଯେ ଯେତେ ସ୍ୱାର୍ଥ ତ୍ୟାଗ କରିଛି, ସେ ସେତେ ସଂସାରରେ ଶ୍ରେଷ୍ଠ ହୋଇ ପୂଜା ପାଉଛି । ନିଜର ସ୍ୱାର୍ଥ,

ସୁଖ ସ୍ୱାଚ୍ଛନ୍ଦ୍ୟ ପରହିତ ପାଇଁ ଯେତେ ତ୍ୟାଗ କରି ପାରିବ, ସଂସାରରେ ସେତେ ପୂଜା ପାଇବ । କି ସ୍ତ୍ରୀ କି ପୁରୁଷ ଉଭୟଙ୍କ ପକ୍ଷରେ ଏକା କଥା । ସୀତା, ସାବିତ୍ରୀ, ପ୍ରଭୃତି ଆଜି ପୂଜ୍ୟା କାହିଁକି ? ସେମାନେ ଲୋକହିତ ପାଇଁ ଅନେକ ତ୍ୟାଗ କରିଥିଲେ । ଦଧିଚୀ, ବଶିଷ୍ଠ, ରାମ, କୃଷ୍ଣ ପ୍ରଭୃତି ଆଜି ସେହି କାରଣରୁ ପୂଜ୍ୟ । ଯେ ଅନ୍ୟର ହିତ ଲାଗି ଆପଣା ଜୀବନ ପର୍ଯ୍ୟନ୍ତ ଉତ୍ସର୍ଗ କରିପାରେ, ସେ ତ ଜଗତରେ ଦେବତା । ଲୋକେ ତାଙ୍କୁ ଦେବତା ପରି ପୂଜା କରନ୍ତି, ତାର ଭକ୍ତ ହୁଅନ୍ତି, ତାର ଗୁଣ କୀର୍ତ୍ତନ କରନ୍ତି । ବୃତ୍ରାସୁର ଯୁଦ୍ଧବେଳେ ମନୁଷ୍ୟ ହାଡ଼ରେ ଅସ୍ତ୍ର ହେଲେ, ସେହି ଅସ୍ତ୍ର ଦ୍ୱାରା ବୃତ୍ରାସୁର ମରିବ ବୋଲି ଜଣା ଗଲା । ଦେବତାମାନଙ୍କ ମଧ୍ୟରେ ଚିନ୍ତା ପଡ଼ିଗଲା । ପୃଥିବୀରେ ଏପରି କିଏ ଲୋକ ଅଛି ଯେ, ନିଜ ଦେହରୁ ହାଡ଼ କାଢ଼ି ଦେବ, ହୁଏତ ପରି ମୁହୂର୍ତ୍ତରେ ମରିବ । ଲୋକର ସବୁ ଭୟଠାରୁ ପ୍ରାଣ ଭୟ ବେଶୀ । କଥାରେ ଅଛି, ଦେବା, ମରିବାକୁ କେହି ରାଜି ହୁଏ ନାହିଁ । ଦେବତାମାନେ ପୃଥିବୀଯାକ ବୁଲିଲେ । ଯାହାକୁ ପଚାରିଲେ ସେ ରାଜି ହେଲା ନାହିଁ । ଶେଷରେ ଦଧିଚୀ ମହର୍ଷି ଆନନ୍ଦମନରେ ଅସ୍ଥି କାଢ଼ିଦେଲେ । ଏହା କି କମ୍ ତ୍ୟାଗ ! ବଶିଷ୍ଠ ବ୍ରାହ୍ମଣମାନଙ୍କ ଗୁରୁ । ବିଶ୍ୱାମିତ୍ର ନିଜ କର୍ମବଳରେ ବ୍ରହ୍ମର୍ଷି ହେବାର ଚେଷ୍ଟା କଲେ । ସେ ବର୍ଣ୍ଣରେ କ୍ଷତ୍ରିୟ । ତାଙ୍କ ତପସ୍ୟା ଦେଖି, ଅନେକ ବ୍ରହ୍ମର୍ଷି ତାଙ୍କୁ ବ୍ରାହ୍ମଣ ବୋଲି ସ୍ୱୀକାର କଲେ, ମାତ୍ର ବଶିଷ୍ଠ ସ୍ୱୀକାର କଲେ ନାହିଁ । ବିଶ୍ୱାମିତ୍ର ଏଥିରେ ଅତ୍ୟନ୍ତ କ୍ରୋଧ ହେଲେ, ଏବଂ ଯଜ୍ଞକରି ବଶିଷ୍ଠଙ୍କୁ ମାରିଦେବେ ବୋଲି ପ୍ରତିଜ୍ଞା କଲେ । ବିଶ୍ୱାମିତ୍ର ବଶିଷ୍ଠ-ମାରଣ-ଯଜ୍ଞ କରିବା ପାଇଁ ସକଳ ଆୟୋଜନ

କଲେ । ମାତ୍ର କେହିହେଁ ହୋତା ହେବାକୁ ରାଜି ହେଲେ ନାହିଁ । ଅବଶେଷରେ ବିଶ୍ୱାମିତ୍ର ବଶିଷ୍ଠଙ୍କ ପାଖକୁ ଗଲେ ଏବଂ ବିଷୟମାନ ଜଣାଇଲେ । ବଶିଷ୍ଠ ସମସ୍ତ କଥା ଶୁଣି ସାରି କହିଲେ—"କଣ କହିଲେ ? ଆପଣଙ୍କର ଯଜ୍ଞରେ ହୋତା ହେବାପାଇଁ ବ୍ରାହ୍ମଣ ମିଳିଲେ ନାହିଁ । ପୃଥିବୀ କଣ ବ୍ରାହ୍ମଣ ଶୂନ୍ୟ ହେଲା ? ଅଚ୍ଛା, ମୁଁ ହୋତା ହେବି ।" ବଶିଷ୍ଠ ହୋତା ହେଲେ, ଯଜ୍ଞ କାର୍ଯ୍ୟ ଆରମ୍ଭ ହେଲା । ବଶିଷ୍ଠ ସମସ୍ତଙ୍କୁ ଆହୁତି ଦେଲେ । ଏଥର ଶେଷ ଆହୁତି । ଏ ଆହୁତି ଅଗ୍ନିରେ ପଡ଼ିବା ମାତ୍ରକେ ବଶିଷ୍ଠ ପ୍ରାଣତ୍ୟାଗ କରିବେ । ବଶିଷ୍ଠଙ୍କର ତହିଁ ପାଇଁ ଭ୍ରୂକ୍ଷେପ ନାହିଁ । ପ୍ରାଣ ଯିବ ତ ଯିବ । ପ୍ରାଣ ଅତି ତୁଚ୍ଛ ପଦାର୍ଥ । ଯଜ୍ଞ କାର୍ଯ୍ୟ ଅବଶ୍ୟ ହେବ । ବଶିଷ୍ଠ ଶେଷ ଆହୁତି ହାତରେ ଧରି ମନ୍ତ୍ର ପାଠ କଲେ—"ବଶିଷ୍ଠାୟୁ ସ୍ୱାହା" ଘିଅ ଢାଳିବା ବେଳକୁ ବିଶ୍ୱାମିତ୍ର ତାଙ୍କ ହାତ ଧରି ପକାଇ କହିଲେ, "ହେଲା ହେଲା, ଆପଣ ଏଠାରେ କ୍ଷାନ୍ତ ହୁଅନ୍ତୁ !" ବଶିଷ୍ଠ କ୍ଷାନ୍ତ ହେଲେ । ବିଶ୍ୱାମିତ୍ରଙ୍କୁ ବ୍ରହ୍ମର୍ଷି ବୋଲି ସ୍ୱୀକାର କଲେ ଏବଂ କହିଲେ, "ତୁମ୍ଭେ କ୍ଷମା ଶିଖିଛ, ସୁତରାଂ ବର୍ତ୍ତମାନ ତୁମ୍ଭେ ବ୍ରାହ୍ମଣ ।" ବଶିଷ୍ଠଙ୍କ ପରି କେତେ ଜଣ ବ୍ରାହ୍ମଣ ଆଜି କାଲି ଦେଖୁଛ ? ବ୍ରାହ୍ମଣ ଅର୍ଥ ପଇତା ପକା ମନୁଷ୍ୟ ନୁହେଁ, କିମ୍ବା ବ୍ରାହ୍ମଣଠାରୁ ଜନ୍ମ ହେଲେ ବ୍ରାହ୍ମଣ ହେବ ନାହିଁ । ବ୍ରାହ୍ମଣର ଗୁଣ ଥିଲେ ବ୍ରାହ୍ମଣ ହେବ । ଏହି କାରଣରୁ ବିଶ୍ୱାମିତ୍ର ବ୍ରାହ୍ମଣ ଶ୍ରେଣୀରେ ଗଣ୍ୟ ହୋଇଥିଲେ । ଗୀତାରେ ଭଗବାନ ମଧ୍ୟ ଏହି କଥା କହିଛନ୍ତି । ଯେଉଁମାନେ ଏହିପରି ତ୍ୟାଗ କରିବାକୁ ପ୍ରସ୍ତୁତ, ସେମାନେ ଧନ୍ୟ ! ସତ୍ୟ ରକ୍ଷା କରିବାପାଇଁ ହରିଶ୍ଚନ୍ଦ୍ର କଣ ତ୍ୟାଗ ନ କଲେ ! ଅପଣା

ସ୍ତ୍ରୀ ପୁତ୍ରଙ୍କୁ ବିକିଲେ, ଚଣ୍ଡାଳଠାରୁ ପଇସା ନେଇ ଦକ୍ଷିଣା ଦେଲେ; ନିଅଣ୍ଟ ହେବାରୁ ନିଜେ ଚଣ୍ଡାଳ ଗୃହରେ ଅନ୍ନବସ୍ତ୍ର କରିଥିଲେ । ନିଜ ରାଜ୍ୟ, ଘରଦ୍ୱାର ସବୁ ଛାଡ଼ିଲେ । ଫଳରେ ସ୍ୱଦେହରେ ସ୍ୱର୍ଗକୁ ଗଲେ । ଏପରି କେତେ ଦୃଷ୍ଟାନ୍ତ ପୁରାଣମାନଙ୍କରେ ମିଳିବ । ସେ ସବୁ ଚରିତ୍ର ପାଠକଲେ ଆପଣାର ଅନେକ ଉପକାର ହେବ । ଯେ ଯେତେ ତ୍ୟାଗ କରିପାରେ, ସେ ସେତେ ବଡ଼ । କଥାରେ ତୁମ ମନ ମାନିଲା କି ? ଦେଖ; ତ୍ୟାଗ କରିବ ଯେ କେବଳ ଲୋକେ ମତେ ପ୍ରଶଂସା କରିବେ; ଏପରି ମନରେ ଭାବି କଲେ ସେଥିରେ କିଛି ଫଳ ନାହିଁ । ମନରେ କୌଣସି ଫଳ ପାଇବା ଇଚ୍ଛା ନ ରଖି ଯେଉଁ କାର୍ଯ୍ୟ କରିବ ତହିଁରେ ପୁଣ୍ୟ ଅଛି ।

ସ୍ତ୍ରୀ—ହଁ, ତାହା କହିଲ ସତ । ଆମେ ମାଇପେ ଏତେ କଥା କାହୁଁ ଜାଣିବୁ ?

ସ୍ୱାମୀ—ତୁମେ ତ ସେ ବାଳିକା ସ୍କୁଲରେ ପଢୁଥିଲ ? ଆଉ ଏତେ ପଢ଼ି କଣ ଶିଖିଲ ?

ସ୍ତ୍ରୀ—ବାଳିକା ସ୍କୁଲରେ ଯେଉଁ ବହି ପଢ଼ାଯାଏ, ସେଥିରେ ଏତେ କଥା କେଉଁଠି ଅଛି ମ ! ସେଥିରେ ତ ଖାଲି କାଉ, କୋଇଲି, ବଗ, ବିଲୁଆ କଥା ପଢ଼ାଯାଏ । ଗଛର ପତ୍ର, ଡେମ୍ଫ, ଶିରା ଗଣ୍ଡୁ ଚଣ୍ଡୁ ଦିନ ଯାଏ ।

ସ୍ୱାମୀ—ହଁ, ଯେଉଁ କାଳେ ଯେଉଁ ବିଦ୍ୟା । ଆଜିକାଲି ବାଳିକା ସ୍କୁଲ ବାଳକ ସ୍କୁଲରେ ଏକା ପାଠ । ବାଳକମାନେ ପାଠ ପଢ଼ିଲେ ଚାକିରି କରୁଥିଲେ, ଏବେ ତ ମାଇପେ ପାଠ ପଢ଼ି ଚାକିରି କଲେଣି । ସରକାର ଯେପରି ନିୟମ କରୁଛନ୍ତି, ସେପରି ପାଠ ପଢ଼ା ହେଉଛି । ଲୋକଙ୍କ ହାତରେ ସେ କ୍ଷମତା ନାହିଁ ।

ସ୍ତ୍ରୀ—ଲୋକଙ୍କ ହାତରେ ସେ କ୍ଷମତା ନାହିଁ କି ?

ସ୍ୱା—ଅଛି କି ନାହିଁ, ସେ କଥା ତୁମେ ଏତେଶୀଘ୍ର ବୁଝି ପାରିବ ନାହିଁ । ବର୍ତ୍ତମାନ ସବୁ କାର୍ଯ୍ୟର କ୍ଷମତା ସରକାରଙ୍କ ହାତରେ ଅଛି । ସରକାର କହନ୍ତି, ଏ ଦେଶ ଲୋକେ ଯୋଗ୍ୟ ହେଲେ ସେମାନଙ୍କୁ ଅଳ୍ପେ ଅଳ୍ପେ କ୍ଷମତା ଦେବେ ।

---

ସୂଚନା
ହ.ଏ.ଦ.

## ପଞ୍ଚଦଶ ପରିଚ୍ଛେଦ

ଦାଣ୍ଡରେ ଜଣେ ଯୁବକ ଭାବରେ ଗୁଡ଼ାଏ ଖଦଡ଼ ଲୁଗା ପକାଇ ଗୀତ ଗାଉଛି :—

କେ କିଣିବ ଅସ ଅସ କିଣ ଖଦଡ଼
ଅଛି ଏ ଲୁଗାର ଭାରି ଗୁଣ ଅପାର । ଘୋଷା ।
ବାପ ଅଜା ଅମର ଥିଲା ବଡ଼ ଆଦର
ଚିହ୍ନି ଥିଲେ ଏହୁ ଲୁଗା ନ ଗଣି ଦର । ୧ ।
କିଣ କିଣ ଖଦଡ଼ ଦର ଦେଖି ନ ଡର
ଦେଶଧନ ଦେଶେ ରହିଯିବ ନିକର । ୨ ।
ସଭିଏଁ ମିଳିମିଶି କିଣିଲେ ବେଶୀ ବେଶୀ
ଅଳପ ଦିନରେ ଶସ୍ତା ହୋଇବ ଦର । ୩ ।
ଦେଖ ଦିନକୁ ଦିନ ନାନା ରଙ୍ଗ ବସନ
ତିଆର ହେଉଛି ଦେଶେ ଭର ଅଦର । ୪ ।
ଯେତେ ବେଶୀ କିଣିବ ସେତେ ଦର କମିବ
ମିଳିବ ଉତ୍ତମ ଲୁଗା ନାନା ପ୍ରକାର । ୫ ।
ଦେଶ ଭାଇ ଭଉଣୀ ସୂତା କାଟନ୍ତି ପୁଣି
ଖଦ୍ଦେ କିଣି ତାଙ୍କ ତୁଣ୍ଡେ ଦିଅ ଆହାର ।୬।

ବୁଣନ୍ତୁ ଦେଶ ତନ୍ତୀ ଲଗିଛି ଧନ ଗଣ୍ଠି
ନ କିଣିଲେ ଦାନା ବୁଡ଼ିଯିବ ତାହାର । ୭ ।
ସକଳେ କପା କର ଖାଇ ଅରଟ ଧର
ଅରଟଶବଦେ ପୂରୁ ସକଳ ଘର । ୮ ।
ଘୁଞ୍ଚିଲା କପା ଗୃହ ଗଲା ଅରଟ ନାଶ
ଚଉରାଶି କୋଟି ଟଙ୍କା ଯାଉ ଦେଶର । ୯ ।
ଶସ୍ତା ଲୁଗା ଦେଖି ଭୁଲିଲା ଦେଶ ଆଖି
ସରୁ ଲୁଗା ପିନ୍ଧି ସରୁ ହେଲା ଶରୀର । ୧୦ ।
ପିନ୍ଧ ମୋଟା ବସନ ଅଶନ ମୋଟା ଅନ୍ନ
ବାପ ଅଜା ଥିଲେ ବଳୀ ସୁସ୍ଥ ଶରୀର । ୧୧ ।
ବୋଲଉ ବଡ଼ଲୋକ ପେଟରେ ସଦା ଶୋକ
ସରୁ ଲୁଗା ପିନ୍ଧି କେତେ ବଡ଼ାଇ କର । ୧୨ ।
କିଣ ଭାଇ ଖଦର ସ୍ନେହେ କର ଆଦର
ଘୁଞ୍ଚି ହୋଇଯାଉ ଖଦରରେ ବଜାର । ୧୩ ।
ଦିଶେ ମାଣ୍ଡ ମଇଳା ଘୁଞ୍ଚ ଏ ନବରୁଚି
ଚିପୁଡ଼ି ପାରିବ ନାହିଁ ବୋଲି ନ ଡର । ୧୪ ।
ଲୁଗା ଚିପୁଡ଼ା ପାଇଁ ଦେହରେ ବଳ ନାହିଁ
କପଡ଼ ବାନ୍ଧୁଅ ଅସ୍ତ୍ରେ କର ଶରୀର । ୧୫ ।
ଭଲ ଲୁଗା ଛ ମାସେ, ଖଦି ଯିବ ବରଷେ
ଭାଉ କିଛି ହେଲେ ବେଶୀ ନାହିଁ ଖାତର । ୧୬ ।
ସୁନ୍ଦର ଅସୁନ୍ଦର କିଛିହିଁ ନ ବିଚାର
ନିଜ ଜିନିଷ ନିଜର କର ଆଦର । ୧୭ ।
କହୁଛି ଯୋଡ଼ି କର କିଣ ଖଣ୍ଡେ ଖଦର
ଖଦର ପ୍ରଚାର ଲାଗି ଯତନ କର । ୧୮ ।

---

ସ୍ତ୍ରୀ—ଚିଜଟି ଭଲ ଗୀତ ଗାଉଛ ! ଅମର ଏ ଲୁଗାରୁ ଗଣ୍ଡେ କିଣନ୍ତେନି ?

ସ୍ୱାମୀ—ତେବେ ସେ ଲୁଗା ଦେଖିଛ ?

ସ୍ତ୍ରୀ—ନା, ମୁଁ ତ ଦେଖିନାହିଁ, ଆଣିଲ ଗଣ୍ଡେ ଦେଖିବା ।

ସ୍ୱାମୀ—ହେଇଟି ନିଅ, ଏ ଶାଢ଼ୀ ଦଶହାତି । ଦାମ ହେଉଛି ଟ ୩୷ । ଦେଖ, ପସନ୍ଦ ହେଲେ ରଖିବା ।

ସ୍ତ୍ରୀ—( ଲୁଗା ନେଇ ହାତରେ ଦେଖି ସାରି ) ଯୋ ମା ଲୋ, ଏ ଲୁଗାଟା ବୋଝେ ଭାରି ହୋଇଛି, କେତେ ମୋଟ, ଧଡ଼ି ସୁନ୍ଦର ନୁହେଁ, ଗୋଲୁ ଗେଞ୍ଚାଇଲା ପରି ଦିଶୁଛି, ପୁଣି ଏତେ ପଇସା । କାହାର ଚଳବଳ ଅଛି ମ ଏ ଲୁଗାଟା ପିନ୍ଧିବ, ଧୋଇ ଶୁଖାଇବ ! ଟଙ୍କା ଦେଢ଼ଟା ଦେଲେ ଅତି ସୁନ୍ଦର କାଗଜ ପରି ପତଳା ଲୁଗା ମିଳିବ । ଏ ଗୁଡାକ ପିନ୍ଧିବ କିଏ ଲୋ ମା !

ସ୍ୱାମୀ—ଦାମ କଥା ଦେଖିଲେ ଅବଶ୍ୟ ମହଙ୍ଗ । କଳ ଲୁଗା ଯେତେ ଶସ୍ତା, ଖଦର ସେତେ ଶସ୍ତା ହେବ କିପରି ? କଳ ଘଣ୍ଟାକରେ ଯେତେ ଲୁଗା ବୁଣିଦେବ, ପଚାଶ ଜଣ ହାତରେ ସେତେ ଲୁଗା ବୁଣି ପାରିବେ ନାହିଁ । କଳଲୁଗା ଦାମ ସଙ୍ଗେ ହାତକଟା ସୂତାଲୁଗାର ଦାମ ସମାନ ହେବ କିପରି ? ଖଦର ଗୋଟାକର ଦାମରେ ଦି'ଟା କଳଲୁଗା ମିଳିବ ।

ସ୍ତ୍ରୀ—ଯେବେ ଏକଥା କହୁଛ, ତେବେ ଘରୁ ତ ସେଇ ପଇସା ଯିବ, ଯୋଡ଼ାଏ ଲୁଗା ନ କିଣି ଗୋଟାଏ ଲୁଗା କିଣିବା କିଆଁ ମ ? ମୁଁ ଜଣେ ତ ପିନ୍ଧିବି ନାହିଁ, ଘରେ ସମସ୍ତଙ୍କ ପାଇଁ ଗଣ୍ଡେ ଖଣ୍ଡେ କିଣିବ । ଖଦର ଲୁଗା କିଣିଲେ ଦୋହର ଡପଟ ପଇସା ଯିବ । ଅଳ୍ପ ପଇସାରେ ଯେବେ କାମ ଚଳିଗଲା, ବେଶୀ ପଇସା ଘରୁ ଯିବ କାହିଁକି ? ଏଣେ ପୁଣି ଲୁଗା ରୂପ ଦେଖିଲେ ବାନ୍ତି ମାଡ଼ିବ ।

ସ୍ୱା—ଲୁଗା ସିନା ମୋଟା ଦେଖି ତମ ଅଖିକୁ ରୁଚୁ ନାହିଁ, କିନ୍ତୁ ଏ ଲୁଗା ଭାରି ଟାଣ; ମାଡ଼ି ମକଚି ପିନ୍ଧିଥାଅ, କିଛି ଛତି ନାହିଁ। ଯେତେ ଯେତେ ଧୋବାଘରେ ପଡ଼ିବ, ସେତେ ମୁଲାମ ହେଉଥିବ। ଲୁଗାରେ ଥଣ୍ଡା ଗରମ ହବାର ଗୁଣ ଅଛି।

ସ୍ତ୍ରୀ—କଥାଟା ଅଛି, କପାସିଆ ଛ'ମାସିଆ, ଅର୍ଥାତ୍ କପାରୁ ଯେଉଁ ଲୁଗା ତିଆର ହୁଏ, ତାର ପରମାୟୁ ଅତି ଜୋର ଛ' ମାସ, ତେଣିକି ପୋଛଣା—ମଶାଲ ବତୀ କରିବେ। କଳଲୁଗା ହେଉ ବା ଖଦର ହେଉ, ଯାହା ଶସ୍ତାରେ ମିଳିବ, ଆମକୁ ତାହା ଭଲ।

ସ୍ୱା—ହଁ, ସେ କଥାରେ କିଛି ସତ ଅଛି। ଦୁଇ ଅର ମୁହଁରେ ଗୋଟାଏ ଶସ୍ତା ଜିନିଷ ମିଳିଲେ, କେହେ ତାକୁ ନ କିଣି ମହର୍ଗ ଜିନିଷ ଲୋକେ କିଣିବେ କାହିଁ ? ସେଥିଲାଗି ଖଦର ଅଳ୍ପ ବିକ୍ରୀ ହେଉଛି। ଲୋକଙ୍କର ଖଦର ପ୍ରତି ଆଗ୍ରହ ଅଛି, ମାତ୍ର ବେଶୀ ଦାମ ହେବାରୁ ବେଶୀ ଲୋକ କଳଲୁଗା କିଣି ବାଧ୍ୟ ହେଉଛନ୍ତି। ଯେତେ ଦିନ ଯାଏ ଖଦର ଶସ୍ତା ନ ହେବ, ବେଶୀ ଲୁଗା ବିକ୍ରୀ ହେବ ନାହିଁ କି ଖଦର ବେଶୀ ଦିନ ରହିପାରିବ ନାହିଁ। ସବୁ ମୋଟ ସଙ୍ଗେ କିଛି ଯାଏ ଆସେ ନାହିଁ। ଅଜ୍ଞ ଲୋକେ ଭଲ ସୂତା କାଟି ପାରୁ ନାହାନ୍ତି, ଲୁଗା ମୋଟା ହେଉଛି। ଅଭ୍ୟାସ ବେଶୀ ହେଲେ ସରୁ ସୂତା କାଟିବେ, ସରୁ ଲୁଗା ହେବ।

ସ୍ତ୍ରୀ—କଳଲୁଗା ପିନ୍ଧିଲେ କ୍ଷତି କଣ, ଖଦର ପିନ୍ଧିଲେ ଲାଭ କଣ ?

ସ୍ୱା—ଲାଭ କ୍ଷତି ବହୁତ ଅଛି, ବୁଝିଲେ ହେଲା। ଆମ ଦେଶରେ କଳ ତିଆରି ହୁଏ ନାହିଁ କି କଳଲୁଗା ତିଆରି ହୁଏ ନାହିଁ। ଅନ୍ୟାନ୍ୟ ବିଦେଶରେ ଲୁଗା ତିଆରି ହୁଏ। ସେ ଦେଶରୁ

ଅଛି ଆମ ଦେଶରେ ବିକ୍ରୀ ହୁଏ । ଆମେ ପଇସା ଦେଇ ଲୁଗା କିଣୁଁ । ଆମେ ଯେଉଁ ପଇସା ଦେଉଁ, ସେ କେଉଁଠାକୁ ଯାଏ କହିଲ ?

ସ୍ତ୍ରୀ—ଆମର ଯେଉଁ ମାରୁଆଡ଼ି ଦୋକାନରୁ ଲୁଗା ଆସେ, ସେ ଦୋକାନି ପଇସାଟା ନିଏ ।

ସ୍ୱା—ଦୋକାନି ତ ଲୁଗା ତିଆରି କରେ ନାହିଁ, ସେ ବିକ୍ରୀ କରି ଦି' ପଇସା ଲାଭ କରେ । ସେ କଲିକତାରୁ ମାଲ ଆଣେ । କଲିକତାବାଲା ବିଦେଶରୁ ମାଲ ଆଣେ । ଏମାନେ ମଝିରେ କେବଳ ସାମାନ୍ୟ ଲାଭ ନିଅନ୍ତି  ଅସଲ ପଇସା କେଉଁ ଦେଶକୁ ଗଲା ?

ସ୍ତ୍ରୀ—ତେବେ ଯେଉଁ ଦେଶରେ ଲୁଗା ତିଆରି ହେଉଛି, ସେହି ଦେଶକୁ ଗଲା । ଆମେ ମାଇପିଲୋକେ, ଏତେ କଥା କିଏ ଜାଣିଛୁ ମ ? ଆମେ ଜାଣୁ, ଆମ ଦେଶଲୋକେ ଲୁଗା ବିକୁଛନ୍ତି, ପଇସା ନେଉଛନ୍ତି । ଏତେ ଟେଣାରେ ପାଣି ଉଠୁଛି ବୋଲି କିଏ ଜାଣୁଛୁମ ?

ସ୍ୱା—ଲୋକେ ତ ଜାଣିପାରୁ ନାହାନ୍ତି ସତ, କିନ୍ତୁ କେତେଜଣ ଏକଥା ଚିନ୍ତା କରୁଛନ୍ତି ? ସମସ୍ତେ ତ ସରୁଲୁଗା ପିନ୍ଧି ଭୋଳ । ସେ ପିଲାଟି ଗାଉଥିଲା ପରା, 'ଚଉରାଶୀ କୋଟି ଟଙ୍କା ଯାଉ ଦେଶର ।'

ସ୍ତ୍ରୀ—ଚଉରାଶୀ କୋଟି ଟଙ୍କା ଯାଉ କଣ ?

ସ୍ୱା—ଅହେ, ତମେ ଜଣେ ମଣିଷ, ବର୍ଷକେ ଦଶ ବାର ଟଙ୍କାର ଲୁଗା ପିନ୍ଧୁଛ ତ ? ଭାରତବର୍ଷରେ ତେତିଶ କୋଟି ଲୋକ ଅଛନ୍ତି । ଏ ସମସ୍ତ ଲୋକ ଯେତେ ଲୁଗା କିଣି ପିନ୍ଧୁଛନ୍ତି, ତହିଁର ଦାମ ୮୪ କୋଟି ଟଙ୍କା । କୋଟିକ ୧୦୦ ଲକ୍ଷ ।

ଲକ୍ଷକ ୧୦୦ ହଜାର । ହଜାରକ ଦଶ ଶହ । ଏପରି ହିସାବ କଲ, କେତେ ଟଙ୍କା ହେବ କହିଲ ?

ସ୍ତ୍ରୀ—ମୋର ତ ଅଙ୍କ ପାଉ ନାହିଁ । ଏତ ଗୋଟାଏ ପାହାଡ଼ ହେବ । ଏତେ ଟଙ୍କା ଚାଲି ଯାଉଛି ! ସେମାନେ କଣ ନଗଦ ଟଙ୍କା ନେଉଛନ୍ତି ?

ସ୍ୱା—ଟଙ୍କା ନେଉଛନ୍ତି, ଧାନ ଚାଉଳ ପ୍ରଭୃତି ଏ ଦେଶରେ ଯାହା ହୁଏ ନେଉଛନ୍ତି । ଏ ଟଙ୍କା ତ ଆମ ଦେଶକୁ ଆଉ ଫେରୁ ନାହିଁ । ଯେ ଗଲା ସେ ଏକାବେଳକେ ଗଲା । ଦେଶରୁ ଧନ କମି ଯିବାରୁ ଲୋକେ ଦରିଦ୍ର ହେଉଛନ୍ତି ଏବଂ ବାର ବାର ଦୁର୍ଭିକ୍ଷ ହେଉଛି । ଅଚ୍ଛା, ବର୍ତ୍ତମାନ କହିଲ ଦେଖି, ଖଦର କିଣିବାରେ ଲାଭ ଅଛି କି ନାହିଁ ?

ସ୍ତ୍ରୀ—ଅଛି, କିନ୍ତୁ ଖଦର ଶସ୍ତା ହେବ କିପରି କହିଲ ?

ସ୍ୱା—ଶସ୍ତା ହେବାପାଇଁ ଦୁଇଟି କଥା ଅବଶ୍ୟକ ପ୍ରଥମ—ପ୍ରତ୍ୟେକ ଚାଷୀ ତା ବାଡ଼ିରେ କପା କରିବ । ଦ୍ୱିତୀୟ କଥା-ପ୍ରତି ଘରେ ମାଇପେ ଅରଟରେ ସୂତା କାଟିବେ । ଏ ଦୁଇଟି ବିଷୟ ନ ହେବା ଯାଏ ଖଦର ଶସ୍ତା ହେବ ନାହିଁ ।

ସ୍ତ୍ରୀ—ଆମ ଦେଶରେ କଣ କପା ହେଉ ନ ଥିଲା ?

ସ୍ୱା—ଆମ ଦେଶରେ କପା ହେଉଥିଲା । ମୋ ପିଲାଦିନେ ଆମ ବୁଣା ଓଳିରେ କପା ହେଉଥିଲା । ମୁଁ ତ କେତେ ଥର କପା ତୋଳା ହେବାବେଳେ କପା ଦେଇ ଯୁଅଣ୍ଡି ପଡ଼ା ଚାଉଳଭଜା ଖାଇଛି । ପ୍ରତି ଗ୍ରାମରେ କପା ହେଉଥିଲା । ପ୍ରତି ଘରେ ମାଇପେ ଖାଇରେ କପା ଖୁଆଇ, ଲଟିରେ ଭଣି, ବରଣା କରି ଅରଟରେ ସୂତା କାଟୁଥିଲେ । ସେହି ସୂତା ନେଇ ବୁଣା ଘରେ ଦେଇ ଆସିଲେ ସେ ବାଣ ନେଇ ବୁଣି ଦେଉଥିଲା । ଲୁଗା ଗୋଟାଏ ବୁଣି

ଦେବାକୁ ବାଣ ପଇସା ଗୁରିଅଣା, ଛ'ଣା ପଡ଼ୁଥିଲା । ଲୋକଙ୍କ ପଇସା ଦେଇ ଲୁଗା କିଣିବା ପରି ଜଣା ପଡ଼ୁ ନ ଥିଲା । ଏବେ ମୁଠାଏ ଟଙ୍କା ନେଇ ବଜାରକୁ ନ ଗଲେ ଘରକୁ କେତେ ଖଣ୍ଡ ଲୁଗା ଆସିବ ନାହିଁ । ଏବେ ମଧ୍ୟ ଭାରତବର୍ଷର ପଶ୍ଚିମାଞ୍ଚଳରେ ଅନେକ କପା ହେଉଛି । ସେ କପା ଯାକ ଅନ୍ୟଦେଶ ଲୋକେ ଅତି ଅଳ୍ପଦାମରେ କିଣି ନେଇ ସେଥିରେ ଲୁଗା ତିଆରି କରି ଆମ ଦେଶକୁ ପଠାଉଛନ୍ତି । ଆମେ ପୁଣି ଗୁରିଗୁଣ ମୂଲ୍ୟ ଦେଇ ଲୁଗା କିଣୁଥାଉଁ ।

ସ୍ତ୍ରୀ— ଆମ ଦେଶରେ ତ ସବୁ ଥିଲା, ବୁଡ଼ିଗଲା କାହିଁକି ସ ?

ସ୍ୱା— ଗୁରିସାଲ ବନ୍ଦୋବସ୍ତ ବେଳେ କିଏ ଗୋଟାଏ ଦୁପା ଉଠାଇ- ଦେଲା, କପାକ୍ଷେତ୍ର ଉପରେ ବେଶୀ ଖଜଣା ହେବ । ଲୋକେ ଏଇ ଡରରେ ମାତ୍ର କପା କଲେ ନାହିଁ । ଯେ ଛାଡ଼ିଦେଲେ ସେ ଆଉ ତେଣିକି ମନ ଦେଲେ ନାହିଁ । ସେହି ସମୟରେ ଧାନ ଦର ଠିକିଏ ବେଶୀ ହେଲା । ଧାନ ଭରଣ ଦଶ ବାରଟଙ୍କା ହେଲା । ଏଣେ ବିଦେଶୀ ଲୁଗା ଭାରି ଶସ୍ତାରେ ମିଳିଲା । ଲୁଗା ଗୋଟିକୁ ଟଙ୍କାଏ, ବାରଅଣା । ଅଗ୍ନିକୁ ବାୟୁ ସାହା ପରି କପା ନ ହେବାବେଳକୁ ଧାନ ହେଲା ମହରଗ, ଲୁଗା ହେଲା ଶସ୍ତା । ଲୋକେ ଦେଖିଲେ, ହାଟକୁ ଯାଇ ଟଙ୍କାଟାଏ ପକାଇ ଦେଲେ, ଲୁଗାଟାଏ । ଏତେ କଥା କିଏ କରୁଛି ? କପା କରିବାକୁ ପରିଶ୍ରମ; ତାକୁ ଭଣି ସୂତା କାଟି ଲୁଗା ବୁଣାଅ, ଏତେ ବଖେଡ଼ାରେ କିଏ ପଶୁଛି ! ଏହିପରି ସବୁ କଥା ବୁଡ଼ିଗଲା । ଗୋଟାଏ କଥା, କିଛି କାମ ଛାଡ଼ିଦେଲେ, ଆଉ ସେ ସୁଖ ଲାଗେ ନାହିଁ । ଏବେ କପାଗୁଷ ନାମ ଶୁଣିଲେ ମରଦଙ୍କୁ ମାଡ଼ ପଡ଼ୁଛି । ଅରଟ ନା ଶୁଣିଲେ ମାଇପେ ରଟମଟ ଗୁହିଁ କଟକଟ-

ହୋଇଛନ୍ତି । ଏତେ ପରିଶ୍ରମ କିଏ କରୁଛି ? ଦୁ'ପହରେ ମଣିଷ ଟିକିଏ ଶୋଇବ ସିନା, ଏଥିରେ ଗୁଡ଼ାଏ ଜଞ୍ଜାଳ ପୁଣି ମୁଣ୍ଡକୁ କିଏ ଆଣୁଛି ? ବର୍ତ୍ତମାନ ଦେଶର ଅବସ୍ଥା ଏହିପରି । ଏଥିରେ ମରଦ ମାଇପେ ଉଭୟେ କଥାଟାକୁ ବୁଝି, ଯେବେ କାମରେ ଲାଗିଯାନ୍ତେ, ତେବେ ଆମଦେଶ ଲୁଗା ଆମେ ପିନ୍ଧି-ବଳନ୍ତା । ଆମେ କାହିଁକି ଅନ୍ୟ ଦେଶକୁ ଚାହିଁ ବସନ୍ତେ ? ଅନ୍ୟ ଦେଶରୁ ଲୁଗା ଆସିଲେ ଆମେ ପିନ୍ଧିବୁ, ଭଲଲୋକ ହୋଇ ଦାଣ୍ଡକୁ ବାହାରିବୁ; ନଚେତ୍ ଆମେ ଲଙ୍ଗଳା । କେବଳ ଅଳସୁଆପଣିଆରୁ ଆମେ ମରୁଥାଉଁ । ଆମର ଜମି ଅଛି, ବାଡ଼ି ଅଛି, ଅଥଚ ହାତ ଅଳସରେ କାଶ ବଣ ପରି କପା କରୁ ନାହୁଁ, ସୂତା କାଟିବୁ ନାହୁଁ କି ଲୁଗା ପିନ୍ଧିବୁ ନାହୁଁ । ଏକାଳ ଝିଅମାନେ ଅରଟ ନା ଶୁଣିଲେ ନାକ ଟେକିଦେବେ । ପିଲାଦିନୁ ଯେବେ ସେମାନେ ଦେଖନ୍ତେ ଯେ ମା'ମାନେ ଅରଟ ଧରି ବସିଛନ୍ତି, ସେମାନଙ୍କ ମନ ତେଣିକି ଯୋଡ଼ାନ୍ତା ।

ସ୍ତ୍ରୀ—ଅଚ୍ଛା, ଆମର ଖଣ୍ଡେ ଅରଟ ଆଣନ୍ତୁ, ମୁଁ କାଟନ୍ତି । ଆମ ଘରେ ଅରଟ ଚଳିଲେ ସାହି ପଡ଼ିଶା ଲୋକେ ଦେଖି ଶିଖନ୍ତେ । ଆମର କପା କର ନାହିଁ ?

ସ୍ୱାମୀ—ଆହେ ଏ କାଳ ଚାକର ଏମନ୍ତ ହେଲେଣି ଯେ, କପା କରିବା କଥା କହିଲେ ବାର ଆପତ୍ତି ଉଠାଇବେ । ଏତେକ ଲୋକେ ବୁଝି ନାହାନ୍ତି ଯେ, କିରେ ବାବୁ ପେଟକୁ ମୋଟା ମୋଟା ଗଣ୍ଡାଏ ଖାଇବ, ଗାଣ୍ଡିକି ମୋଟା ମୋଟା ଖଣ୍ଡେ ପିନ୍ଧିବ; ଏତିକି ହେଲେ ତ ହେଲା । ଆମର ଜମି ଅଛି, ଯାହା ଚାହିଁବ ତାହା ଦେବ । ଜମିକୁ ସେବା ପାଇଲେ ହେଲା । ଜମିରେ ଧାନ ହେଉଛି; ଭାତ କାମ ଚଳି ଯାଉଛି; କପା ହେଲେତ ଲୁଗା କାମ

ଚଳିଯିବ । ଅଜ୍ ବେଶୀ ଅଭାବ କଣ ? ଚିକି, ଅରଟ ଘରେ ଥିଲେ ଆଜ କିଛି ଭାବନା ନାହିଁ । ଚିକି ଯଥା ତଥା ଅଛି । ଅରଟ ବଂଶ ଲୋପ ହେଲଣି । ମନ ଥିଲେ ଏବଂ ମନ କଲେ ଏବେ ଦିନକେ ସବୁ ଘରେ ଅରଟ ଶବ୍ଦ ଶୁଭିବ । ତମେ ଯେବେ ଇଚ୍ଛା କରୁଛ; ମୁଁ କାଲି ଅରଟ ଆଣିଦେବି । ମନ ଧ୍ୟାନ ଦେଇ କାମ କଲେ ହେଲା । ଆଗେ ଦଶ ପାଞ୍ଚ ମାଇପେ ଏକା ଧାଡ଼ିକେ ଅରଟ ନେଇ ବସି ଯାଉଥିଲେ । ସୂତା କଟା ଗୁଲିଛି, ଗାଁଠି ବୋଲି ଗୁଲିଛି; ଅର୍ଥାଟା ସୂତା ଉପରେ ଥାଏ । ଏବେ ସେ କଥା ଦେଖିବାକୁ ସ୍ୱପ୍ନ । ଏବେ ଟାଲି ଦ'ପହରଯାଏ ଆସନ୍ତ; ନୋହିଲେ ପରଘର ବାଦ ଛେଦ କଥାବାର୍ତ୍ତା ।

ସ୍ତ୍ରୀ—ଏବେ ଦେ ବାଳିକା ସ୍କୁଲମାନଙ୍କରେ ସୂତାକଟା ଶିକ୍ଷା ଦିଆ ଯାଉଛି ?

ସ୍ୱା—ହଁ ହଁ; ସବୁ କଥା ଯେପରି ଶିକ୍ଷା ଦିଆଯାଉଛି, ଅରଟ ଶିକ୍ଷା ସେହିପରି । କାହିଁ, କେଉଁ ବାଳିକା ଘରେ କେତେ ସୂତା କାଟିଲଣି ? ଏ କଥା ସ୍କୁଲରେ କଣ ଶିଖିବ ମ ? ଆଗେ ମାଇପେ କଣ ସ୍କୁଲରେ ପଢ଼ି ସୂତାକଟା ଶିଖିଥିଲେ ? ସେ କାଳରେ ସ୍କୁଲ ନ ଥିଲା, ଅଥଚ ଘରେ ଘରେ ସୂତାକଟା ଗୁଲିଥିଲା । ଏବେ ପ୍ରତି ଗ୍ରାମରେ ସ୍କୁଲ ବସିଲା; ମାତ୍ର ଅରଟ, ସୂତାକଟା କୁଆଡ଼େ ଛପିଗଲା । ସ୍କୁଲ ପଢ଼ାରେ କିଛି ହେବ ନାହିଁ; ଘରେ ମାଇପେ ମରଦ ଉଭୟେ ଆଖି ଉଠିଲେ କାମ ହେବ । ଏଥିରେ ବେଶୀ ଧନ ଲାଗିବ ନାହିଁ; ମନ ଖରଚ କରିବା ଆବଶ୍ୟକ । ତମେ ଯେପରି କହିଲ ସୂତା କାଟିବ ବୋଲି, ସେହିପରି ପ୍ରତି ଘରର ସ୍ତ୍ରୀମାନେ ମନେକଲେ ବରଷକ ମଧ୍ୟରେ ଆମ ଲୁଗା ଆମେ ପିନ୍ଧିବା । ସେପରି ନ କଲେ ଗାଦର

ଠେକି ପାରିବ ନାହିଁ ବୋଲି ମୋର ଧାରଣା । ଅନ୍ୟପକ୍ଷ
ତୁଳା ଅଣି ଗଣ୍ଡା ଗଣ୍ଡା ଗୃହର ଚରଖ କାମ ଚଳାଇଲେ ଖର୍ଚ୍ଚ
ବହୁତ ହେବ ଏବଂ ସେ ଖର୍ଚ୍ଚ ଲୁଗା ମୂଲ୍ୟ ଉପରେ ବସିଲେ
ଖଦର ଲୁଗାର ମୂଲ୍ୟ ଏତେ ବେଶୀ ହେବ ଯେ; ଖରିଦଦାର
ମୁହଁ ଦେଇ ପାରିବ ନାହିଁ । ଏପରି ବୁଲି ବୁଲି ବିକିଲେ
କେତେ ଲୁଗା କଟିବ ? ଅମୁକ ଲୋକ ଅସିଛନ୍ତି; ଏତେ କଷ୍ଟ
କରୁଛନ୍ତି; ଅଳ୍ପ ଖଣ୍ଡେ କିଣିବା । ଏପରି କେତେ ଜଣ କିଣିଲେ
ଖଦର ବଜାର ଚଳିବ ନାହିଁ । ଲୋକେ ବର୍ତ୍ତମାନ ଅର୍ଥା-
ଭାବରେ ଛଟପଟ; ସବୁବେଳେ ଅଣ୍ଡା ଖୋସଣିରେ ନଜର ;
ସବୁବେଳେ ପଇସା ପାଇଁ ଟାଣି ଓଟାରି ହେଉଛନ୍ତି । ଖଦର
ଦାମ ଶୁଣି ଶୁଣି ତାଙ୍କ ହାଲୁକ ଶୁଖି ଯାଉଛି, ସେ କିଣିବେ
କିପରି ? ବଜାରରେ ଅନ୍ୟ ଲୁଗା ପରି କାରବାର ହେଲେ
ସିନା ହେବ । ପାଟ ମକୁଟା ପରି କାଏ ଖଣ୍ଡେ ଅଧେ ରଖି
ପିନ୍ଧିଲେ କଣ ହେବ ?

ଥିଲେ ଶୁଭେ ମୋର ଅରଟ ରାଣୀ ।
ପିନ୍ଧାଇବ ମୋତେ ପାଟ ପଉଣୀ ॥
ଧରିଥିଲେ ହାତେ ଅରଟ ହତା ।
ଯେପରି ଗୁଣ୍ଡିବ ସେପରି ସୂତା ॥
ସରୁ ମୋଟ ମଝିହଳ ଅବର ।
ଯାହା ଇଚ୍ଛା ତାହା କର ବାହାର ॥
କାରିଅଡ଼ି କପା ତୋଳି ଅଣିବ ।
ଦିନେ କି ଦି'ଦିନ ଶୁଖାଇ ଦେବ ॥
ବାଛି ବୁଛି ଖାଇ-ପାଟିରେ ଦେବ ।
ମଞ୍ଜି ଯାକ ସବୁ ବାହାରିଯିବ ।
( ତୁଳାଯାକ ବାରି ହୋଇ ରହିବ ) ॥

ତା'ପରେ ତୁଳାକୁ ଏକାଠି କର ।
ଉଣା ଲଟି ଦେଲେ ହେତେ ପାହାର ॥
ଉଣିଉଣା ହୋଇଯିବ ଯେ ତୁଳା ।
ତାପରେ ହୋଇବ ବଉଣା ବଳା ॥
ଗୋଟିଏ ବଉଣା ହାତରେ ନେଇ ।
ତାକୁଣ୍ଡ ମୂନରେ ଦେବ ଲଗାଇ ॥
ଦକ୍ଷିଣ ହାତରେ ଅରଟ ହତା ।
ବୁଲାଇଲେ କାଟି ହୋଇବ ସୂତା ॥
ବାମ ହାତେ ବଉଣାକୁ ଧରିବ ।
ଯେତେ ଦୂର ଯାଏ ଲମ୍ବାଇ ଦେବ ॥
ସେହୁ ହେବ ସୂତା ନାନା ପ୍ରକାର ।
ହାତ ଗୁଣେ ସରୁ ମୋଟା ଅବର ॥
ମଧୁର ଅମିୟ ଅରଟ ଧ୍ୱନି ।
ଶୁଣି ନ ଭୁଲିବ କେଉଁ ରମଣୀ ॥
ଲଜ୍ଜା ନିବାରଣ ବାନ୍ଧା ଅରଟ ।
ତାକୁ ନ ଧରିଲେ ପାଇବ କଷ୍ଟ ॥
ଅରଟ ଯେ ଧନ୍ୟ ଦେଉଛ ଗୁଣ୍ଡ ।
ସ୍ୱଦେଶୀ ବସନ ବସିଲି ମାଣ୍ଡ ॥



ଜାଗ ଜାଗ ସର୍ବେ ଭାରତ-ରମଣୀ ।
ଉଡ଼ ଅଣ୍ଟା ବେଗେ ଉଠ ଶିର ଟେକି ॥
ଘରେ ଘରେ ଶୁଭୁ ଅରଟ ନିନାଦ ।
ତେଜ ଅଳସ୍ୟତା ଦନସ୍ୱଅ ନିଦ ॥

ଅରଟ ସଙ୍ଗୀତ ଗାଅ ଘରେ ଘରେ ।
ଜେତେ ଶୋଇଥିବ ନିଗମ ନାଦରେ ।
ନିଜ ଘରେ ନିଜ ବସନ ବୁଣାଇ ।
ଦିଅ ଏ ବସନେ ଦାରିଦ୍ର୍ୟ ଘୁଞ୍ଚାଇ ।
ଝିଅ ବୋହୂ ମାତା ଭଉଣୀ ନାତୁଣୀ ।
ଅରଟ ପାଶରେ ବସନ୍ତୁ ଧୁଅ ପୁଣି ।
ଦେଇ ହୁଳହୁଳି ଚଳାଅ ଅରଟ ।
ଘୁଞ୍ଚିବ ଅଚିରେ ଏ ବସନ କଷ୍ଟ ।
ଭାରତ ରମଣୀ ଅନ୍ନପୂର୍ଣ୍ଣାଗଣ ।
ରଖ ନିଜ ଘରେ ନିଜ ନିଜ ଧନ ।
ପୁଣି କାଳି ହସି ଉଠିବ ଭାରତ ।
ପିନ୍ଧ ନିଜ ଲୁଗା ହୋଇ ଆନନ୍ଦିତ ।
ପର ଲୁଗା ପିନ୍ଧି ବୋଲିବା ନିଜର ।
ଧିକ୍ ଏ ଭଦ୍ରତା ବଡ଼ ଲଜ୍ଜାକର ।
ଏକମନ ଏକଚିତ୍ତେ ଲାଗିଯାଅ ।
ଅଚିରେ ଏ ଦୁଃଖ କଳଙ୍କ ଘୁଞ୍ଚାଅ ।
ଅଛୁ ତ ଶକତ, ଅଛୁ ଗୋଡ଼ ହାତ ।
କି କାରଣେ ଜଡ଼ ପର ହୋଇ ମାତ ।
ଶୁଣୁ ନାହିଁ ବାରେ ଜନନୀର ବାଣୀ ।
ବୁଝୁ ନାହଁ ତଳେ ପ୍ରାଚୀନ କାହାଣୀ ।
ଦାରିଦ୍ର୍ୟ ନାଶନ ଖର କରବାଳ ।
ଅରଟ ଚକରେ ଦିଅ ବେଗେ ଠେଲ ।
ବୁଲୁ ସେ ଅରଟ ବୁଲୁ ବେଗେ ବେଗେ ।
ଜାଗ ଗୋ ରମଣି ! ବେଗେ ଜାଗ ଜାଗ ।

——ଃ——

ସ୍ତ୍ରୀ—ଅହା, କି ସୁନ୍ଦର ଗୀତ ଗାଇଲ, ମୋ ଦେହ ତ ଜଳିଯାଇ ଉଠିଲି । ଏ ଗୀତ ଶୁଣିଲେ ସବୁ ମାଇପେ ଅରଟ ଧରି ବସିବେ ।

ସ୍ୱା—ନାଁ ହେ ନାଁ, ଏଇ ଗୋଟାକ ଗୀତ ଶୁଣିଲେ ଯେବେ ସବୁ ମାଇପେ ସୂତା କାଟି ବସନ୍ତେ, ତେବେ ମୁଁ ଗୋଟାଏ ଗଡ଼ କାଟନ୍ତି । ତୁମେ ଟିକିଏ ଶୁଣିଲ, ଶୁଣିବାବେଳେ ମନ୍ଟା ସକସକ ହେଲା । ଅଜି କାଲିକି ଏ ମନ ନ ଥିବ ଯେ ! ଏ ଗୀତ ଗାଇବା ଅର୍ଥ କେବଳ ଅରଣ୍ୟ ରୋଦନ । ଅରଣ୍ୟ ଭିତରେ କାନ୍ଦିଲେ ଯେପରି କେହୁ ଶୁଣିବାକୁ ନ ଥାଏ, ଏ ଗୀତ ଗାଇବା ସେହିପରି । କେତେ ଲୋକ କେତେ ଗୀତ ଗାଇ ଗାଇ କଣ୍ଠ ପଡ଼ି ଗଲେଣି । ଏ ଗୀତଟା ଏପରି କି ଅପୂର୍ବ ଗୀତ ! କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କ କାନ ବଧିର ହୋଇ ଗଲଣି । ହୃଦୟତନ୍ତ୍ରୀ କଳଙ୍କିତ ହୋଇ ଗଲଣି । ପଦ୍‌ଟୋଳା ଶୁଣି ଫଣା ଟେକିବାପାଇଁ ଶକ୍ତି ନାହିଁ । ତମେ ଅଗ ଅରଟ ଧର, ସୂତା କାଟ, ଦେଖାଯାଉ କେତେଜଣ ପଛରେ ବାହାରୁଛନ୍ତି । ଏକା ଏଇ କଥାପାଇଁ କିଛି ନାହିଁ, ସବୁ ଦାଗରେ ଏହି ଦଶା ।

ସ୍ତ୍ରୀ—ମୁଁ ଏକା ଅରଟ ଧରିଲେ କଣ ହେବ ମ ?

ସ୍ୱା—ଅହେ, କିଛି ନ ହେଲେ ଅମ ଘର କଥା ଅମର ଚଳିବ । ଅମର ବସ୍ତ୍ରକ୍ଷ୍ଟୋଟି ଘର । ଲୁଗା କିଣାରେ କେତେ ଟଙ୍କା ଯାଉଛି । କେତେ ଭରଣ ଧାନ ବିକିଲେ ଲୁଗା ଖର୍ଚ୍ଚ ଚଳୁଛି । ଯେବେ ବାହାରେ କପା ହୋଇ ଘରେ ସୂତାକଟା ହୋଇ ଅମ ଲୁଗା ଖର୍ଚ୍ଚଟା ଅଳ୍ପାଳ୍ପିରେ ଚଳିଗଲା, ତେବେ ତ ଅମର ଲାଭ ଅଛି । ଅମର ତ କିଛି ଧାନ ରହୁଥିବ । ସେତକ ପିଲାଙ୍କ ଖାଇବା ଖରଚ ଉତ୍ତମରୂପେ ଚଳିବ । ସେତକ ଧାନ ବିକି

ଘିଅ ଖାଇବ । ଯେଉଁ କାମଟା କଲେ ଆମ ହାତରେ ହୋଇ ପାରିବ, ସେଟା ନ କରିବ କାହିଁକି ? ଅଳସୁଆ ପଣରେ ନ କରିବା ପିନା । ବାୟା ଚଢ଼େଇ ସ୍ତ୍ରୀ ପୁରୁଷ ଦୁହେଁଯାକ ଘାସ ଦାନ ଆଣି କିପରି ସୁନ୍ଦର ଭାବରେ ବସା ତିଆରି କରୁଛନ୍ତି ଦେଖୁଛ ତ ! ତମେମାନେ ସେମାନଙ୍କଠାରୁ ଶିଖ ନା । ବାୟା ବସା ବୋଲି ଲୋକେ କହନ୍ତି ପିନା; ସେଥିରେ କେତେ କାରିଗରି କରିଛି ଦେଖ ! କେବଳ କ୍ଷୁଦ୍ର ଥଣ୍ଟ ସାହାଯ୍ୟରେ କେତେ ପ୍ରକାରେ ବୁଣିଛି ଦେଖିଲ ! ଆଶ୍ଚର୍ଯ୍ୟ ମାୟା ! କେଡ଼େ ଟିକିଏ ଚଢ଼େଇ, କେତେ କୌଶଳ ଜାଣେ, କେତେ ଶିଳ୍ପ ଚାତୁରୀ ଦେଖାଇ ବୁଣିଛି । ଏକା ବାୟା ଚଢ଼େଇ କାହିଁକି, ମହୁମାଛି, ଜିଇ, ପାଟପୋକ, ବୁଢ଼ିଆଣୀ ଏମାନେ ଦିନରାତି କାମରେ ଲାଗିଛନ୍ତି । ଦୁଇପହରେ ଏମାନେ ଶୁଅନ୍ତି ନାହିଁ । ଏମାନଙ୍କ କାର୍ଯ୍ୟ ଦ୍ୱାରା କେତେ ଲୋକଙ୍କର କେତେ ଉପକାର ହୁଏ । ପରୋପକାରପାଇଁ ଏମାନେ କେତେ ପରିଶ୍ରମ କରୁଛନ୍ତି । ସେମାନେ ଆମ୍ଭମାନଙ୍କର ଗୁରୁ ହେବା ଉଚିତ । ଏମାନେ ସର୍ବଦା କାମରେ ଲାଗିଛନ୍ତି । ମଣିଷ ଗୁଡ଼ାକ ଖାଇ ପିଇ ଶୋଇଲେ କିପରି ସୃଷ୍ଟି ରହିବ ?

— — —

## ଷୋଡ଼ଶ ପରିଚ୍ଛେଦ

ସ୍ତ୍ରୀ—ତମେ ଏଥର କେଉଁଠାକୁ ଯାଇଥିଲ କି ? ଏତେଦିନଯାଏ କେଉଁ ଆଡ଼େ ବୁଲିଲ ମ ?

ସ୍ୱା—ମୁଁ ଏଥର ବହୁତ ତୀର୍ଥ ଦେଖି ଆସିଲି । ମଥୁରା, ବୃନ୍ଦାବନ, ପୁଷ୍କର, କାଶୀ ଓ ଗୟା ଯାଇଥିଲି ।

ସ୍ତ୍ରୀ—ଗୟା କାହିଁକି ଯାଇଥିଲ ?

ସ୍ୱା—ଗୟା ଗୋଟିଏ ପ୍ରଧାନ ତୀର୍ଥ ସ୍ଥାନ । ଏଠାରେ ଶ୍ରାଦ୍ଧ ଦେବାକୁ ହୁଏ । ମୁଁ ଯାଇଁ ଶ୍ରାଦ୍ଧ ଦେଇ ଆସିଲି । ଏଠାରେ ପିତୃ ମାତୃ ଶ୍ରାଦ୍ଧ ହୁଏ । ଏଠାରେ ଶ୍ରାଦ୍ଧ କଲେ ପିତୃଲୋକେ ପ୍ରେତତ୍ୱରୁ ମୁକ୍ତ ହୋଇ ସ୍ୱର୍ଗକୁ ଯାନ୍ତି । ପୁତ୍ରର କର୍ତ୍ତବ୍ୟ ମଧ୍ୟରେ ଏ ଗୋଟିଏ ପ୍ରଧାନ କର୍ତ୍ତବ୍ୟ । ଶାସ୍ତ୍ରରେ ଅଛି, "ଜୀବତୋ ବାକ୍ୟ କରଣାତ୍ କ୍ଷୟାହେ ଭୂରିଭୋଜନାତ୍, ଗୟାୟାଂ ପିଣ୍ଡଦାନଂ ଚ ତ୍ରିଭିଃ ପୁତ୍ରସ୍ୟ ପୁତ୍ରତା," ଅର୍ଥାତ୍ ଜୀବିତାବସ୍ଥାରେ ପିତୃ ଯାହା କହିବେ ତଦନୁସାରେ କାର୍ଯ୍ୟ କରିବ, ପିତୃଶ୍ରାଦ୍ଧ ଦିବସରେ ଯଥେଷ୍ଟ ଖାଇବାକୁ ଦେବ ଏବଂ ପିତାଙ୍କ ମୃତ୍ୟୁପରେ ଗୟାରେ ପିଣ୍ଡଦାନ କରିବ । ଗୟାରେ ପିଣ୍ଡଦାନ କରି ସାରିଲେ ମନେ କରିବ ଯେ, ନିଜର କର୍ତ୍ତବ୍ୟ ଶେଷ ହେଲା । ଆଗେ ଗୟା ଶ୍ରାଦ୍ଧ କରିବାକୁ ବହୁତ କଷ୍ଟ ପାଇ ଯାଉଥିଲେ । ଅନେକ ଦିନ ଲାଗୁଥିଲା । ଏବେ ତ ଆଉ ସେ କଥା ନାହିଁ । ଆଜି ରେଳରେ ବସିଲେ କାଲି ସେଠାରେ ପହଞ୍ଚିବ । ଖର୍ଚ୍ଚ ମଧ୍ୟ ଆଗ ପରି ବେଶୀ ନୁହେଁ । ସେଠାରେ ପନ୍ଦର ଦିନ, ତିନି ଦିନ କିମ୍ବା ଦିନେ ଶ୍ରାଦ୍ଧ କରିବାକୁ ହୁଏ । ଗୟା ତିନି ସ୍ଥାନରେ ଅଛି—ବ୍ରହ୍ମଗୟା, ନାଭିଗୟା, ଓ ପାଦଗୟା । ଗୟାରେ—ବ୍ରହ୍ମ ଗୟା, ପିଠାପୁରଠାରେ—ପାଦଗୟା ଏବଂ ଯାଜପୁରରେ—ନାଭିଗୟା । ଏ ତିନି ସ୍ଥାନରେ ପିଣ୍ଡ ଦେଇ ଶ୍ରାଦ୍ଧ କରାଯାଏ । ମୁଁ ପାଦଗୟାରେ ମଧ୍ୟ ଥରେ ଶ୍ରାଦ୍ଧ କରିଥିଲି, ଏଥର ଗୟାରେ ପିଣ୍ଡ ଦେଇ କର୍ତ୍ତବ୍ୟ ଶେଷ କଲି ।

ସ୍ତ୍ରୀ—ଆଉ ଏଣିକି କଣ ଆମ ଘରେ ଶ୍ରାଦ୍ଧ ହେବ ନାହିଁ ?

ସ୍ୱା—ଗୟାଶ୍ରାଦ୍ଧ ପରେ ଅନ୍ୟ ଶ୍ରାଦ୍ଧ ନ କଲେ ଦୋଷ ନାହିଁ ।

ତେବେ ନ କରିବ ବୋଲି କେଉଁଠାରେ ମନା ନାହିଁ । ମାତ୍ର ଲୋକଶିକ୍ଷା ସକାଶେ ଶ୍ରାଦ୍ଧ ପାଳନା କରାଯାଏ । ଯଦି ନ କରିବ ତେବେ ପିଲମାନେ ଘରେ ଶ୍ରାଦ୍ଧ ହୁଏ ନାହିଁ ବୋଲି ଅନ୍ୟ ନ କରି ପାରନ୍ତି । ଏହି ଉଦ୍ଦେଶ୍ୟରେ ଶ୍ରାଦ୍ଧ କରାଯାଏ ।

ସ୍ତ୍ରୀ—ଅଚ୍ଛା ହଉ ହେ, ଶ୍ରାଦ୍ଧଦିନ ପିଣ୍ଡ ଦେଲେ କଣ ସତରେ ପିତୃଲୋକେ ପାନ୍ତି ?

ସ୍ୱାମୀ—ହିନ୍ଦୁମାନଙ୍କର ବିଶ୍ୱାସ, ପିତୃଲୋକେ ପାନ୍ତି । ପିତୃଲୋକଙ୍କୁ ଆବାହନ କଲେ ସେମାନେ ଆସନ୍ତି କି ନା ଏ କଥା ଅବିଶ୍ୱାସ କରାଯାଇ ପାରନ୍ତା, ମାତ୍ର ବର୍ତ୍ତମାନ ସାହେବ ଲୋକେ ପ୍ରେତଙ୍କୁ ଅବାହନ କରି ତା ସଙ୍ଗେ କଥାବାର୍ତ୍ତା କରି ପାରୁଥିବାର ଦେଖାଯାଉଅଛି । ଏହା ଯଦି ସତ୍ୟ, ତେବେ ପିତୃଲୋକଙ୍କୁ ଅବାହନ କଲେ ଅସୁଛନ୍ତି ବୋଲି କାହିଁକି ଅବିଶ୍ୱାସ କରିବ ? ହିନ୍ଦୁମାନଙ୍କ ମତରେ "ଜୀବାତ୍ମା ମରେ ନାହିଁ । ସେ ଏକ ଘଟରୁ ଯାଇ ଅନ୍ୟ ଘଟ ନିଏ" ତେବେ ଶ୍ରାଦ୍ଧକୁ ଅବିଶ୍ୱାସ କରିବ କାହିଁକି ? ମନେକର ପିତୃଲୋକେ ନ ଅସନ୍ତି, ତେବେ ଶ୍ରାଦ୍ଧ କରିବା ଅବଶ୍ୟକ କଣ,ଏ କଥା ଯେବେ କେହି ପଚାରେ,ତେବେ ତାକୁ ଉତ୍ତର ଦେବାକୁ ହେବ ଯେ, ପିତୃଲୋକେ ଯେଉଁଦିନ ମରିଥିଲେ, ସେ ଦିନ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଶ୍ରାଦ୍ଧ ସହିତ ପିତୃଲୋକଙ୍କ ନାମ ସ୍ମରଣ କରିବା ଓ ସେମାନଙ୍କ ଉଦ୍ଦେଶ୍ୟରେ ପ୍ରୀତିଭୋଜନ କରାଇବାରେ କ୍ଷତି ତ କିଛି ନାହିଁ । ପିତୃଲୋକେ ଜନ୍ମଦାତା, ଈଶ୍ୱରତୁଲ୍ୟ, ସେମାନଙ୍କଠାରେ କୃତଜ୍ଞତା ପ୍ରକାଶ କରିବା, ସେମାନଙ୍କ ରକ୍ଷିତ ସମ୍ପତ୍ତି ଭୋଗ କରିବା, ସେମାନଙ୍କ ମୃତାହ ସ୍ମରଣ କରି କିଛି ବ୍ୟୟ କରିବା ଆପଣାର କର୍ତ୍ତବ୍ୟ । ଅନ୍ୟମାନେ ଅନେକ କଥା ବିଶ୍ୱାସ କରନ୍ତି ନାହିଁ, କୁସଂସ୍କାର

ବୋଲି ଉଡ଼ାଇ ଦେଉଁ, ମାତ୍ର ତହିଁ ମଧ୍ୟରେ ସତ୍ୟଥାଏ । ପୁରାଣରେ ପଢ଼ିଥିବ, ରାମଚନ୍ଦ୍ର ଗୟାରେ ଫଲ୍‌ଗୁ ନଦୀରେ ଶ୍ରାଦ୍ଧ କରୁଥିଲେ, ସୀତା ପିଣ୍ଡ ଦେବାବେଳେ ତାଙ୍କ ଶ୍ୱଶୁର ଦଶରଥ ହାତ ବଢ଼ାଇ ପିଣ୍ଡ ନେଲେ । ଶ୍ରାଦ୍ଧ ଦିନ ମନରେ ଗୋଟିଏ ପବିତ୍ର ଭାବ ଅସେ । ଅଜି ଶ୍ରାଦ୍ଧ ବୋଲି ସମସ୍ତଙ୍କ ମନରେ ଅନନ୍ଦ ଥାଏ । ପାଞ୍ଚଜଣଙ୍କୁ ଖୁଆଇ ପିଆଇ ଅନନ୍ଦ ଅନୁଭବ କରାଯାଏ । ସେବା ସେବେଇତଙ୍କର ଅଶା ଥାଏ, ସେମାନେ ମୁଠିଏ ଖାଆନ୍ତି, ଅନ୍ୟ ଦିନେ ତ ସେମାନଙ୍କୁ ଦିଆଯାଏ ନାହିଁ । ଶ୍ରାଦ୍ଧ ଦିନ ବୋଲି କିଛି ଦାନ ଧର୍ମ କରାଯାଏ, ସାଇ ପଡ଼ିଶାରେ ଦିଅ ନିଅ ହୁଏ, ବ୍ରାହ୍ମଣଙ୍କୁ ଭୋଜନ ଦିଆଯାଏ, ଏହିପରି ନାନା ପ୍ରକାର ଅନନ୍ଦ ଉତ୍ସବରେ ଦିନ ଯାଏ ।

ସ୍ତ୍ରୀ—ବ୍ରାହ୍ମଣଙ୍କୁ କାହିଁକି ଭୋଜନ ଦିଆଯାଏ ? କେତେ ଜଣ ବ୍ରାହ୍ମଣ ଭୋଜନ କରାଇବ,—ଏପରି କଣ ବାଧ୍ୟ ଅଛି ?

ସ୍ୱାମୀ—ମନୁ ପ୍ରଭୃତି ଶାସ୍ତ୍ରକାରମାନେ କହୁଛନ୍ତି, ଶ୍ରାଦ୍ଧଦିନ ଜଣେ ବ୍ରାହ୍ମଣ ମିଳିଲେ ମହାଭାଗ୍ୟର କଥା; ଜଣେ ବ୍ରାହ୍ମଣ ଭୋଜନ କରାଇଲେ ଯଥେଷ୍ଟ । ବ୍ରାହ୍ମଣ ସାକ୍ଷାତ ନାରାୟଣ ସ୍ୱରୂପ । ଜଣେ ସେପରି ବ୍ରାହ୍ମଣ ମିଳିବା ତ କଷ୍ଟ ।

ସ୍ତ୍ରୀ—ବ୍ରାହ୍ମଣ କଣ ଅଭାବ ଅଛି ? ଅମ ଗ୍ରାମ ଶାସନରେ ତ କେତେ ବ୍ରାହ୍ମଣ ଅଛନ୍ତି ? ପୁରୀରେ ତ ଯେତେ ଜଣ ଲୋଡ଼ା ସେତେ ଜଣ ବ୍ରାହ୍ମଣ ମିଳିବେ ?

ସ୍ୱାମୀ—ଅହେ, ସେପରି ବ୍ରାହ୍ମଣଙ୍କୁ ବ୍ରାହ୍ମଣ କୁହାଯାଏ ନାହିଁ । ବ୍ରାହ୍ମଣ ପୁଅ ବ୍ରାହ୍ମଣ ଅନେକ ଅଛନ୍ତି, ମାତ୍ର ପ୍ରକୃତ ବ୍ରହ୍ମଜ୍ଞାନୀ ବ୍ରାହ୍ମଣ କାହିଁ ? ବଶିଷ୍ଠ, ଦଧିଚୀ ପ୍ରଭୃତିଙ୍କପରି ବ୍ରାହ୍ମଣ କାହିଁ ? ଅଜି

କାଲି ଯେଉଁମାନେ ପଇତା ପକାଇ ବ୍ରାହ୍ମଣ ବୋଲାଉଛନ୍ତି, ସେମାନେ ତ ବେଦର ବ ଅକ୍ଷର ଜାଣନ୍ତି ନାହିଁ, ସନ୍ଧ୍ୟା ଗାୟତ୍ରୀ କଣ ଜାଣନ୍ତି ନାହିଁ, ଅଧିକ ବ୍ୟବହାର ଶୂଦ୍ରଠାରୁ ଅଧିକ ଖରାପ, ସେମାନଙ୍କୁ କଣ ପ୍ରକୃତ ବ୍ରାହ୍ମଣ କୁହାଯିବ ? ଯେଉଁମାନେ ସାଧନାଦ୍ୱାରା ବ୍ରହ୍ମଜ୍ଞାନ ଲଭ କରିଛନ୍ତି, ସେମାନେ ପ୍ରକୃତ ବ୍ରାହ୍ମଣ । କିଏ ଅଛି, ଶ୍ରାଦ୍ଧର ଦୁଇ ତିନି ଦିନ ଆଗରୁ ବ୍ରାହ୍ମଣ ଅନୁସନ୍ଧାନ କରିବ, ଠିକଣା କରିବ, ଶ୍ରାଦ୍ଧ ପୂର୍ବଦିନ ତାଙ୍କୁ ଯାଇ ବିଧିପୂର୍ବକ ନିମନ୍ତ୍ରଣ କରିବ । ସେ ଶ୍ରାଦ୍ଧ ଦିନ ଅଭୋଜନରେ ଥାଇ ଆସିବେ, ଶ୍ରାଦ୍ଧ ଶେଷରେ ଭୋଜନ କରି ଦକ୍ଷିଣା ନେବେ । ଏ ଶ୍ରେଣୀର ଜଣେ ବ୍ରାହ୍ମଣ ପାଇ ପାରିଲେ ମହାଭାଗ୍ୟ ।

ସ୍ତ୍ରୀ—ବ୍ରାହ୍ମଜ୍ଞାନ କଣ ?

ସ୍ୱାମୀ—ଅହେ, ବ୍ରହ୍ମଜ୍ଞାନ କଣ ଏ କଥା କଣ ତମକୁ ବୁଝାଇବି ? ଦେଖ ଯେ, ତୁମଠାରେ ଯେପରି ଜୀବ ବ୍ରହ୍ମ ଅଛି, ମୋଠାରେ ସେହିପରି ଜୀବ ବ୍ରହ୍ମ ଅଛି, କୁକୁରଠାରେ ସେହି ଜୀବ ବ୍ରହ୍ମ ଅଛି, ହାତୀଠାରେ ସେହି ଜୀବ ବ୍ରହ୍ମ ଅଛି, ଚଣ୍ଡାଳଠାରେ ସେହି ଜୀବ ବ୍ରହ୍ମ ଅଛି । ସକଳ ପ୍ରାଣୀଠାରେ ଏକ ଜୀବ ବ୍ରହ୍ମ ଅଛନ୍ତି । ଯାହାର ଏପରି ଜ୍ଞାନ ହେବାରୁ ସେ ସମସ୍ତଙ୍କୁ ସମାନ ଭାବରେ ଦେଖେ; ତୋର ମୋର କୌଣସି ଭେଦଭାବ ରଖେ ନାହିଁ, ବ୍ରାହ୍ମଣ ଚଣ୍ଡାଳ ଭେଦଭାବ ରଖେ ନାହିଁ, ସମସ୍ତଙ୍କୁ ମୋର ବୋଲି ମନେ କରେ, ସମସ୍ତଙ୍କ ସୁଖଦୁଃଖକୁ ଅପଣାର ସୁଖଦୁଃଖ ବୋଲି ଭାବେ, ସେ ପ୍ରକୃତରେ ବ୍ରାହ୍ମଣ । କେବଳ ଜ୍ଞାନ ବଳରେ ବ୍ରାହ୍ମଣ ହୁଏ, ଜାତି ବା ଜନ୍ମବଳରେ ବ୍ରାହ୍ମଣ ହୁଏ ନାହିଁ । ଯାହାର ଏପରି ବ୍ରହ୍ମଜ୍ଞାନ ହୁଏ ସେ ଈଶ୍ୱରତୁଲ୍ୟ,

ଭଗବାନ ତାଠାରେ ନତମସ୍ତକ । ଶୁଣିଥିବ ଶ୍ରୀବତ୍ସ ଏହିପରି ଜଣେ ବ୍ରାହ୍ମଣ ଥିଲେ । ସେ ଥରେ ଭଗବାନଙ୍କୁ ସାକ୍ଷାତ କରିବାକୁ ଗଲେ । ଦେଖିଲେ, ଭଗବାନ ଶତ୍ ହୋଇ ଶୋଇ-ଛନ୍ତି । ଶ୍ରୀବତ୍ସ ଅନେକ ସମୟ ଠିଆ ହେଲେ, ଭଗବାନ ଉଠିଲେ ନାହିଁ । ଶ୍ରୀବତ୍ସ କ୍ରୋଧରେ ତାଙ୍କ ଛାତିକୁ ଗୋଇଠାଏ ପକା-ଇଲେ । ଭଗବାନଙ୍କର ନିଦ୍ରାଭଙ୍ଗ ହେଲା, ଦେଖନ୍ତି ଆଗରେ ଶ୍ରୀବତ୍ସ ! ଭଗବାନ ଶ୍ରୀବତ୍ସଙ୍କ ପାଦ ଧରି ଆଉଁଷି ଦେଇ କହିଲେ, "ଆପଣଙ୍କ ପାଦକୁ କଷ୍ଟ ହୋଇଥିବ ।" ଭଗବାନ ସେହି ପାଦଚିହ୍ନ ହୃଦୟରେ ଧାରଣ କରି ଶ୍ରୀବତ୍ସଲାଞ୍ଛନ ବୋଲାଇଲେ । ଯୁଧିଷ୍ଠିରଙ୍କ ରାଜସୂୟଯଜ୍ଞ ବେଳେ ଭଗବାନ ଶ୍ରୀକୃଷ୍ଣ ବ୍ରାହ୍ମଣ-ପଦଧୌତ କରିଥିଲେ । ବ୍ରହ୍ମର ମହତ୍ତ୍ୱ ଏତେ ଅଧିକ ।

ସ୍ତ୍ରୀ—ଆଜି କାଲି ସେପରି ବ୍ରାହ୍ମଣ କଣ ନାହାନ୍ତି ?

ସ୍ୱା—ଥାଇ ପାରନ୍ତି କୋଟିକେ ଗୋଟିଏ । ଆଜିକାଲି ବ୍ରାହ୍ମଣମାନେ ତ ସେପରି ଜ୍ଞାନୀ ହେଉ ନାହାନ୍ତି । ନିଜ ଧର୍ମ କର୍ମ କରୁ ନାହାନ୍ତି । ସେମାନେ ଜ୍ଞାନ ବଳରେ ଊଣା ହୋଇ ଯିବାରୁ ସେମାନଙ୍କଠାରୁ ଜ୍ଞାନଶ୍ରେଷ୍ଠ ଅନ୍ୟ ବର୍ଣ୍ଣର ଲୋକଙ୍କୁ ଦେଖିଲେ ନମସ୍କାର କରି ପକାଉଛନ୍ତି । ଜ୍ଞାନ ବଳରେ ଅନ୍ୟ ବର୍ଣ୍ଣର ଲୋକ ତ ବ୍ରାହ୍ମଣ ବୋଲାଉଥିଲା, ଯଥା ବିଶ୍ୱାମିତ୍ର କ୍ଷତ୍ରିୟ ।

ସ୍ତ୍ରୀ—ଆଜିକାଲି ତ ଅନେକ ବ୍ରାହ୍ମଣ ପିଲା ଇଂରାଜୀ ପଢ଼ୁଛନ୍ତି, ଅନେକ ବଡ଼ ବଡ଼ ପାସ୍ଥା ଗ୍ରହଣ କରି ପାଉଛନ୍ତି, ସେମାନଙ୍କର ବ୍ରହ୍ମଜ୍ଞାନ ହେଉ ନାହିଁ କାହିଁକି ?

ସ୍ୱା—ଗ୍ରହଣ କଲେ କଣ ବ୍ରହ୍ମଜ୍ଞାନ ହୋଇଯିବ ? ଗ୍ରହଣ କଲେ ତ ଲୋକ ଜ୍ଞାନ ବିବେକନୀ ହୋଇଯିବ । ଯାହାର ଗ୍ରହଣ

କରିବ, ସେ ଯେପରି ନଚାଇବ ସେପରି ନାଚିବ । ଯେ ଚାକିରି କରେ ସେତ ଅର୍ଥର ଦାସ ହୋଇ ପଡ଼େ । ଅର୍ଥ ଦେବା ଲୋକ ଯେପରି ଇଚ୍ଛାକରେ ଚାକର ସେହିପରି କାମ କରେ । ଇଂରେଜି ପାଠରେ ତ ସେପରି ଜ୍ଞାନଲାଭ ଉଦେଶ୍ୟ ନାହିଁ । ସରକାରୀ ଚାକିରି କରିବାକୁ ଯେପରି ଜ୍ଞାନ ହେବା ଅବଶ୍ୟକ, ସେହିପରି ଶିକ୍ଷା ଦିଆଯାଏ । ସେଥିରେ ବ୍ରହ୍ମଜ୍ଞାନ ହେବ କିପରି ? ଭୀଷ୍ମଙ୍କ ଭଳି ଜ୍ଞାନୀ ଲୋକ, ସେ ମଧ୍ୟ କହିଲେ "ମୁଁ ଦୁର୍ଯୋଧନ ଘରେ ଅଛି, ତା ଅନ୍ନରେ ପ୍ରତିପାଳିତ, ମୁଁ ଜାଣିଛି ଦୁର୍ଯୋଧନ ପକ୍ଷରେ ନ୍ୟାୟ୍ୟ ଧର୍ମ ନାହିଁ, ଅର୍ଜ୍ଜୁନ ପକ୍ଷରେ ଧର୍ମ ଅଛି, ଉଭୟ ପକ୍ଷ ମୋର ସମାନ ଅତ୍ମୀୟ, ତଥାପି ଦୁର୍ଯୋଧନ ମତେ ଅର୍ଥ ଦେଉଛି ଏବଂ ମୁଁ ତାର ଅନ୍ନ ଖାଉଛି, ତା ପକ୍ଷ ଛାଡ଼ି ଯାଇ ପାରିବି ନାହିଁ ।" ସେ ତ ଏପରି କହିଲେ, ଅଉ କାହା କଥା କିଏ କହିବ ?

———:———

## ସପ୍ତଦଶ ପରିଚ୍ଛେଦ

ସ୍ତ୍ରୀ—ତମେ କି ଗୀତ ଗାଉଥିଲ ଟିକିଏ ଗାଇଲ ?

ସ୍ୱାମୀ—ସେ ଗୋଟାଏ ସଙ୍ଗୀତ । ସଙ୍ଗୀତ ବିଦ୍ୟା ବଡ଼ ଭଲ ବିଦ୍ୟା । ସଙ୍ଗୀତ ଯେପରି ପ୍ରାଣକୁ ତରଳାଇ ଦିଏ, ଅନ୍ୟ କିଛି ସେପରି କରିପାରେ ନାହିଁ । ତମେ ଟିକିଏ ସଙ୍ଗୀତ ଗାଇ ଶିଖୁ ନାହଁ ?

ସ୍ତ୍ରୀ—ମୁଁ ମାଇପିଟା କିଣ ଗୀତ ଶିଖିବି ମ ?

ସ୍ୱାମୀ—ଗୀତ ଗାଇବା ପାଇଁ ସ୍ତ୍ରୀ ପୁରୁଷ କିଣ ଅଛି ମ ? ସ୍ତ୍ରୀ ଲୋକେ ତ ଭଲ ଗାଇ ପାରିବେ, ସେମାନଙ୍କ ଗଳା ଭଲ । ଗଳା

ଯେଉଁମାନଙ୍କର ଭଲ, ସେମାନେ ଗାଇଲେ ଭଲ ଶୁଣାଯାଏ। କଥା ଅଛି ପରା "ଗଳାରକ୍ତଂ ଗାୟକଂ।" ସରସ୍ୱତୀ ତ ସ୍ତ୍ରୀ ଲୋକ। ତାଙ୍କ ହାତରେ ସର୍ବଦା ବୀଣା ଥାଏ। ସେ ଭଲ ଗାଇ ପାରନ୍ତି। ସେ ଗୀତ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ। ସରସ୍ୱତୀଙ୍କି ଭାରତୀ ବୋଲି କହନ୍ତି। ସେଥିପାଇଁ କହନ୍ତି "ଭାରତୀ କଣ୍ଠଦେଶେ," ଅର୍ଥାତ୍ ଭାରତୀ ଯାହା କଣ୍ଠରେ ବାସ ନ କରିବେ, ତାଙ୍କୁ ଗାଇ ଆସିବ ନାହିଁ। କାଳିଦାସେ ସରସ୍ୱତୀଙ୍କ ଠାରୁ ବର ପାଇ ବଡ଼ କବି ହୋଇଥିଲେ। ଗାଇବା ବଜାଇବାକୁ ଗାନ୍ଧର୍ବ ବିଦ୍ୟା କହନ୍ତି। ଅତଏବ ଅମରର ମାଇପେ ଭଲ ଗୀତ ଗାଉଥିଲେ। ଗୀତ ଶୁଣିଲେ ଭଗବାନ ମଧ୍ୟ ସନ୍ତୁଷ୍ଟ ହୁଅନ୍ତି। ସେହିହେତୁ ଭଗବାନଙ୍କ ଭଜନ, କୀର୍ତ୍ତନ, ସ୍ତୁତି ପ୍ରଭୃତି ଗୀତରେ ନାନା ରାଗ ରାଗିଣୀ ଛନ୍ଦରେ ବୋଲାଯାଏ। ଏବେ ବାଳିକାସ୍କୁଲ ମାନଙ୍କରେ ଟିକିଏ ଗୀତ ଗାଇବା ଶିକ୍ଷା ଦିଆଯାଉଛି। କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କର ଗାଇ ଜାଣିବା ଆବଶ୍ୟକ।

ସ୍ତ୍ରୀ—ମରଦମାନେ ଗୀତ ଗାଇ ଶିଖିଲେ ଦାଣ୍ଡରେ ବୋଲିବେ। ଆମେ ଶିଖିକରି କଣ କରିବୁଁ ?

ସ୍ତ୍ରୀ—ମାଇପେ ଆପଣା ଭିତରେ ବସି ବୋଲିବାରେ କଣ ଦୋଷ ଅଛି ? ମନ ଦୁଃଖବେଳେ ଗୀତ ଗାଇଲେ ଦୁଃଖ ହରଣ ହୋଇଯାଏ। ଝିଅ ଗୀତ ଗାଇଲେ ମା ଶୁଣିବ, ବୋହୂ ଗୀତ ଗାଇଲେ ଶାଶୁ ଶୁଣିବ। ବିଦ୍ୟା ଥିଲେ, ଗୁଣ ଥିଲେ କଣ ପାଣିରେ ପଡ଼ିବ ? ଝିଅମାନଙ୍କୁ ଟିକିଏ ଶିକ୍ଷା ଦେବା ଉଚିତ।

ସ୍ତ୍ରୀ—ଓଡ଼ିଆରେ କି ଗୀତ ପୋଥି ଅଛି ମା?

ସ୍ଵା—ଅନେକ ପ୍ରକାର ଗୀତ ଅଛି, ଯଥା—କୀର୍ତ୍ତନ, ଭଜନ, ସ୍ତୁତି, ସଙ୍ଗୀତ, ଗୀତ, ପ୍ରବଣ, ଭାଗବତ, ଛାନ୍ଦ ଇତ୍ୟାଦି । ନାନାରସର ଗୀତ ଅଛି, ଯଥା—ବୀରରସ, କରୁଣ ରସ, ଅଦ୍ଭୁତରସ, ହାସ୍ୟ ରସ ଇତ୍ୟାଦି । ନାନା ରାଗରାଗିଣୀ ଅଛି । ଛ ରାଗ ଛତିଶ ରାଗିଣୀ । କେତେଟା ଗୀତର ଦୃଷ୍ଟାନ୍ତ ଦେବା ଦେଖ :—

(୧) ଜାଗିବ ନାହିଁ କି ମା ଗୋ ଭାରତ-ରମଣି,
ଡାକୁଛନ୍ତି ଉଚ୍ଚସ୍ୱରେ ଭାରତ-ଜନନୀ । ଧ୍ରୁ ।
ଜାଗ ଜାଗ ଲାଗ କର୍ମେ ହୁଅ ସୁଗୃହିଣୀ ।
ବୀର-ଜାୟା ବୀର-କନ୍ୟା ବୀର-ପ୍ରସବିନୀ । ୧ ।
ପୋଛିଦିଅ ଭାରତର ବିଷାଦ କାହାଣୀ ।
ହସି ଉଠୁ ଏ ଭାରତ ପର୍ବଶେଷ ଦେଖି । ୨ ।
ଜାଗି ଉଠିଲେଣି ଆଜି ଜଗତ ରମଣୀ ।
କେତେ କାଳ ପଡ଼ିଥିବ ହୋଇ କଳଙ୍କିନୀ । ୩ ।
ଥିଲ କାଳେ ଗୃହଲକ୍ଷ୍ମୀ ଜ୍ଞାନ ଗରବିଣୀ ।
ଜାଗି ଉଠ ଦେଖାଇବ ପୂର୍ବ ଯଶଶ୍ରେଣୀ । ୪ ।

---

(୨) ବାଜ ମୋ ବଂଶୀ        ମୋହନ ବଂଶୀ
ପ୍ରାଣ ପରଶି ବାଜ ମୋ ବଂଶୀ । ଧ୍ରୁ ।
ବାଜି ସଘନେ        ପଞ୍ଚମ ତାନେ
ଉଠୁ ସକଳ ହୃଦ ଉଲ୍ଲସି,
ଏକତା-ନରେ        ଏକ ତାନରେ
ଶିଖାଅ ମନ୍ତ୍ରର ଉଚ୍ଚେ ଘୋଷି । ୧ ।

ଶୁଣି ତୋ ସ୍ୱନ ଏ ବିଶ୍ୱଜନ
ଆନନ୍ଦ ମନରେ ହସି ହସି;
ମନ ମତ୍ତାଇ ବାଜିବୁ ତୁହି
ପ୍ରେମ-ସ୍ରୋତେ ବିଶ୍ୱ ଯାଉ ଭାସି । ୨ ।
ବିଶ୍ୱମୋହନ ବଂଶୀ କବଣ
ଜାଣେ ନ ସ୍ୱନ ଟିଣାମିଣି,
ପ୍ରେମ ରସାଣ ରସାଇ ମନ
ବାଜ ପ୍ରେମେ ନାଚ ଜଗତ୍‌ ଶଶୀ । ୩ ।
ସାରା ଜଗତ ପ୍ରେମେ ଉନ୍ମତ୍ତ
ପ୍ରେମସ୍ରୋତ ବହୁ ଦିଶି ଦିଶି,
ରାଧା ନାମରେ ବାଜ ତୁ ଥରେ
ପ୍ରିୟତମ ମୋ ମୋହନବଂଶୀ । ୪ ।
ସକଳ ପ୍ରାଣୀ ଶୁଣି ତୋ ଧ୍ୱନି
ଦେଉ-ଅଞ୍ଜନ ଅନ୍ଧାର ନାଶି ।
ଏକ ମନରେ ଏକ ପ୍ରାଣରେ
ଗାଉ ବନ୍ଧୁ ଗୀତ ବିଶ୍ୱବାସୀ । ୫ ।
ବାଜ ତୁ ବଂଶୀ କୁଳ ନାଶିନୀ
ମୋହନ-ମନ୍ତ୍ରରେ ଆକର୍ଷି,
ବାଜ ତୁ ବାଜ, ପ୍ରେମରେ ଆଜ
ଧାନ ଜଗତ୍‌ ରସେ ଭାସି । ୬ ।

---

(୩) ପ୍ରିୟସଖୀ ! କହ ପ୍ରେମ କି ରତନ ଗୋ ।
କମ୍ପା ଦେଖି ଶଶୀ ଉଛୁଳେ ସରସୀ ଇନ୍ଦୀବର ସୁପ୍ରସନ୍ନ ଗୋ ।୦।

ପରଚଣ୍ଡ ମାର୍ତ୍ତଣ୍ଡ କିରଣରେ ତାପିତ ଧରଣୀ ଗୋ ।
ପ୍ରଫୁଲ୍ଲ ଅନ୍ତରେ ଅତି ଆନନ୍ଦରେ ଖେଳେ ପୁଷ୍ପି କମଳିନୀ ଗୋ ।୧।
ଜଳନ୍ତା ଅନଳ ଅତି ଭୟଙ୍କର ହାତ ଦେଲେ ଯାଏ ପୋଡ଼ି ଗୋ ।
ସେ ଅନଳ ଦେଖି ପରାଣ ଉପେକ୍ଷି ପତଙ୍ଗ ଯାଏ ତ ପଡ଼ି ଗୋ ।୨।
ଜଗବନ୍ଧୁ ଭଣି କିଛି ନୁହେ ଜାଣି ଏଥିର କିସ କାରଣ ଗୋ ।
ପ୍ରେମିକ ପ୍ରେମିକା ଜାଣିଛନ୍ତି ଏକା ପ୍ରେମର କି ଭାବ ଗୁଣ ଗୋ ।୩।

---

### (୪) ରାଗ—ଭାଟିଆର—ଏକତାଳୀ

ମୋ ଜନମ-ଭୂମି; ଏ ଭାରତ ପରି ଦେଶ ନାହିଁ କାହିଁ । ଧ୍ରୁ ।
ପାଦ ଧୂଏ ଯାର ମହୋଦଧି ଶିରେ ହିମାଚଳ ଅଭ୍ରଭେଦୀ
ବକ୍ଷ ଦେଶେ ଭେଦି କେତେ ନଦ ନଦୀ ସୁଧାଧାର ଦେଇଯାଏ ବହି ।୧।
ଧନ ଧାନ୍ୟ ପୁଷ୍ପ ଫଳେ ଭରା, ସୁବର୍ଣ୍ଣ ପ୍ରସବେ ଏହି ଧରା
ଗରଭେ ଯାହାର ଅଛି ରତ୍ନସାର ଶୋଭାସମ୍ପତ୍ତି ସାର ସାର ଏହି ।୨।
ଷଡ଼ଋତୁ ଖଟେ ପଦେ ଯାର, ଋତୁରାଜ ଚିର ଖେଳ ସ୍ଥଳ
ନିବିଡ଼ ନିକୁଞ୍ଜ ବନେ ପକ୍ଷିପୁଞ୍ଜ ପୂଜନ୍ତି ମଙ୍ଗଳ ଗୀତ ଗାଇ ।୩।
ଶ୍ୟାମଳ କେଦାର ଶୋଭା ଅତି, ରବି ଶଶି ବୁଡ଼ି ଉଠେ ନିତି
ପୁଷ୍ପକୁଞ୍ଜେ ଅଳି ଗୁଞ୍ଜରବ କରି ମୋଦେ ନିଦ୍ରାଯାଏ ମଧୁ ପିଇ ।୪।
ଶ୍ୟାମଳ କୋମଳ ଶସ୍ୟପଟେ, ପବନ ତରଙ୍ଗ-ରଙ୍ଗେ ଖେଳେ
ଆକାଶେ ମିଶିଲା ପରି ଦିଶିଯାଏ ଅଳପ ଦୂରରୁ ଦେଲେ ଚାହିଁ ।୫।
ଏକ ଘରେ ଭାଇ ଭାଇ ମିଳି, ଏ ଦେଶେ ଥାଆନ୍ତି ନ କରି କଳି
କେଉଁ ଦେଶେ କେହି ନ ଥାଆନ୍ତି ଏଭଳି ମାତା ଭ୍ରାତୃସ୍ନେହ ବଳି ନାହିଁ ।
ଧନ ଜନ ମନ ମାନ ପ୍ରାଣ, ସତ୍ୟ ଆଗେ ସବୁ ତୃଣ ସମ
ଗଲେ ସବୁ ଯିବ ସତ୍ୟ ରକ୍ଷା ହେବ ଏ ନୀତି ଏ ଦେଶେ ଥିଲା ରହି ।୭।
ଏମନ୍ତ ସୁନ୍ଦର ସାରଦେଶ, ମହାଲକ୍ଷ୍ମୀଙ୍କର ଚିରବାସ
ନାନାରୂପେ ହରି ଏଥି ଅବତରି ଦୁଷ୍ଟଜନ ନାଶି ପାଳେ ମହୀ ।୮।

ଅନ୍ନପୂର୍ଣ୍ଣା ଭୂମି ମା ଭାରତ ତେଣୁତ୍ତ ଅନ୍ନ ନିତ୍ୟ ନିତ୍ୟ
କିଅନ୍ତୁ ଯେ ଯେତେ ଦିଅନ୍ତୁ ସେ ତେତେ ନିର୍ଗଣବଚନ ନ କହନ୍ତି ।୯।
ମା ଭାରତ ଦେବଭୂମି ଭୂମି ତବ ଶ୍ରୀ ଚରଣେ ନମି ନମି
ଏ ଦେଶେ ଜନମ ଏ ଦେଶେ ମରଣ ଦିଅ ମାତ ଏହି ବର ଚ୍ଛିହ ।୧୦।

———

(୫) ଉଠ ଗୋ ଉଠ ଗୋ ଭାରତ-ରମଣି
କେତେକାଳ ଅଜ ଶୋଇବ ଶେଯେ ?
ନୟନ ମେଲିଭ ଗୃହ ତେଜା ପାଇ
ପ୍ରତ୍ୟୁଷ ଗଗନେ ରବି ବିରାଜେ । ୧ ।
ସୀତା ଦମୟନ୍ତୀ ପାର୍ବତୀ ସାବିତ୍ରୀ
ଲୀଳାବତୀ ଖନା ଏ ଦେଶ ନାରୀ,
ସେହି ବଂଶେ ଜାତ ସେ ଦେଶେ ପାଳିତ
ସେହି ରକ୍ତରେ ଏ ଶରୀର ଭାରି । ୨ ।
ତବ ହେଳାରୁ ଏ ଭାରତ ସନ୍ତାନ
ନିର୍ବୀର୍ଯ୍ୟ ହେଲେଣି ସବୁଠୁଁ ହୀନ ;
ସବୁଠାରେ ପାଉଛନ୍ତି ଅପମାନ
ହା ଅନ୍ନ ଶତ୍ରୁରେ କାଟନ୍ତି ଦିନ । ୩ ।
ଗୁଣିଲେ ଅରଣ୍ଟ ପଢ଼ି ନାନା ପାଠ
ଉଲଗ୍ନ ହେଲେଣି ସକଳ ଜନ ;
ପରଦ୍ରବ୍ୟ ଆଣି ନିଜ ବୋଲି ମଣି
କରୁଅଛ କେତେ ବୃଥା ଗର୍ଜନ । ୪ ।

———

ସ୍ତ୍ରୀ—ଗୀତଗୁଡ଼ିକ ଶୁଣିବାକୁ ଭଲ ଲାଗୁଛି । ଆଉ ଗୋଟିଏ ଗୀତ ବୋଲନ୍ତୁ !

ସ୍ୱା—କି ଗୀତ ଗାଇବି କହ ଗୋ ସଜନି ଗୀତ ଆଉ ଦିଶୁ ନାହିଁ,
କେଉଁ ପାପ ଫଳୁ କହ ଏ ଉତ୍କଳୁ ବୀଣାପାଣି ଗଲେ ବାହାରି ।
ନାହିଁ ମନେ ଆଜ ପୂରୁବ ଫଳଶା, ନ ଶୁଭେ ଉତ୍କଳେ ସେ ପ୍ରାଚୀନ ବାଣୀ ।
ନାହିଁ କି ଉତ୍କଳେ ବିଭୁଙ୍କ କରୁଣା, କିଛି ଜଣା ଯାଉ ନାହିଁ । ୧ ।
ଜୀର୍ଣ୍ଣ ଶୀର୍ଣ୍ଣ କିମ୍ବା ତୋ ସନ୍ତାନ ଗଣ, କାର ମୁଖେ ନାହିଁ ଶାନ୍ତି ସୁଖ ଚିହ୍ନ
ସତତ ବିକଳ ହା ଅନ୍ନ ହା ଅନ୍ନ, ଶବଦ ବଦନେ ଗୁହିଁ । ୨ ।
ଲୋପ ହେଲା ଅସି ସକଳ ଶକତି, ଲୋପ ହୋଇଲାଣି ସବୁ ବୁଦ୍ଧି ବୃତ୍ତି ।
ଜନନୀ ପରାଏ ଭୁଞ୍ଜି ଦୈନ୍ୟଯନ୍ତ୍ର, କାହାକୁ କିଛି ନ କହି । ୩ ।
ଛାଡ଼ିଦେଲ ଚଷା ଭାଙ୍ଗି କପାବୃକ୍ଷ, ଅରଟ ଭଙ୍ଗାଇ ସମୂଳେ ବିନାଶ ।
ତନ୍ତୀଭାଇ ବଂଶ ହୋଇଗଲା ନାଶ, ପିନ୍ଧିବା ବସନ ନାହିଁ । ୪ ।
ବେପାର ବଣିଜ ଦେଶୁଁ ପଳାଇଲା, ଅମୀର ଉତ୍କଳ ଫକୀର ହୋଇଲା ।
ଦେଶଜାତ ଦ୍ରବ୍ୟ ଦେଶେ ନ ରହିଲା, ବଞ୍ଚିବା ଉପାୟ ନାହିଁ । ୫ ।
ବିପଣୀରେ ଦ୍ରବ୍ୟ ହଜାର ହଜାର, ଅତ୍ୟନ୍ତ ସୁନ୍ଦର ଅତି ମନୋହର ।
ପଡ଼ିଗଲେ ନେତ୍ର ଫେରିବା ଦୁଷ୍କର, କରଜ କରି କିଣଇ । ୬ ।
ଭାରତ ସନ୍ତାନ ନୋହି କର୍ମଯୋଗୀ, ଅକର୍ମଯୋଗ ଫଳେ ମହାରୋଗୀ
ବିଜାତୀୟେ ଧନ ଦେଇ ବଇରାଗୀ, ବୁଝି ଏହା ନ ବୁଝଇ । ୭ ।
ଏ କର୍ମ-ଜଗତେ କର୍ମବଳ ଏକା, ଭବ ସିନ୍ଧୁ ସନ୍ତରଣେ ନାଉକା ।
କରମ ବିହୁନେ ହୋଇ ସର୍ବେ ବୋକା, ବୁଝି ବାଟ ନ ଦିଶଇ । ୮ ।
ଶିଖାଅ ସନ୍ତାନ ହୁଅନ୍ତୁ ସବଳ, କର୍ମଯୋଗେ ଚିତ୍ତ କରନ୍ତୁ ନିଶ୍ଚଳ ।
ଦଳି ଦିଅନ୍ତୁ ସେ ଅଳସ ପାତାଳ, ଯାଉ ତା ପିଠ ପଳାଇ । ୯ ।
ହୋଇ କର୍ମବୀର କର୍ମସେବେ ପଶି, ଦିଅନ୍ତୁ ଅଜ୍ଞାନ ତମସ ବିନାଶି ।
ଉଦିତ ହୋଇବ ପୁଣି ସୁଖ-ଶଶୀ, ଆନନ୍ଦେ ହସିବ ଗୁହିଁ । ୧୦ ।

ବାନ୍ଧ ହେ ସାହସ ନ ହୁଅ ନିରାଶ, ଅଚିରେ ପଳାଇଯିବ ଏ ପରାସ୍ତ ।
ଅସ ଅସ ବେଗେ କର୍ମକ୍ଷେତ୍ରେ ପଶ, ମଙ୍ଗଳଭେରୀ ବଜାଇ । ୧୧ ।

---

## ଅଷ୍ଟାଦଶ ପରିଚ୍ଛେଦ

ସ୍ତ୍ରୀ—ତମେ କଣ ବାବୁଙ୍କ ଯାଉଛ କି ? ଯାଅ ନାହିଁ, ଯାଅ ନାହିଁ, ସେ ପଟେ ମେହେନ୍ତରାଣୀ ଅଛି ।

ସ୍ୱା—ମେହେନ୍ତରାଣୀ ଅଛି ତ ଅଛି, ମୁଁ ଗଲେ ଦୋଷ କଣ ? ସେ ମାଇପି ଲୋକ, ମତେ ଦେଖିଲେ ତା ବାଟରେ ସେ ଘୁଞ୍ଚିଯିବ ।

ସ୍ତ୍ରୀ—ଅ, କି କଥା କହୁଛ ମ ! ତା ଛାଇ ପଡ଼ି ଯାଇପାରେ । ଆଜି ଥରେ କଣ ଗାଧୋଇବ ?

ସ୍ୱା—ମଣିଷ ଛାଇଟା ମଣିଷ ଉପରେ ପଡ଼ିଗଲେ ଆଉ ଥରେ ଗାଧୋଇବା କାହିଁକି ମ ?

ସ୍ତ୍ରୀ—ସେଇଟା ଯେ ଚଣ୍ଡାଳ, ତାକୁ ଛୁଇଁ ପୋଗାଏ ନାହିଁ । ସେ ନର୍କ କାଢ଼ୁଛି, ମୁଣ୍ଡରେ ମୁଣ୍ଡାଇ ନେଉଛି । ତା ଛାଇ ଉପରେ ପଡ଼ିଗଲେ ଛୁଆଁ ହେବ ନାହିଁ ?

ସ୍ୱା—ସେଇଟା ମଣିଷ କି ନାହିଁ ଆଗେ କହିଲ ?

ସ୍ତ୍ରୀ—ହେଉ ମଣିଷ, ମାନି ମଣିଷରେ ମଣିଷ ତ ଅଛନ୍ତି । ବିଧାତା ପାହାଚ ପାହାଚ କରିଛନ୍ତି କାହିଁକି ?

ସ୍ୱା—ବିଧାତା କଣ କହିଛନ୍ତି, ମଣିଷକୁ ମଣିଷ ଛୁଇଁବ ନାହିଁ । ଏପରି କେଉଁ ଶାସ୍ତ୍ରରେ ଲେଖା ଅଛି କହିଲ ?

ସ୍ତ୍ରୀ—ସବୁ ମଣିଷ ତେବେ କଣ ସମାନ; ଆଉ ପାପାପାପ ବିଚାର କିଛି ନାହିଁ ? ତେବେ ସେ କଣ ଆସି ଆମ ସଙ୍ଗେ ସରିସା

ହୋଇ 'ବସିବ ? ତା ସଙ୍ଗରେ ବସି ତେବେ ଆମେ କଣ ଖାଇବା ? ତା ଘରେ କଣ ଆମ ପୁଅ ଝିଅଙ୍କ ବବାହ ଦେବା ?

ସ୍ବା—ଅହେ, ବିବାହ ଦେବା, ଖାଇବା ପିଇବା କଥା ଅଲଗା, ମଣିଷକୁ ମଣିଷ ଛୁଇଁ ପକାଇଲେ ଛୁଆଁ ହେବା କଥା ଅଲଗା । ଦେଖ, ମେହେନ୍ତର ଯେଉଁ କାମ କରୁଛି, ତାହା ଦେଖି ତୁମେ ନାକ ଟେକୁଛ, ମାତ୍ର ତୁମ ବସ୍ତା ସେ ଅନନ୍ଦରେ ମୁଣ୍ଡରେ ବୋହିନେଇ ଯାଉଛି । ମେହେନ୍ତର ସେ କାମ ନ କଲେ ତୁମେ ନିଜେ ସେ କାମ କରିବ । ତେତେବେଳେ କଣ ଆଉ ତୁମକୁ ସେ କାମ ଖରାପ ଲାଗିବ ? ଅଚ୍ଛା ଦେଖିଲ ଦେଖି, ତୁମେ କଣ ସେହି କାମ ସମ୍ପାଦନ କରୁନାହଁ ? ଝାଡ଼ା ଫେରି ସାରି ବାମ ହାତରେ ଶୌଚ ହେଉଛନ୍ତି କି ? ପୁଣି ମାଟି ଲଗାଇ ଦେଇ ଧୁଆ ସ୍ବଚ୍ଛ ହୋଇ ସେ ହାତରେ ଅନ୍ୟ ସବୁ କାମ କରୁଛ । ସେ ବାମ ହାତଟାକୁ କାଟି ପକାଇ ଦେଉ ନାହଁ ? ସେ ହାତ ତ ଚଣ୍ଡାଳ କାର୍ଯ୍ୟ କରୁଛି, ସେହି ହାତ ପୁଣି ମୁଣ୍ଡରେ ଲଗୁଛି, ଦେହରେ ଲାଗୁଛି; କାହିଁ ତୁମ ଦେହ ତ ଅପବିତ୍ର ହେଉ ନାହିଁ ? ମନୁଷ୍ୟ ଦେହର ଅଙ୍ଗ ବାମ ହାତ ଯେ କାମ କରୁଛି, ମନୁଷ୍ୟ ସମାଜରେ ମେହେନ୍ତର ସେହି କାମ କରୁଛି । ନିଜ ହାତପ୍ରତି ଯଦି ନିଜର ଲେଶ ମାତ୍ର ଘୃଣା ନାହିଁ, ତେବେ ସେ ସମାଜ ସେବକକୁ ଏତେ ଘୃଣା କାହିଁ ? ଜାତି ବୋଲି ଯେଉଁମାନେ ପରିଚୟ ଦେଉଛନ୍ତି, ସେମାନଙ୍କର ଏ ପ୍ରକାର ବ୍ୟବହାର ଅତି ଅନ୍ୟାୟ । ଏପରି ବ୍ୟବହାରଦ୍ୱାରା ହିନ୍ଦୁ ସମାଜର ବହୁତ ହାନି ହେଉଛି ?

ସ୍ତ୍ରୀ—ହିନ୍ଦୁ ସମାଜର କି କ୍ଷତି ହେଉଛି ?

ସ୍ୱା—ହିନ୍ଦୁ ସମାଜର ସଂଖ୍ୟା-ବଳ ଊଣା ହୋଇ ଯାଉଛି । ଯେଉଁମାନଙ୍କୁ ଅଛୁଆଁ ଲୋକ ବୋଲି କହୁଛ, ସେମାନେ ଆମ୍ଭମାନଙ୍କର ସୋଦର ! ସ୍ନେହ ନ ପାଇ ଅନ୍ୟ ଧର୍ମକୁ ଚାଲି ଯାଉଛନ୍ତି । କିଏ କିରସ୍ତାନ ହୋଇ ଯାଉଛି, କିଏ ମୁସଲମାନ ହୋଇ ଯାଉଛି । ଅଥଚ ସେମାନେ ଭିନ୍ନ ଧର୍ମ ଗ୍ରହଣ କରି ପରିଷ୍କାର ପରିଚ୍ଛନ୍ନ ହୋଇ ପାଠ ପଢ଼ି ହାକିମ ହୋଇ ଆସିଲେ, ଯେଉଁମାନେ ଘୃଣା କରୁଥିଲେ ସେମାନେ ଆଗ ଯାଇ ସେମାନଙ୍କୁ ଆଦର ସମ୍ଭାଷଣ କରୁଛନ୍ତି । ତେଣୁ ସେମାନେ ମନେ କରୁଛନ୍ତି, ଆମେ ଏ ଧର୍ମକୁ ଆସିଲରୁ ହିନ୍ଦୁ ଲୋକେ ଆମକୁ ଆଦର କଲେ, ତେବେ କିରସ୍ତାନ ଧର୍ମ ଭଲ । ସେମାନଙ୍କର ଏପରି ବିଶ୍ୱାସ ହେବା ସ୍ୱାଭାବିକ । ସୁତରାଂ ହିନ୍ଦୁ ସଂଖ୍ୟା କମି ଯାଉଛି । ସଂଖ୍ୟା ବଳ ଗୋଟିଏ ପ୍ରଧାନ ବଳ ।

ସ୍ତ୍ରୀ—ଏପରି ହେଉଛି ? ଆମକୁ ଜଣା ନାହିଁ ତ । ଆମେ ଯାହା ବାପ ଅଜା ଅମଳରୁ ଦେଖି ଆସୁଛୁ ତାହା କହୁଲି ସିନା ।

ସ୍ୱା—ହଁ ତା କଣ ଦେଖା ଯାଉନାହିଁ କି ? ସବୁ ମନୁଷ୍ୟ ସମାନ, ସମସ୍ତଙ୍କଠାରେ ନାରାୟଣ ଅଛନ୍ତି । ଭାଗବତ କହୁଛି ପରା, "କାଷ୍ଠ ପାଷାଣ ତରୁ ତୃଣେ, ବସନ୍ତି ଅନାଦି ପ୍ରମାଣେ" । କେବଳ ଯାହା ପ୍ରକୃତି ଅନୁସାରେ ଯାହାକୁ ଯେଉଁ କର୍ମକୁ ଉପଯୁକ୍ତ ମନେ କରିପାଉଛି, ସେ କାମ ସେ କରୁଛି ଏବଂ ସେହି କର୍ମ କରି ତା ମନରେ ଆନନ୍ଦ । କେବଳ ଗୁଣ ଓ କର୍ମାନୁସାରେ ମନୁଷ୍ୟମାନେ ଭିନ୍ନ ଭିନ୍ନ ଶ୍ରେଣୀରେ ବିଭକ୍ତ ହୋଇଛନ୍ତି ସିନା; ମାତ୍ର ଜୀବାତ୍ମା ସର୍ବତ୍ର ସମାନ । ତାଠାରେ ଯେଉଁ ରକ୍ତ ଆମଠାରେ ସେହି ରକ୍ତ; ମାତ୍ର ନିଜ ନିଜ ଅନୁସାରେ ସେ ଯେପରି କର୍ମ କରିଛି ସେ ସେପରି ଫଳ ଭୋଗୁଛି । ପୁଣି ଏ

ଜନ୍ମରେ ଯେ ଯେପରି କର୍ମ କରିବ, ସେ ଅପରଜନ୍ମରେ ସେପରି ଫଳ ଭୋଗିବ । ଏଥିଲାଗି ମନୁଷ୍ୟ ମନୁଷ୍ୟକୁ ଘୃଣା କରିବ ନାହିଁ । ଘୃଣା କଲେ ଅପଣାର ହାନି; ତାର କିଛି ହାନି ନାହିଁ । ସକଳ ମନୁଷ୍ୟକୁ ସ୍ନେହ ଚକ୍ଷୁରେ ଦେଖିବ, ସେମାନଙ୍କୁ ମଧୁର ବଚନ କହି ଅପ୍ୟାୟିତ କରିବ, ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ଅହା ବୋଲି କହି ସହାନୁଭୂତି ପ୍ରକାଶ କରିବ, ଯଥାସାଧ୍ୟ ସେମାନଙ୍କୁ ସାହାଯ୍ୟ କରିବ । କେ ଜାଣେ ଭବିଷ୍ୟତରେ ନିଜର କି ଦଶା ହେବ । କେଉଁ ପୁଣ୍ୟରୁ ଭଗବାନ ଆମ୍ଭଙ୍କୁ ଭଲ ଅବସ୍ଥା ଦେଇଛନ୍ତି, ଭଲ କୁଳରେ ଜନ୍ମ ଦେଇଛନ୍ତି, ଦି'ଅ ଭାତ ଖାଇବାକୁ ଦେଉଛନ୍ତି । ଅମ୍ଭେ ସେସବୁ ପାଇଁ ଭଗବାନଙ୍କଠାରେ କୃତଜ୍ଞ ହେବା; ଅନ୍ୟମାନଙ୍କୁ ସେପରି ସୁଖ ମିଳୁ ବୋଲି ପ୍ରାର୍ଥନା କରିବା । ମାତ୍ର ଅମ୍ଭେମାନେ ନିଜ ଅବସ୍ଥା, ନିଜ ସମ୍ପତ୍ତି, ନିଜ ପଦମର୍ଯ୍ୟାଦା, ନିଜ ଜାତି ଅଭି-ମାନରେ ଅନ୍ଧ ହୋଇ ସଗର୍ବରେ ଯେବେ ଅନ୍ୟମାନଙ୍କୁ ଘୃଣା କରିବା, ତେବେ ଭଗବାନ ଅମ୍ଭମାନଙ୍କ ପ୍ରତି ଅସନ୍ତୁଷ୍ଟ ହେବେ । ଯାହାଙ୍କ ଭ୍ରୂଭଙ୍ଗିରେ ଏ ସୃଷ୍ଟି, ସ୍ଥିତି, ସଂହାର ହେଉଛି, ସେ ରୁଷ୍ଟ ହେଲେ ଅମ୍ଭମାନଙ୍କର ମଙ୍ଗଳ ହେବ ନାହିଁ । ଅମ୍ଭମାନଙ୍କର ପ୍ରାଚୀନ ପ୍ରଥା କଣ ଥିଲା ଶୁଣ । ପ୍ରତ୍ୟେକ ପୁରାଣ ପାଠ ଶେଷରେ ଏବଂ ପ୍ରତ୍ୟେକ ସତ୍କର୍ମ ଶେଷରେ ନିମ୍ନଲିଖିତ ଶ୍ଲୋକଟି ବୋଲାଯାଏ ।

ସ୍ୱସ୍ତିପ୍ରଜାଭ୍ୟଃ ପରିପାଳୟନ୍ତୁ
ନ୍ୟାଯ୍ୟେନ ମାର୍ଗେଣ ମହୀଂ ମହୀଶାଃ,
ଗୋବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ
ଲୋକାଃ ସମସ୍ତାଃ ସୁଖିନଃ ଭବନ୍ତୁ ।

ଏଥିର ଅର୍ଥ ବୁଝି ପାରୁଥିବ। "ରାଜା ପ୍ରଜାମାନଙ୍କୁ ନ୍ୟାଯ୍ୟ-ମାର୍ଗରେ ପାଳନ କରୁ, ଗୋବ୍ରାହ୍ମଣମାନଙ୍କର ଶୁଭ ହେଉ ଏବଂ ସମସ୍ତ ଲୋକେ ସୁଖରେ ରହନ୍ତୁ।" ସୁତରାଂ ସମସ୍ତଙ୍କ ସୁଖେଚ୍ଛା କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ।

ସ୍ତ୍ରୀ—ତେବେ ମେହେନ୍ତର ଯେଉଁ କାର୍ଯ୍ୟ କରୁଛି ସେଇଟା କଣ ଭଲ କାର୍ଯ୍ୟ ?

ସ୍ବା—କାର୍ଯ୍ୟରେ ଭଲ ମନ୍ଦ କିଛି ନାହିଁ। ଯାହାର ଯେଉଁ କାର୍ଯ୍ୟ କର୍ତ୍ତବ୍ୟ, ତା ପ୍ରତି ସେ କାର୍ଯ୍ୟ ଭଲ। ସ୍ୱାସ୍ଥ୍ୟ ରକ୍ଷା ପାଇଁ ଯେତେ କାର୍ଯ୍ୟ ଆବଶ୍ୟକ ସେ ସବୁ ଭଲ କାର୍ଯ୍ୟ। ପ୍ରତ୍ୟେକ ଲୋକ ତାର ନିଜ ଗୁଣ ଓ ଶକ୍ତି ଅନୁସାରେ କାର୍ଯ୍ୟ କରିବ, ସେଥିରେ ଭଲ ମନ୍ଦ କଣ ଅଛି ? କେବଳ ଆମେ ଯାହା କରୁଥାଉଁ ତାହା ଭଲ, ଆଉ ସବୁ କାର୍ଯ୍ୟ ମନ୍ଦ ବା ନିକୃଷ୍ଟ ଏପରି ଧାରଣା ଠିକ୍ ନୁହେ। ଯେଉଁ କାର୍ଯ୍ୟ ଅନ୍ୟ ଲୋକ ନ କଲେ ଆମକୁ ନିଜେ କରିବାକୁ ପଡ଼ିବ, ସେ କାର୍ଯ୍ୟ ନିକୃଷ୍ଟ ହେବ କିପରି ? ଯେ ଯେଉଁ କାର୍ଯ୍ୟକୁ ଆପଣାର କର୍ତ୍ତବ୍ୟ ବୋଲି କରୁଛି, ସେ କାର୍ଯ୍ୟ ତା ପ୍ରତି ପବିତ୍ର, ଉତ୍କୃଷ୍ଟ। ସେ କାର୍ଯ୍ୟ କରିବାପାଇଁ ତାର ସ୍ନେହ ମମତା ଅଛି, ସେ କାର୍ଯ୍ୟରେ ତାର ସୁଖ ଅଛି। ସେପରି ନ ଥିଲେ ସେ ଆଦୌ ସେ କାର୍ଯ୍ୟ କରନ୍ତା ନାହିଁ। ତାର ଯଦି ସେ କାର୍ଯ୍ୟ ପ୍ରତି ଘୃଣା ହୁଅନ୍ତା, ସେ ସେ କାର୍ଯ୍ୟ କିପରି କରନ୍ତା ? ଏ କଥା ଚିନ୍ତା କରି ଦେଖିଲ ଦେଖି, ସତ ନୁହେ ?

ସ୍ତ୍ରୀ—ହଁ, ଯାହା କହୁଛ ସତ ପରି ଜଣା ଯାଉଛି; ମାତ୍ର ଚଣ୍ଡାଳ ବୋଲି କାହିଁକି କଥାଟାଏ ଅଛି ?

ସ୍ୱା—ଲୋକ ଜାତି ଯୋଗୁଁ ଚଣ୍ଡାଳ ନୁହେ । କେତେଗୁଡ଼ିଏ ଆଚାର ବ୍ୟବହାର ହେତୁ ଲୋକକୁ ଚଣ୍ଡାଳ ବୋଲି କୁହାଯାଏ । ହିନ୍ଦୁମାନେ ଆଚାର ବ୍ୟବହାର ସର୍ବଦା ପବିତ୍ର ଓ ବିଶୁଦ୍ଧ ରହିବାକୁ ଧର୍ମ ବୋଲି ବିଶ୍ୱାସ କରନ୍ତି । ସେହି ଆଦର୍ଶ ଆଚାର ବ୍ୟବହାର ଦୃଷ୍ଟିରେ ଯେହୁ ଯେବେ ଅଖାଦ୍ୟ ଖାଇଲା, ଅନ୍ୟାୟ ଆଚରଣ କଲା, ତାକୁ ଚଣ୍ଡାଳ ବୋଲି କୁହାଯାଏ । ଯେଉଁମାନେ ଗୋମାଂସ ଭକ୍ଷଣ, ଘୁଷୁରି, କୁକୁଡ଼ା ପ୍ରଭୃତିର ମାଂସ ଭକ୍ଷଣ କରନ୍ତି, ସେମାନଙ୍କୁ ସାଧାରଣତଃ ଚଣ୍ଡାଳ କହନ୍ତି । ଯେଉଁମାନେ ଚୋରି କରନ୍ତି, ନିଶା ପାନ କରନ୍ତି, ପର ସ୍ତ୍ରୀ ହରଣ କରନ୍ତି, ସେମାନଙ୍କୁ ଚଣ୍ଡାଳ କହନ୍ତି । ଭଗବାନ ଉଦ୍ଧବଙ୍କୁ ସେହି କଥା କହିଥିଲେ ଯଥା :—

ଜୀବରେ ଯାର ଦୟା ନାହିଁ,
ଉଦ୍ଧବ ଚଣ୍ଡାଳଟି ସେହି ।

ମନୁଷ୍ୟ ତ ଚଣ୍ଡାଳ ହୋଇ ଜନ୍ମ ହୋଇ ନ ଥାଏ । ଆଚରଣ ଦ୍ୱାରା ଚଣ୍ଡାଳ ହୋଇ ପଡ଼େ । ଆଚରଣ ଶୁଦ୍ଧ ଥିଲା ବୋଲି ଲକ୍ଷ୍ମୀ କପର ଶ୍ରିୟା ଚଣ୍ଡାଳୁଣୀ ଘରକୁ ଆସିଲେ, ଏକଥା ଲକ୍ଷ୍ମୀ ପୁରାଣରେ ଶୁଣିଥିବ । ଯେଉଁଠି ନିଷ୍ଠାବାନ, ଆଚାରଶୁଦ୍ଧି ଅଛି, ଲକ୍ଷ୍ମୀ ସେଠାକୁ ଯାନ୍ତି, ସେ ଜାତି ବିଚାର କରନ୍ତି ନାହିଁ ।

---

## ଊନବିଂଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ଆଜିକାଲି ମାନେ କଣ ପରଦା ଉଠାଇ ଦେଉଛନ୍ତି ନା ? ସେଦିନ ଖବର କାଗଜରେ ଦେଖିଲି, ଅଫଗାନିସ୍ଥାନ

ଅମୀରଙ୍କ ରାଣୀ ସୁରେୟା ପରଦା ଉଠାଇ ଦେଇ ଦାଣ୍ଡରେ ପଦାକୁ ବାହାରି ପଡ଼ିଲେ । ପୁଣି ଶୁଣିଲି, ବଜାରରେ ମାଇପେ ପରଦା ଉଠାଇ ଦେବାକୁ ସଭା କରିଥିଲେ, ଏଥିର କଥା କଣ ମ ?

ସ୍ୱା—ଅହେ ହଁ ହେ, ଏପରି ଗୋଟାଏ ଚହଳ ପଡ଼ିଛି । ମାଇପେ କହୁଛନ୍ତି, ଆମେ କାହିଁକି ସବୁବେଳେ ଘର କଣରେ ପଶିଥିବୁ, ଆମେ ଏଣିକି ପଦାରେ ବୁଲିବୁ, ସଭା ସମିତିକୁ ଯିବୁ । ସବୁବେଳେ ଓଢ଼ଣା ପକାଇ ବୁଲିବୁ କିଆଁ ? ରାଣୀ ସୁରେୟା ବିଲାତକୁ ବୁଲି ଯାଇଥିଲେ । ଦେଖିଲେ ସେ ଦେଶରେ ମାଇପେ ଘରେ ଲୁଚନ୍ତି ନାହିଁ । ସେ ତେଣୁ ତାଙ୍କ ପରଦା ଉଠାଇ ଦେଲେ । ସାହେବାଣୀମାନେ ପଦାରେ ବୁଲନ୍ତି । ତାଙ୍କୁ ଦେଖି ଆମ ଦେଶ ମାଇପଙ୍କ ମନ ଯା ତା ହେଉଛି । ଖାଲି ମାଇପେ ପଦାରେ ବୁଲିଲେ କଣ ଆମେ ସାହେବ ଜାତି ପାଲଟି ଯିବା ?

ସ୍ତ୍ରୀ—ଅଚ୍ଛା, ସେ ଦେଶରେ ତ ପରଦା ନାହିଁ, ଆମ ଦେଶରେ ଏତେ ପରଦା କାହିଁକି ?

ସ୍ୱା—ହଇ ହେ, ପରଦା କଅଣ ଜାଣ ? ଲୋକସାଧାରଣ ଆଗକୁ ନ ବାହାରିବା ଅର୍ଥ ପରଦା । ଘରେ ତ କେହି ସବୁବେଳେ ଓଢ଼ଣା ଦେଇ ନ ଥାଏ । ତେବେ ମାନ୍ୟ ଲୋକଙ୍କ ଆଗରେ ଓଢ଼ଣା ଥାଏ । ଆମ ଦେଶରେ ପାଞ୍ଚ ଜାତି ମାଇପେ ତ ହାଟ, ବଜାର, ମେଳଣି, ମେଳାକୁ ଯାନ୍ତି, ତାଙ୍କର ଓଢ଼ଣା ନ ଥାଏ । ବ୍ରାହ୍ମଣମାନଙ୍କ ଘରେ ସେପରି ଜାବଦା ଓଢ଼ଣା ନ ଥାଏ । ସେମାନେ ମଧ୍ୟ ଯାତ୍ରା ତୀର୍ଥକୁ ଯାନ୍ତି । ଯୋଡାଯୋଡି ଦେଖିବାକୁ ଗଲେ ଆମ ଜାତି ମଧ୍ୟରୁ ବାରପଣ ମାଇପଙ୍କର

ପରଦା ନାହିଁ । ବେଶୀ ପରଦା ଦେଖାଯାଏ କରଣ, କ୍ଷତ୍ରିୟଙ୍କ ଘରେ । ସେମାନେ ଦଅଁ ଦେଉଳକୁ ଗଲେଯାନ୍ତି, ତେତେ-ବେଳେ ପରଦା ଛାଡଦା ନ ଥାଏ । ତେବେ ଅନ୍ୟାନ୍ୟ ପାଣ୍ଠିକର ସ୍ତ୍ରୀ ଲୋକଙ୍କ ପର ଦାଣ୍ଡ ହାଟକୁ ବେ ପରଦାରେ ଯାନ୍ତି ନାହିଁ । ମାନ୍ୟଲୋକଙ୍କୁ ଅବାଧିତ ଭାବେ ଦେଖା ଦଅନ୍ତି ନାହିଁ । ଅର୍ଥାତ୍ ଯେଉଁମାନଙ୍କର କୌଣସି କାର୍ଯ୍ୟ ଲାଗି ବାହାରକୁ ଯିବାକୁ ପଡ଼େ ନାହିଁ, ସେମାନଙ୍କର ପରଦା ବେଶୀ । ହିନ୍ଦୁମାନଙ୍କ ଅପେକ୍ଷା ମୁସଲମାନ ସ୍ତ୍ରୀମାନଙ୍କ ପରଦା ଅଧିକ ବେଶୀ । ସେମାନଙ୍କର ମୁଣ୍ଡଠାରୁ ଗୋଡ଼ଯାଏ ଘୋଡ଼ଣୀ ।

ସ୍ତ୍ରୀ—ସତେ ମ, କରଣ କ୍ଷତ୍ରିୟଙ୍କ ଘରେ ଏତେ ପରଦା କାହିଁକି ?

ସ୍ୱାମୀ—କରଣ କ୍ଷତ୍ରିୟମାନଙ୍କର ପୂର୍ବପୁରୁଷମାନେ ରାଜା ଓ ରାଜକର୍ମଚାରୀ ଥିଲେ ବୋଲି ସେମାନଙ୍କର ଗର୍ବ—ଆମେ ରାଜା ଜାତି, ଆମର ସମାଜରେ କେତେ ଅଧିକାର, ଆମକୁ ସମସ୍ତେ ଶିର ନୋଇଁଛନ୍ତି, ଆମ ମାଇପେ ଦାଣ୍ଡକୁ ଯିବେ ? ସାଧାରଣ ଇତର ସ୍ତ୍ରୀ ପର ଦାଣ୍ଡରେ ବୁଲିବେ ? ଆମ ମାଇପଙ୍କୁ ପୁଣି ଇତର ଲୋକ ଦେଖିବ ? ନା, ତା ହେବ ନାହିଁ । ଏହି ଅଭିମାନ ହେତୁ ଏମାନଙ୍କ ଘରେ ବେଶୀ ପରଦା କାଇଦା । ଏମାନେ ସମ୍ଭ୍ରାନ୍ତ ବୋଲି ଦାବୀ କରନ୍ତି । ଏମାନଙ୍କର ଗୃହର ବାହାର ଥାଇ କାମ କରନ୍ତି । ଏମାନେ ହାଟ ବଜାର କରିବାକୁ ଅପମାନ ମନେ କରନ୍ତି । ସୁତରାଂ ବାହାରକୁ ଯିବା ଆବଶ୍ୟକ ପଡ଼େ ନାହିଁ, ଘରେ ଥାନ୍ତି । ଯେଉଁମାନଙ୍କର ହାଟ ବଜାରକୁ ନ ଗଲେ ନ ଚଳିବ, ସେମାନେ ପରଦା ରଖି ଚଳିବେ କେଉଁଠି ? ସୁତରାଂ ନିମ୍ନ ଶ୍ରେଣୀସ୍ଥ ଲୋକଙ୍କ ମଧ୍ୟରେ ପରଦା

ନାହିଁ । ସେମାନଙ୍କ ପୁରୁଷ ସ୍ତ୍ରୀ ଉଭୟେ କାର୍ଯ୍ୟ କରି ରୋଜଗାର କରନ୍ତି, ସୁତରାଂ କାଧ୍ୟ ହୋଇ ପଦାକୁ ବାହାରନ୍ତି ।

ସ୍ତ୍ରୀ—ସାହେବାଣୀମାନେ କାହିଁକି ପରଦା ରଖନ୍ତି ନାହିଁ ?

ସ୍ୱାମୀ—ସେମାନଙ୍କ ଦେଶରେ ସେହିପରି ଚଳନ । ଯେ ଦେଶ ମାଇପେ ଗୃହକର୍ମ କରନ୍ତି, ରୋଜଗାର କରନ୍ତି, ହାଟ ବଜାର କରନ୍ତି, ସୁତରାଂ ପରଦାରେ ରହିଲେ ଚଳିବେ କିପରି ? ଆମ ଦେଶରେ ମୁଠାଏ ଖାଇବାକୁ ମିଳୁଛି; ମାଇପେ ଗୃହକର୍ମ କରି ରୋଜଗାର କରିବାର ବେଳ ଅସି ନାହିଁ । ଯେତେବେଳେ ସେ ବେଳ ଅସିବ ପରଦା ମନକୁ ଉଠିଯିବ । ସଭା ସମିତି କଲେ କଣ ହେବ ?

ସ୍ତ୍ରୀ—ଆଚ୍ଛା ପରଦାଟା ଭଲ ନା ମନ୍ଦ ?

ସ୍ୱାମୀ—ଏଥିରେ ଭଲ ମନ୍ଦ କିଛି ନାହିଁ । ଏ କେବଳ ଅବଶ୍ୟକତା ନେଇ କଥା । ଅବଶ୍ୟକ ପଡ଼ିଲେ ବଳେ ଉଠିଯିବ । ଅବଶ୍ୟକତା ନ ପଡ଼ିଲେ ମାଇପେ ଗୁଡ଼ାକ ଯାଇ ବିନା କାର୍ଯ୍ୟରେ ରଣପା ପରି ଏଣେ ତେଣେ ବୁଲୁଥିବେ । ବୁଲିକରି କଣ କରିବେ, ଗୋଡ଼ ଘୋଳା ହେବ କିନା ?

ସ୍ତ୍ରୀ—ଆଚ୍ଛା ବିଲାତରେ ମାଇପେ କାହିଁକି ଗୃହକର୍ମ କରି ରୋଜଗାର କରନ୍ତି, ଆମ ଦେଶରେ କାହିଁକି କରନ୍ତି ନାହିଁ ?

ସ୍ୱାମୀ—ଅହେ ଏ କଥା ବୁଝି ପାରୁ ନାହଁ ? ଆମ ଦେଶରେ ଯେତେ ଗରିବ ଲୋକଟିଏ ହେଲେ ତାର ଦୁ'ମାଣ ଜମି ଅଛି । ଆମ ଦେଶରେ ଗୃହଜଳ ଚଣ୍ଡାଳର ଅଭାବ ନାହିଁ, ଲୁଣ କି ଶାଗ ଟିକିଏ ହେଲେ ଲୋକ ମୁଠିଏ ଖାଇ ଦେଇ ଚଳିଯିବ । ବିଲାତରେ ଖାଇବା ପିଇବା ଏଡ଼େ ସହଜ ରାସ୍ତା ନୁହେ । ସେ ଦେଶରେ ବାରପଣ ଲୋକଙ୍କର ଜମି ବାଡ଼ି ନାହିଁ

ସେମାନେ ମଜୁର ନ ଖଟିଲେ ପେଟକୁ ଦାନା ମିଳିବ ନାହିଁ । ଖାଇବା ଜିନିଷ ବଡ଼ ମହରଗ । ବିଦେଶରୁ ଜିନିଷ ଗଲେ ସେମାନେ କିଣି ଖାନ୍ତି । ଏତେ ଦୂରକୁ ଚାହିଁବା ଯାଉଛ କାହିଁକି, ଆମ ଦେଶରେ ଦେଖ ନାହିଁ ! ଯେଉଁ ଲୋକଙ୍କର ଜମି ବାଡ଼ି ନାହିଁ, ସେମାନେ ମାଇପେ ମରଦ ସମସ୍ତେ ମଜୁରି ନ ଖଟିଲେ କାମ ଚଳିବ କିପରି ? ଆମ ଦେଶରେ ବାଉରିଙ୍କର ଜମି ନାହିଁ, ସେମାନେ ପର କିଆରିରେ ମୂଲ ଲାଗି ଚଳନ୍ତି । ଗୋଲିଆଣୀଙ୍କ ଅବସ୍ଥା ସେହିପରି । ତେଣୁ ସେମାନେ ମାଇପେ ମରଦ ସମସ୍ତେ ମଜୁରି ଖଟନ୍ତି । ଯେଉଁମାନଙ୍କ ମାଇପେ ମଜୁରି ନ ଖଟିଲେ ଘର ଚଳିବ ନାହିଁ, ସେମାନେ ପରଦା ରକ୍ଷିବେ କିପରି ? ହାଟୁଆ ଜାତିରେ ସେହିପରି । ତେଲୁଣୀ ତେଲ ବିକେ, ଗୁଡ଼ିଆଣୀ ମୁଡ଼ି ଉଖୁଡ଼ା ବିକେ, ଗଉଡୁଣୀ ଦହି ଦୁଧ ବିକେ, ଲୁଣିଆଣୀ ଲୁଣ ବିକେ, ଏମାନେ ପରଦା ଭିତରେ ରହିଲେ ଚଳିବେ କିପରି ? ହାଟୁଆ ଜାତି ଲୋକଙ୍କର ମଧ୍ୟ ଜମି ବାଡ଼ି ନାହିଁ । ବିଲାତର ଅଧିକାଂଶ ଲୋକଙ୍କର ଅବସ୍ଥା ଆମଦେଶର ଜମି ନ ଥିବା ଲୋକଙ୍କ ଅବସ୍ଥା ପରି କିମ୍ବା ତହିଁରୁ ନ୍ୟୂନ । କାରଣ ଆମର ଏ ଦେଶରେ ଜଣେ ଲୋକ ଉଠିଆଣା ଗୁରିଆଣାରେ ଦିନେ ଚଳିଯିବ, ମାତ୍ର ବିଲାତରେ ଟଙ୍କାଏ ଦେଢ଼ଟଙ୍କା ନ ହେଲେ ଚଳି ପାରିବ ନାହିଁ । ସେ ଦେଶରେ ମାଇପେ ଘର କଣରେ ବସିଲେ ପେଟ ବିକଳରେ ମରି ଯିବେ, ପରଦା ରକ୍ଷିବେ କିପରି ?

ସ୍ତ୍ରୀ—ତେବେ କଣ ପରଦା ମନକୁ ଉଠିଯିବ ?

ସ୍ୱା—ନିଶ୍ଚୟ, ଏବେ ଦେଖ, ଆମଦେଶ ବାଳିକାମାନେ ସ୍କୁଲରେ ପଢ଼ିଲେଣି । ଯେଉଁମାନେ ପାଠ ପଢ଼ୁଛନ୍ତି ସେମାନଙ୍କ ମନରେ ମଧ୍ୟ ପରଦା ଭାବଦା ନାହିଁ । ସେ ଭାବ କ୍ରମେ ଆପଣା ମନରୁ ଉଠି ଯାଉଛି । ଆଗେ ଯେପରି କୁଳ ଭାହା ଘରକୁ ଯାଉ ନ ଥିଲା ଏବେ ସେ କଥା ଉଠି ଯାଉଛି । ଏବେ ତ ଅଧିକ ସଂଖ୍ୟକ ସ୍ତ୍ରୀ କେବେ ଯାତ୍ରା ଘାଟକୁ ଚାହାଁରୁଛନ୍ତି, ଯାଉଛନ୍ତି । ପରସ୍ପର ମଧ୍ୟରେ କଥାବାର୍ତ୍ତା ମିଳାମିଶା ହେଉଛନ୍ତି । ଏପରି କ୍ରମେ ସେ କଥା ଉଠି ଯାଉଛି । ଯେତେବେଳେ ବେଶୀ ସଂଖ୍ୟକ ମାଇପେ ପାଠ ପଢ଼ିବେ, ସେମାନେ ଏକାଟି ବସିବେ, ଉଠିବେ, କଥାବାର୍ତ୍ତା ହେବେ । ଏ କଥା କେହୁ ବାରଣ କରି ପାରିବେ ନାହିଁ । ଯେଉଁମାନେ ରେଲରେ ଯିବା ଆସିବା କରୁଛନ୍ତି, ସେମାନଙ୍କର ବା ପରଦା କାହିଁ ? ତେବେ ଯେଉଁମାନେ କହନ୍ତି ପରଦା ଥିବାରୁ ଆମ ଦେଶ ଅସଭ୍ୟ, ପରଦା ଉଠିଗଲେ ଆମେ ସଭ୍ୟ ହେବା, ମୁଁ ସେମାନଙ୍କ ସଙ୍ଗେ ଏକମତ ହୋଇ ପାରୁ ନାହିଁ ।

ସ୍ତ୍ରୀ—ଜାଣି ପାଇବ ଉଠନ ଗୋଟ ପର ତମର ସବୁ ଗୋଟାଏ କଥାରେ ଅଲଗା ପନ୍ଥା !

ସ୍ୱା—ଅହେ, ନାହିଁ ହେ, ସେପରି କଥା ନୁହେଁ । ତମେ କଥାଟାକୁ ଅଳ୍ପ କରି ବୁଝ । ସଭ୍ୟତା ଅର୍ଥ କଣ ସାହେବଙ୍କ ଗୁଡ଼ିକ କେଣକୁ ଅନୁକରଣ କରିବା ? ଆମେମାନେ ସଭ୍ୟ ହେଲେ ଆମ ନିଜ ଗୁଣରେ ହେବା । କେବଳ ସାହେବଙ୍କ ପରି ପୋଷାକ ପିନ୍ଧି, ସାହେବଙ୍କ ପରି ଖାନା ଖାଇ, ସାହେବାଣୀଙ୍କ ପରି ପରଦା ଉଠାଇ ଦେଇ ସଭ୍ୟ ହୋଇ ପାରିବା ନାହିଁ, ବରଂ ଅସଭ୍ୟ ହୋଇଯିବା । ଗୁଣ ଅର୍ଜନ କରିବା ଆବଶ୍ୟକ ।

ଜ୍ଞାନ ନ ହେଲେ, ଗୁଣ ନ ଥିଲେ, ଜାତି ସଭ୍ୟ ହୋଇ ପାରନ୍ତି ନାହିଁ । ଆମ ଜାତି ଯେତେବେଳେ ସଭ୍ୟ ହୋଇଥିଲା, ସେତେବେଳେ କୌପୀନଧାରୀ ହୋଇ ମଧ୍ୟ ଜଗତକୁ ଶିକ୍ଷା ଦେଇଥିଲା । ବର୍ତ୍ତମାନ ସାହେବ ପୋଷାକ ପିନ୍ଧି ମଧ୍ୟ ଅଟେ ଅସଭ୍ୟ ।

ସ୍ତ୍ରୀ—ଏ କଥା ତ କହୁଛ; ଆମ ଦେଶରେ ତ ବାରବର୍ଷ ହେଲେ ବାଳିକା ସ୍କୁଲକୁ ଯିବ ନାହିଁ, ସେ ଅଳ୍ପ କେତେ ପାଠ ପଢ଼ିବ ? ବିବାହ ବୟସ ହେଲାରୁ ସେ ତ ଘରୁ ବାହାରି ପାରିବ ନାହିଁ । ଏଠି ତ ପରଦା ପ୍ରଥା ବାଧା ଦେଉଛି । ଏପରି ପ୍ରଥା ନ ଥିଲେ କନ୍ୟାଟି ବି. ଏ.,ଏମ. ଏ. ପାସ କରିବାଯାଏ ପଢ଼ନ୍ତା ।

ସ୍ୱା—ହଁ, ଏ କଥା କହୁଛ ଯେ ଆମ ଦେଶର ଚଳନ ଅନୁସାରେ ଝିଅ ପରଦା ଭିତରେ ରହେ । ବି. ଏ., ଏମ. ଏ. ପାସ କଲେ ଯେ ପଣ୍ଡିତ ହେବ ତାହା ନୁହେ । ଆଜିକାଲି ଯେଉଁ ଢଙ୍ଗରେ ପଢ଼ା ହେଉଛି, ସେଥିରେ ବି. ଏ., ଏମ. ଏ. ପାସଟା କେବଳ ଚାକିରି କରିବାପାଇଁ ଗୋଟାଏ ଅବଲମ୍ବନ; ଏବଂ ସେଥିରେ ଜ୍ଞାନ ଲାଭ ହେଉଛି ବୋଲି ମୋର ବିଶ୍ୱାସ ହେଉ ନାହିଁ । ବାଳିକା ପିଲା ପାଠ ପଢ଼ିବା ଆମ ଦେଶରେ ନୂଆ କଥା ନୁହେ । ମନୁ ନ ସ୍ମୃତି ଶାସ୍ତ୍ରରେ ଲେଖି ଯାଇଛନ୍ତି, କନ୍ୟାକୁ ପାଳିବ ଏବଂ ଶିକ୍ଷା ଦେବ । ବର୍ତ୍ତମାନ ଯେଉଁ ଭାବରେ ସ୍କୁଲ୍ କଲେଜ ବସିଛି, ଆମ ଦେଶରେ ଆଗେ ସେପରି ନ ଥିଲା । ତଥାପି ସ୍ତ୍ରୀ ଲୋକେ ଆମ ଦେଶରେ କଣ ପଣ୍ଡିତ ନ ଥିଲେ ? ତୁମେ କଣ ଖନା, ଲୀଳାବତୀ, ରମାବାଈ ପ୍ରଭୃତି ବିଦୁଷୀ ରମଣୀଙ୍କ କଥା ଭୁଲିଗଲ ? ଥରେ ତ ସେ କଥା କହିଥିଲି । ଏ ବିଷୟରେ ସ୍ତ୍ରୀ ଲୋକ କଥା କହିବାବେଳେ

ଅନେକ କଥା କହିଥିଲି, ମନେ ଥିବ । ଆମ ଦେଶରେ ବୃନ୍ଦାବନ ଦାସୀ ଥିଲେ, ସେ "ମୁକ୍ତିତମ-ଚନ୍ଦ୍ରୋଦୟ" ପୁସ୍ତକ ଲେଖି ଯାଇଛନ୍ତି । ସ୍କୁଲକୁ ନ ଗଲେ ଯେ ପାଠ ପଢ଼ା ହେବ ନାହିଁ, ଏ କଥା ମନେକରିବା ଠିକ୍ ନୁହେ । ବରଂ ଆଜିକାଲି ଯେଉଁ ପ୍ରଣାଳୀରେ ବାଳକ ବାଳିକାମାନଙ୍କର ସ୍କୁଲ୍ କଲେଜରେ ସଂସର୍ଗ ହେଉଛି, ତାହା ବ୍ରହ୍ମଚର୍ଯ୍ୟ-ନୀତି ବିରୁଦ୍ଧ ।

ସ୍ତ୍ରୀ—ବ୍ରହ୍ମଚର୍ଯ୍ୟ କଣ ମ ? ମୁଁ ତ କିଛି ଜାଣି ପାରିଲି ନାହିଁ ।

ସ୍ୱାମୀ—ବ୍ରହ୍ମଚର୍ଯ୍ୟ କଣ ଜାଣ ନାହିଁ ? ମୂଳ କଥା ତ ବୁଝି ନାହିଁ, ଅନ୍ୟ କଣ ବୁଝିବ ? ବ୍ରହ୍ମଚର୍ଯ୍ୟର ଦୁଇଟା ଅର୍ଥ ଅଛି । ସେ କଥା ତ କହିଲେ ଗୋଟାଏ ପୋଥି ହେବ, ଅନ୍ୟ ଦିନେ କହିବା । ତମେମାନେ ସେ କଥା ଅଳ୍ପକରି ଜାଣିବା ଆବଶ୍ୟକ । ଯେଉଁମାନଙ୍କ ହାତରେ ସନ୍ତାନ ପାଳିବା, ସନ୍ତାନର ଚରିତ୍ର ଗଢ଼ିବା ଭାର ଅଛି, ସେମାନେ ମଣିଷ ଜୀବନର ଏହି ମୂଳମନ୍ତ୍ର ଜାଣିବା ନିତାନ୍ତ ଆବଶ୍ୟକ । ଭାରତ ବ୍ରହ୍ମଚର୍ଯ୍ୟ ବଳରେ ଦିନେ ପୃଥିବୀରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା, ଆଜି ସେହି ବଳ ହରାଇ ଭାରତ ଅତି ହୀନାବସ୍ଥାକୁ ଆସିଲାଣି ।

---

## ଏକବିଂଶ ପରିଚ୍ଛେଦ

ସ୍ତ୍ରୀ—ବ୍ରହ୍ମଚର୍ଯ୍ୟ କଥା କଣ କହିବ ବୋଲି କହିଥିଲ ପରା ?

ସ୍ୱାମୀ—ହଁ, ବ୍ରହ୍ମଚର୍ଯ୍ୟର ଦୁଇଟା ଅର୍ଥ ଅଛି । ପ୍ରଥମ ଅର୍ଥ ବ୍ରହ୍ମରେ ବିଚରଣ ଅର୍ଥାତ୍ ଭଗବାନଙ୍କଠାରେ ସଂପୂର୍ଣ୍ଣ ଭାବେ ଆତ୍ମସମର୍ପଣ । ମନୁଷ୍ୟ ସାଧନା ବଳରେ ଏହି ଶେଷ ଅବସ୍ଥା ଲାଭ କରେ; ଯେପରି ଶ୍ରୀରାଧା ଶ୍ରୀକୃଷ୍ଣଙ୍କଠାରେ ଆତ୍ମସମର୍ପଣ କରି

ଥିଲେ । ଅପଣାକୁ ଭଗବାନଙ୍କୁ ସମର୍ପଣ କରିଦେବ, ମୋର ବୋଲି କିଛି ନ ଥିବ; ଦେହ, ମନ, ପ୍ରାଣ ସବୁ ଭଗବାନଙ୍କୁ ଦେଇଦେବ; ଏହାକୁ ଅତ୍ମସମର୍ପଣ କହନ୍ତି । ବ୍ରହ୍ମଚର୍ଯ୍ୟର ଆଉ ଗୋଟିଏ ସାଧାରଣ ଅର୍ଥ ଅଛି; ଯଥା—ବୀର୍ଯ୍ୟଧାରଣମ୍ ବ୍ରହ୍ମଚର୍ଯ୍ୟମ୍, ଅର୍ଥାତ୍ ବୀର୍ଯ୍ୟଧାରଣ ।

ସ୍ତ୍ରୀ—ବୀର୍ଯ୍ୟ କଣ ?

ସ୍ୱା—ମନୁଷ୍ୟ ଦେହ ସପ୍ତଧାତୁ ଦ୍ୱାରା ନିର୍ମିତ, ଅର୍ଥାତ୍ ସାତଗୋଟି ଧାତୁରେ ଆମ ଦେହ ଗଢ଼ା ହୋଇଛି । ସେ ସାତ ଧାତୁ କଣ ? ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ର ।

ସ୍ତ୍ରୀ—ଏ ସବୁ ଜିନିଷ କେଉଁଠୁ ଆସେ ?

ସ୍ୱା—ଆମ୍ଭେମାନେ ଯେଉଁ ପଦାର୍ଥ ଖାଉଁ ସେଥିରୁ ଏ ସାତ ଧାତୁ ଜାତ ହୁଏ । ଆମେ ଯାହା ଖାଉଁ ତାହା ପାଞ୍ଚ ଦିନରେ ପରିପାକ ହୋଇ ରସ ହୁଏ । ସେହି ରସ ପାଞ୍ଚ ଦିନରେ ରକ୍ତ ହୁଏ । ସେହି ରକ୍ତ ପାଞ୍ଚଦିନରେ ମାଂସ ହୁଏ । ସେହି ମାଂସ ପାଞ୍ଚ ଦିନରେ ମେଦ ହୁଏ । ସେହି ମେଦ ପାଞ୍ଚ ଦିନରେ ଅସ୍ଥି ହୁଏ । ଅସ୍ଥି ପାଞ୍ଚ ଦିନରେ ମଜ୍ଜା ହୁଏ । ମଜ୍ଜା ପାଞ୍ଚ ଦିନରେ ଶୁକ୍ର ହୁଏ । ଆମେ ଆଜି ଯେଉଁ ଜିନିଷ ଭୋଜନ କରିବା, ମାସେ ପାଞ୍ଚଦିନ ବା ପଞ୍ଚତ୍ରିଂଶ ଦିନରେ ଶୁକ୍ରରେ ପରିଣତ ହେବ । ଶୁକ୍ର ଅନ୍ୟ ଛ ଅବସ୍ଥା ପାର ହୋଇ ତିଆରି ହୁଏ । ଖାଦ୍ୟ-ଦ୍ରବ୍ୟର ସର୍ବୋତ୍କୃଷ୍ଟ ସାର ଅବସ୍ଥା ଶୁକ୍ର । ଏହା ଅତି ସାର ସୂକ୍ଷ୍ମ ପଦାର୍ଥ । ଅଧସେର ରକ୍ତରୁ ଏକ ବିନ୍ଦୁ ଶୁକ୍ର ବିଶୁଦ୍ଧ ଭାବରେ ଜାତ ହୁଏ । ଏହି ଶୁକ୍ରକୁ ବୀର୍ଯ୍ୟ କହନ୍ତି । ଏହି ଶୁକ୍ର ଶରୀରରେ ଯେତେ ଅଧିକ ପରିମାଣରେ ରହିବ, ମନୁଷ୍ୟ ସେତେ ସୁସ୍ଥ, ସବଳ, ବୁଦ୍ଧିମାନ ଓ ଜ୍ଞାନବାନ୍ ହେବ । ଏହା ଜୀବର

ଜୀବନଶକ୍ତି ଓ ପ୍ରାଣର ଅବଲମ୍ବନ । ମନୁଷ୍ୟର ତେଜ, କାନ୍ତି, ଶୋଭା, ସୌନ୍ଦର୍ଯ୍ୟ, ଲାବଣ୍ୟ, ଶକ୍ତି, ସାମର୍ଥ୍ୟ, ଉଦ୍ୟମ, ଉତ୍ସାହ, ସ୍ମରଣଶକ୍ତି; ପ୍ରଭୃତି; ଯାହା କିଛି ମନୁଷ୍ୟର ମୂଲ୍ୟବାନ ବସ୍ତୁ ଅଛି, ସେ ସମସ୍ତର ମୂଳଦୁଆ ହେଉଛି ଶୁକ୍ର । ସୁତରାଂ ଶୁକ୍ର ମନୁଷ୍ୟ ଜୀବନର କେଡ଼େ ଅମୂଲ୍ୟ ବସ୍ତୁ ତାହା ସହଜରେ ଜାଣିପାରିବ । ଶାସ୍ତ୍ର କହୁଛି, "ମରଣଂ ବିନ୍ଦୁ ପାତେନଂ ଜୀବନଂ ବିନ୍ଦୁ ଧାରଣାତ୍" ଅର୍ଥାତ୍ ଶୁକ୍ର କ୍ଷୟ ହେଲେ ମନୁଷ୍ୟର ଜୀବନ କ୍ଷୟ ହୁଏ, ମାତ୍ର ଶୁକ୍ର କ୍ଷୟ ନ ହୋଇ ଶରୀର ମଧ୍ୟରେ ରହିଲେ ଜୀବନ ରକ୍ଷା ହୁଏ । ସ୍ୱୟଂ ମହାଦେବ କହିଛନ୍ତି :—

ନ ତପସ୍ତପ ଇତ୍ୟାହୁ ବ୍ରହ୍ମଚର୍ଯ୍ୟଂ ତପୋତ୍ତମମ୍,
ଊର୍ଦ୍ଧ୍ୱରେତା ଭବେତ୍ ଯସ୍ତୁ ସ ଦେବୋ ନତୁ ମାନବଃ ।

ବ୍ରହ୍ମଚର୍ଯ୍ୟ ଉତ୍ତମ ତପସ୍ୟା, ଅନ୍ୟ ତପସ୍ୟା କିଛି ନୁହେ । ଯେ ଊର୍ଦ୍ଧ୍ୱରେତା, ଅର୍ଥାତ୍ ଯେ ଶୁକ୍ର କ୍ଷୟ କରୁ ନାହିଁ; ସେ ମନୁଷ୍ୟ ନୁହେଁ, ଦେବତା । ଶୁକ୍ରରେ କୋଟିଏ ବଜ୍ରଶକ୍ତି ଅଛି । ଯେ ପ୍ରକୃତ ବ୍ରହ୍ମଚାରୀ ତା ନିକଟରେ ଦୈବ ଶକ୍ତି ହାରିଯାଏ ।

**ସ୍ତ୍ରୀ**—ଆଚ୍ଛା ଶୁକ୍ର ରକ୍ଷା କଲେ ଫଳ କଣ ହେବ ?

**ସ୍ୱାମୀ**—ଯେ ଶୁକ୍ର ରକ୍ଷା କରେ, ତାର ଦେହ ଶୁକ୍ରରୁ ଆଉ ଗୋଟିଏ ଧାତୁ ଉତ୍ପନ୍ନ ହୁଏ । ଏହି ଅଷ୍ଟମ ଧାତୁକୁ ଓଜ ବା ବ୍ରହ୍ମତେଜ କୁହାଯାଏ । ଏହି ବ୍ରହ୍ମତେଜ ମସ୍ତିଷ୍କ ମଧ୍ୟରେ ସଞ୍ଚିତ ହେଲେ ମନୁଷ୍ୟ ମାନବଶ୍ରେଷ୍ଠ ହୁଏ । ଏହାର ଶକ୍ତି ଚୁମ୍ବକ ତୁଲ୍ୟ । ଚୁମ୍ବକ ଯେପରି ଲୁହାକୁ ଟାଣି ଆଣେ, ସେହିପରି ଯେଉଁ ଲୋକ ମସ୍ତିଷ୍କରେ ଏହି ଓଜରୂପକ ଚୁମ୍ବକ ଅଛି, ତା ପାଖରେ ସମସ୍ତେ ନତମସ୍ତକ ହୁଅନ୍ତି, ହିଂସ୍ରଜନ୍ତୁମାନେ ମଧ୍ୟ ତା

ପାଖରେ ଅହଂସ୍ର ହୋଇପାନ୍ତି । ଯାହା ମସ୍ତିଷ୍କରେ ଏହ ଓଜ ଧାତୁ ବା ବ୍ରହ୍ମତେଜ ଯେତେ ବେଶୀ, ତାର ଶକ୍ତି ତେତେ ବେଶୀ । ଯାହାଠାରେ ବ୍ରହ୍ମତେଜ ଅଛି, ସେ ତନ୍ତକାଳ କଥା ଜାଣିପାରେ । ଯେ ଶରୀର ମଧ୍ୟରେ ଶୁକ୍ର ରଖି ପାରନ୍ତି, ତାର ଶିର ପ୍ରଦେଶ ଲକ୍ଷାପର ଝାଣ ହୁଏ । ସେହ ଶୁକ୍ର ମସ୍ତିଷ୍କକୁ ଯାଇ ତାକୁ ପରପୁଷ୍ଟ କରେ ଏବଂ ଏହାଦ୍ୱାରା ମାନସିକ ଶକ୍ତି ଅନନ୍ତ, ଅସୀମ, ଅସାଧାରଣ ହୁଏ । ଯେ ବୀର୍ଯ୍ୟବାନ୍ ସେ ଆନନ୍ଦମୟ । ବୀର୍ଯ୍ୟ ଘନୀଭୂତ ଆନନ୍ଦ, ଅର୍ଥାତ୍ ଯେଉଁ ଯୁବକ ବୀର୍ଯ୍ୟବାନ ତାର ମନ ସର୍ବଦା ପ୍ରଫୁଲ୍ଲ ଏବଂ ସେ ସର୍ବଦା ଆନନ୍ଦ-ସାଗରରେ ବୁଡ଼ି ଥାଏ । ତା ହୃଦୟରେ ଆଶା, ଉଦ୍ୟମ, ଉତ୍ସାହ ଶତ ପ୍ରକାରେ ଫୁଟି ବାହାରେ ଏବଂ ସେ ଭଗବାନଙ୍କ ବ୍ୟତୀତ ଅନ୍ୟ କୌଣସି ଲୋକଙ୍କୁ ଡରେ ନାହିଁ । ତାର ଶରୀର ସୁସ୍ଥ, ସବଳ, ନୀରୋଗ ଏବଂ ସେ ଶୀତ ବର୍ଷା ସହିପାରେ । ତା ମୁଖମଣ୍ଡଳ ଲାବଣ୍ୟମୟ, ସୁନ୍ଦର, ଶ୍ରୀପୂର୍ଣ୍ଣ । ତା କଣ୍ଠସ୍ୱରର ମାଧୁର୍ଯ୍ୟ ଅକଥନୀୟ । ତାର କଥା ସୁନ୍ଦର, କାର୍ଯ୍ୟ ସୁନ୍ଦର ସୁଶୃଙ୍ଖଳ, ଆଚରଣ ଶିଷ୍ଟ, ଶାନ୍ତ । ତା ଅନ୍ତଃକରଣରେ ଭୟ ନାହିଁ । ତାଠାରେ ଆଳସ୍ୟ ନାହିଁ । ସେ କପଟୀ ନୁହେଁ । ସେ ଚରିତ୍ରବାନ, ସତ୍ୟପରାୟଣ, ଅଳ୍ପଭାଷୀ, ମିତାହାରୀ, ଲୋକ-ହିତକାରୀ । ତାର ଦୃଷ୍ଟି ମଧୁମୟ, ତାର କଥା ମଧୁମୟ, ତାର ହାସ୍ୟ ମଧୁମୟ । ତାକୁ ଦେଖିଲେ ଲୋକ ମୋହିତ ହେବ । ମୋଟାମୋଟି ଜାଣ ଯେ, ଶୁକ୍ର ବା ବୀର୍ଯ୍ୟ ଶରୀରର ଅମୃତ । ଦେବତାମାନେ ଅମୃତ ପାନ କରି ଅମର ହୁଅନ୍ତି ବୋଲି ପୁରାଣରେ ଶୁଣିଛ । ମନୁଷ୍ୟ ପକ୍ଷରେ ଏହି ଶୁକ୍ରଧାରଣ ଅମୃତ ପାନ ସଙ୍ଗେ ସମାନ । ଏହା ବଳରେ ଲୋକ ଭଗବାନଙ୍କ

ଦର୍ଶନ ଲାଭକରେ । ତାର ଜନ୍ମ ମୃତ୍ୟୁ ବନ୍ଧନ ନଷ୍ଟ ହୁଏ । ସୁତରାଂ କେଉଁ 'ମା ବାପ ଅପଣା ପୁଅ ଝିଅଗୁଡ଼ିଙ୍କ ଏହିପରି ଦେବ ଦେବୀ ପରି ଦେଖିବାକୁ ଇଚ୍ଛା ନ କରିବେ ? ତୁମେ ଏ କଥା ଶୁଣି ତୁମ ମନ କଣ ହେଉଛି ଭଲ ସତ କରି କହିଲ ?

ସ୍ତ୍ରୀ—କେଉଁ ମା ବାପ ଏ କଥା ଇଚ୍ଛା ନ କରିବେ ମ ? ମୁଁ କଣ ଦୁନିଆରୁ ବାହାର ? ସବୁବେଳେ ତ ପିଲାଟିମାନଙ୍କ ଧନସୁଖ ଲାଗି ଦିଅଁ ଦେବତାଙ୍କୁ ଜଣାଉ ଜଣାଉ ଦିନ ସରୁ ନାହିଁ ।

ସ୍ବାମୀ—ଆମ ଦେଶ ମାଇପେ ଏ କଥାଟି ବେଶ୍ ଜାଣନ୍ତି । ରୋଗର ନିଦାନ ନ ବୁଝି ଔଷଧ ବାଛୁଥାନ୍ତି । ରୋଗ କାହିଁକି ହେଲା କାରଣ ବୁଝି, ପୁନର୍ବାର ସେ କାରଣ ଯେପରି ନ ହେବ ତା କର । କେବଳ ଦିଅଁଙ୍କୁ ଡାକିଲେ କଣ ହେବ ? ଦିଅଁ ତ ମନୁଷ୍ୟ ଶରୀରରେ ଅମୃତ-ଅକ୍ଷୟ-କବଚ ରଖି ଦେଇଛନ୍ତି । ଶୁକ୍ର ସେହି ଅମୃତ ଅକ୍ଷୟ କବଚ । ସେ କବଚ ଯେତେଦିନ ଦେହରେ ଥିବ, ତେତେଦିନ ମନୁଷ୍ୟ ନୀରୋଗ । ସେଥିରୁ ହେଲେ କିଛି କିଛି ପକାଇ ଦେବ କିମ୍ବା କୋଟିକଯାକ କବଚ ପକାଇଦେବ, ତେବେ ରୋଗ ଧରିବ, ଶେଷରେ ପ୍ରାଣ ନେବ । ରକ୍ଷା କରିବା ବା ରକ୍ଷା ନ କରିବା ମନୁଷ୍ୟର ନିଜ ହାତରେ ଅଛି । ଭଗବାନ ଅମୃତ ଦେଇଛନ୍ତି, ଆମେ ଗୋଇଠା ମାରି ତାକୁ ପକାଇ ଦେଲେ ତାହାର ଫଳ ଭୋଗ କରିବା, ଆଉ ଦିଅଁ କଣ କରିବେ ? ପିଲାଙ୍କୁ ପିଲାଦିନୁ ଶିକ୍ଷା ଦେଲେ ସେମାନେ ଉପଯୁକ୍ତ ହେବେ ?

ସ୍ତ୍ରୀ—ଅଳ୍ପ ଶୁକ୍ରକ୍ଷୟ ହେଲେ କଣ ଫଳ ହୁଏ ?

ସ୍ତ୍ରୀ—ଶୁକ୍ରକ୍ଷୟ ଦ୍ୱାରା ଯେ ଫଳ ହୁଏ, ତାହା ଭାଷାରେ କହି ହେବ ନାହିଁ। ଶରୀର ତା ବ୍ୟତୀତ ରୋଗର ଘର ହୁଏ। ତେଲ ପୂର୍ଣ୍ଣ ଥାଇ ଦୀପ ଜଳୁଥାଏ, ତେଲ ସରିଗଲେ ଦୀପର ଯେ ଅବସ୍ଥା ହୁଏ, ଶୁକ୍ରକ୍ଷୟ ହେଲେ ମନୁଷ୍ୟର ସେହି ଅବସ୍ଥା ହୁଏ। ପୋଖରୀରୁ ପାଣି ଶୁଖିଗଲେ ମାଛର ଅବସ୍ଥା ଯାହା, ତାର ସେହି ଅବସ୍ଥା ହୁଏ। ଶୁକ୍ରକ୍ଷୟ ମୃତ୍ୟୁ ଅପେକ୍ଷା ଅଧିକ ଭୀଷଣ, ଭୟଙ୍କର। ଆତ୍ମହତ୍ୟା ଯେଉଁମାନେ କରନ୍ତି ସେମାନଙ୍କ ପ୍ରାଣ ଦଣ୍ଡକେ ବାହାରିଯାଏ; କିନ୍ତୁ ଶୁକ୍ରକ୍ଷୟ କଲେ ସାରା ଜୀବନ ପ୍ରତି ମୁହୂର୍ତ୍ତରେ ଆତ୍ମହତ୍ୟା ଭଳି ଯନ୍ତ୍ରଣା ଭୋଗ କରୁଥାଏ। ସବୁ ରୋଗମାନେ ତା ଶରୀରରେ ବସା କରନ୍ତି। ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, କୋଷ୍ଠବଦ୍ଧ, ଅମ୍ଳ, ବହୁମୂତ୍ର, ରାଜଯକ୍ଷ୍ମା, ଆମବାତ, ମେହ, ପ୍ରମେହ, ଉପଦଂଶ ଇତ୍ୟାଦି ରୋଗମାନ ଆସି ଦେହ ଶୂନ୍ୟ-ମନ୍ଦିରରେ ବାସ କରନ୍ତି। ତାର ମୁଖମଣ୍ଡଳ ମ୍ଳାନ, ଶରୀର ଜୀର୍ଣ୍ଣ ଶୀର୍ଣ୍ଣ ହୋଇଯାଏ। ତାର କୌଣସି କାର୍ଯ୍ୟରେ ଉଦ୍ୟମ, ଉତ୍ସାହ ନ ଥାଏ। ସର୍ବଦା ଆଳସ୍ୟପରିପୂର୍ଣ୍ଣ ହୁଏ; ଆଖି ଗାଡ଼େ ଗାଡ଼େ ପଶିଯାଏ, ଗାଲହାଡ଼ ବାହାରି ପଡ଼େ, କଣ୍ଠସ୍ୱର କ୍ଷୀଣ ଓ କଠିନ ହୁଏ। ମୋଟାମୋଟି କହିଲେ, ମହୁଫେଣାରୁ ମହୁ ଚିପୁଡ଼ି ନେଲେ ଖାଲି ଫେଣା ଯେପରି ପଡ଼ିଥାଏ, ଶୁକ୍ରକ୍ଷୟ କଲେ ଶରୀର ସେହିପରି ହୋଇ ଯାଏ। ଦେବତା ନରକ କୀଟରେ ପରିଣତ ହୁଏ। ପ୍ରତ୍ୟେକ ସ୍ତ୍ରୀ ଓ ପୁରୁଷ ଟିକିଏ ଧ୍ୟାନ ଦେଲେ ପ୍ରତିଦିନ ଅନୁଭବ କରି ପାରିବେ। ଏଥିଲାଗି ବେଶୀ କିଛି ଆବଶ୍ୟକ ନାହିଁ। କୌଣସି କାରଣରୁ ଶୁକ୍ରକ୍ଷୟ ହେଲେ ସେହି ମୁହୂର୍ତ୍ତରେ ଅନୁଭବ କରି ପାରିବ।

ସ୍ତ୍ରୀ—ବୀର୍ଯ୍ୟ ଫଳାଫଳ ତ କହିଲ । ଅଳ୍ପ କି କି କାରଣରୁ ଶୁକ୍ର କ୍ଷୟ ହୁଏ, କହିଲ ?

ସ୍ୱା—ଏଥିର ଅନେକ କାରଣ ଅଛି । ଯେତେ କାରଣ ଅଛି, ତାକୁ ଦୁଇ ଭାଗରେ ବିଭକ୍ତ କରି ଯାଇପାରେ (୧) ଶାରୀରିକ କାରଣ, (୨) ମାନସିକ କାରଣ ।

ଶାରୀରିକ କାରଣ, ଯଥା—(୧) ଅପରିମିତ ଆହାର ଅର୍ଥାତ୍ ପରିମାଣର ଠିକଣା ନ ଥିବ, ଭଲ ଜିନିଷ ମିଳିଲେ ତ କଣ୍ଠୟାଏ ଖାଇ ଦେବ, କେତେବେଳେ ଅଧପେଟେ ଖାଇବ ଏହିପରି (୨) ଅସମୟରେ ଆହାର (୩) ଉତ୍ତେଜକ ଦ୍ରବ୍ୟ ଭକ୍ଷଣ (୪) ବାସି ପଚା ସଢ଼ା ଜିନିଷ ଖାଇବା (୫) ଆହାର ବେଳେ ମନରେ ଘୃଣା କରିବା (୬) ଅନିଦ୍ରା (୭) ଅତିନିଦ୍ରା (୮) ଦିବାନିଦ୍ରା (୯) ରାତିରେ ଚେଇଁ ରହିବା (୧୦) ଅସମୟରେ ଶୋଇବା (୧୧) ରାତି ଶେଷ ପ୍ରହରରେ ଶୋଇବା (୧୨) ତାହା ସହିତ ଏକ ଶଯ୍ୟାରେ ଶୟନ (୧୩) ଶାରୀରିକ ପରିଶ୍ରମ ଆଦୌ ନ କରିବା (୧୪) ଅଧିକ ପରିଶ୍ରମ ବା ବ୍ୟାୟାମ କରିବା (୧୫) ମଳ ମୂତ୍ରର ବେଗ ଥାଇ ବ୍ୟାୟାମ କରିବା (୧୬) ଅସମୟରେ ବ୍ୟାୟାମ କରିବା (୧୭) ଅନିୟମିତ ବ୍ୟାୟାମ କରିବା (୧୮) ଆହାର ପରେ ବ୍ୟାୟାମ ବା ପରିଶ୍ରମ କରିବା (୧୯) ମାଦକ ଦ୍ରବ୍ୟ ସେବନ କରିବା, ଯଥା,—ପାନ, ତମାଖୁ, ଗଞ୍ଜେଇ, ଅଫିମ, ମଦ, ଗୁ, ଚିରୁଟ, କାଫି, ଜର୍ଦ୍ଦା ଇତ୍ୟାଦି (୨୦) ବେଶଭୂଷା, ବିଳାସିତା ଓ ବାବୁଗିରି (୨୧) ପଶା, ତାସ ପ୍ରଭୃତି ଖେଳରେ ରତ ହେବା (୨୨) ଯୁବକ ଦଳ ବା ଯୁବତୀ ଦଳ ଏକାଠି ବସି ହସ, ଖେଳ, କୌତୁକ ପ୍ରଭୃତିରେ ମଗ୍ନ ହେବା (୨୩) ବାଳକ, ବାଳିକା, ସ୍ତ୍ରୀ ଲୋକ-

ମାନଙ୍କ ଅଙ୍ଗ ସ୍ପର୍ଶନ (୨୪) ବାହାସଙ୍ଗେ ହାତ ଧରାଧରି ହୋଇ ବା ବେକରେ ହାତ ପକାପକି ହୋଇ ଭ୍ରମଣ କରିବା (୨୫) ବିନା ପ୍ରୟୋଜନରେ ଯେଉଁ ସେଠି ବୁଲିବା (୨୬) କାହା ଅଡ଼କୁ ଚାହିଁ ଇଙ୍ଗିତ ମୁଖଭଙ୍ଗି, ଅଙ୍ଗଭଙ୍ଗି ପ୍ରଭୃତି ଦେଖାଇବା (୨୭) ବିନା କାରଣରେ ସ୍ତ୍ରୀଲୋକ ପ୍ରକୃତିଙ୍କ ମୁଖକୁ ଚାହିଁବା (୨୮) କୌପିନ ନ ପିନ୍ଧିବା (୨୯) ଖରାପ ଚିତ୍ର ଦେଖିବା (୩୦) ଖରାପ ଉପନ୍ୟାସ ପଢ଼ିବା, ଖରାପ କାର୍ଯ୍ୟ ଦେଖିବା ଇତ୍ୟାଦି ।

ମାନସିକ ଓ ବାଚିକ କାରଣ—

୧ କୁସଙ୍ଗ—ଅର୍ଥାତ ମିଥ୍ୟାବାଦୀ, ଚୋର, ବଦମାସ, ଗୁଣ୍ଡା, ମଦୁଆ, ବିଳାସୀ, କୁମନ୍ତ୍ରଣାକାରୀ, ନାସ୍ତିକ, ଇନ୍ଦ୍ରିୟପରାୟଣ, ବେଶ୍ୟାସକ୍ତ ଲୋକମାନଙ୍କ ସଙ୍ଗେ ବସିବା, ଆଳାପ କରିବା, ମିଳା ମିଶା କରିବା ।

୨ କୁଚିନ୍ତା—ମନ୍ଦ ବିଷୟ ଚିନ୍ତା କରିବା, ଭାବିବା, କଳ୍ପନା କରିବା, ହିଂସା ଓ କ୍ରୋଧପରବଶ ହୋଇ କାହାର ଅନିଷ୍ଟ ଚିନ୍ତା କରିବା, ବାବୁଗିରି ଓ ବିଳାସ ବାସନା, ଅକାରଣ ଅପ୍ରୟୋଜନ ଚିନ୍ତା କରିବା ।

୩ କଦାଳାପ—ବାଳକ, ବାଳିକା, ସ୍ତ୍ରୀ ଲୋକ, ଗୁରୁଜନମାନଙ୍କ ସମ୍ବନ୍ଧେ ସମାଲୋଚନା, ମନ୍ଦ ବିଷୟରେ ଚିନ୍ତା ଓ ଆଲୋଚନା, ଭଗବାନଙ୍କ ବିରୋଧ ବିଷୟର ଆଲୋଚନା, ବୃଥା ତର୍କ ବିତର୍କ ଓ ଆଲୋଚନା, ବହୁତ କଥା କହିବା, ହସିବା, ଥଟ୍ଟା କରିବା, ତାମସା କରିବା, ଗାଳି ମନ୍ଦ ଦେବା ।

୪ କୁଗ୍ରନ୍ଥପାଠ—ନାଟକ, ନଭେଲ୍ ବା ଉପନ୍ୟାସ । ଯେଉଁ ଗ୍ରନ୍ଥରେ ସ୍ତ୍ରୀ ଲୋକମାନଙ୍କ ହାବଭାବ, ରୂପଲାବଣ୍ୟ ବିଷୟ

ବର୍ଣ୍ଣିତ ଅଛି, ଭଗବାନଙ୍କ ବିରୋଧପୂର୍ଣ୍ଣ ପୁସ୍ତକ, ଅଶ୍ଳୀଳ ଗ୍ରନ୍ଥ ପାଠ, ରାଧାକୃଷ୍ଣ ତତ୍ତ୍ୱ ନ ବୁଝି ଉକ୍ତଲୀଳା ବିଷୟକ ପୁସ୍ତକ ପାଠ, ଇଂରେଜୀ ନାଟକ, ନଭେଲ୍ ପାଠ ଇତ୍ୟାଦି ।

୫ କୁଚିତ୍ର ଦର୍ଶନ—ବାୟୁସ୍କୋପ, ଥିଏଟର, ଦେବାଳୟ ପ୍ରଭୃତିରେ ମନ୍ଦ ଚିତ୍ର ଦର୍ଶନ ।

୬ କୁସଙ୍ଗୀତ—ଆଦିରସ ଘଟିତ ସଙ୍ଗୀତ ଗାଇବା ଶୁଣିବା ଇତ୍ୟାଦି ।

ମୋଟାମୋଟି କଥାରେ, ଯେଉଁ କଥାରେ ଶରୀର, ମନ ଓ ବଚନ ସ୍ଥିର ନ ହୋଇ ଚଞ୍ଚଳ ହେବ, ସେ କଥା ତ୍ୟାଗ କରିବ । ଶରୀର, ମନ, ବଚନ ସ୍ଥିର ରହିଲେ, ଶୁକ୍ର ସ୍ଥିର ହେବ । ମାତ୍ର ଏମାନେ ଚଞ୍ଚଳ ହେଲେ ଶୁକ୍ର ତରଳ, ଚଞ୍ଚଳ ହୋଇଯିବ । ଫଳରେ ବ୍ରହ୍ମଚର୍ଯ୍ୟ ନଷ୍ଟ ହେବ । ଉପରେ ଯେ ସବୁ ବିଷୟ ନିଷେଧ କରାଗଲା, ସେଥି ମଧ୍ୟରୁ କେତେକ ବିଷୟରେ ଶିକ୍ଷା କରିବାର ବିଷୟ ଅଛି । ଥିଏଟର ବା ନାଟକାଭିନୟ ଦେଖିଲେ କେତେ ବିଷୟ ଶିଖି ପାରିବ, ମାତ୍ର ଅନିଷ୍ଟର ଆଶଙ୍କା ଅଛି, ସୁତରାଂ ସେ ସବୁ ତ୍ୟାଗ କରିବା ଶ୍ରେୟସ୍କର । ମନୁଷ୍ୟର ପ୍ରକୃତି ଏପରି ଯେ, ମନ୍ଦଟା ମନ ଅତି ଚଞ୍ଚଳ ଗ୍ରହିପାଏ, ଭଲଅଡ଼େ ଯିବାପାଇଁ କଷ୍ଟ ମନେ କରେ । ପାପ ପଥର ଗୋଟାଏ ସ୍ୱାଭାବିକ ମୋହିନୀଶକ୍ତି ଅଛି । ସେ ମନୁଷ୍ୟ ମନକୁ ଶୀଘ୍ର ଟାଣି ନେଇଯାଏ । ସୁତରାଂ ସାବଧାନ ହୋଇ ସେ ପଥ ଏକାବେଳକେ ତ୍ୟାଗ କରିବା ଉଚିତ । ଅନେକ ଯୁବକ ଯୁବତୀମାନେ ଏ କଥା ଶୁଣିଲେ ବିରକ୍ତ ହେବେ, ମାତ୍ର ଉପରେ ଯେତେ ବିଷୟ ଉଲ୍ଲେଖିତ ହେଲା ବୋଲି ଲେଖା ଯାଇଛି, ତହିଁରୁ ଅଧିକାଂଶ କାରଣ ହେଉଛି ସ୍ୱପ୍ନଦୋଷ ମୂଳ । ସ୍ୱପ୍ନଦୋଷର

ଗୋଟିଏ ଜଟିଳ ରୋଗ । ଏହି ରୋଗରେ ସୁନ୍ଦର ଯୁବକ କୁତ୍ସିତ ହୋଇଯାଏ ।

ସ୍ତ୍ରୀ—ଯେଉଁ ଯେଉଁ କାରଣରୁ ଶୁକ୍ର ନଷ୍ଟ ହୁଏ, ସେ କଥା ତ କହିଲ, କିନ୍ତୁ କଣ କଲେ ବ୍ରହ୍ମଚର୍ଯ୍ୟ ରକ୍ଷା ହେବ, ସେ କଥା ତ କହିଲ ନାହିଁ । ଯୁବକ ଯୁବତୀମାନେ କି ନିୟମରେ ଚଳିଲେ ବ୍ରହ୍ମଚାରୀ ବ୍ରହ୍ମଚାରିଣୀ ହୋଇ ପାରିବେ, କହିଲ ?

ସ୍ୱାମୀ—ଆଚ୍ଛା ସେ କଥା କିଛି କହୁଛି ଶୁଣ । ଯୁବକ ଯୁବତୀମାନେ ହୁସିଅର ହେଲା ମାତ୍ରକେ ବ୍ରହ୍ମଚର୍ଯ୍ୟ ବ୍ରତ କରିବାପାଇଁ ଦୃଢ଼ ସଂକଳ୍ପ କରିବେ । ଆମର କହନ୍ତି ନାହିଁ, ଅମୁକ ଲୋକ ଅମୁକ କଥା ମାନସିକ କରି ଉପାସ କି ବ୍ରତ କରୁଛି । ଉପାସ ବ୍ରତ କଲେ ଅନେକଗୁଡ଼ିଏ ବିଷୟ ପାଳନ କରାଯାଏ । ତମେ ତ କେତେ ଉପାସ କର, ଏ କଥା ତ ଜାଣିଥିବ । ସେହିପରି ବ୍ରହ୍ମଚର୍ଯ୍ୟ ରକ୍ଷା କରିବାପାଇଁ ମାନସିକ କରି ସେ ବ୍ରତ ଆଚରଣ କରିବ । ମାନସିକ କରି ଲୋକେ କେତେ କାଷ୍ଟ ନିର୍ଜଳା ଉପବାସ ପ୍ରଭୃତି କରନ୍ତି । ସେହିପରି ଜୀବନରେ ବ୍ରହ୍ମଚର୍ଯ୍ୟ ରକ୍ଷା ପାଇଁ ମାନସିକ କଲେ ନିଷ୍ଟେ କରି ପାରିବ, ଏଥିରେ ତ ଏପରି କିଛି ଅସମ୍ଭବ ବ୍ୟାପାର ନାହିଁ । ନିୟମ ପାଳିବା ନ ପାଳିବା ନିଜ ହାତ କଥା । କି କି ନିୟମ ପାଳିବାକୁ ହେବ ନିମ୍ନରେ କୁହା ଯାଉଛି ଶୁଣ—

୧—ମାଛ, ମାଂସ, ଡିମ୍ବ, ପିଆଜ, ରସୁଣ ଆଦି ଉତ୍ତେଜକ ପଦାର୍ଥ ଖାଇବ ନାହିଁ । ବଜାରରେ ତିଆରି ହୋଇ ବିକ୍ରୀ ହେଉଥିବା ଖାଦ୍ୟ ପଦାର୍ଥ ଖାଇବ ନାହିଁ । ମାଛ ଖାଇବାର ନିତାନ୍ତ କୌଣସି ଆବଶ୍ୟକ ପଡ଼ିଲେ ଅତି ଅଳ୍ପ ପରିମାଣରେ ଖାଇବ, ମାତ୍ର ଅଭ୍ୟାସ କରି ପ୍ରତିଦିନ ଖାଇବ ନାହିଁ । ନିମନ୍ତ୍ରିତ ହୋଇ

ଅନ୍ୟ ଘରକୁ ଖାଇବାକୁ ଯିବ ନାହିଁ । ଯେଉଁମାନେ ଇଚ୍ଛାକରି ବ୍ରହ୍ମଚର୍ଯ୍ୟ ରକ୍ଷା କରନ୍ତି, ସେମାନଙ୍କ ପକ୍ଷରେ କେବଳ ଡାଲି ଭାତ ଖାଇଲେ ଶରୀର ହୃଷ୍ଟପୁଷ୍ଟ ଓ ସବଳ ହେବ । ବିଧବା ବ୍ରାହ୍ମଣୀମାନେ ବ୍ରହ୍ମଚାରିଣୀ ହୋଇ ସେମାନେ ଓଳିଏ ହବିଷ୍ୟ ଖାଇ ପୁଷ୍ଟ ସବଳକାୟ ଥାଆନ୍ତି । ବାଳକ ବାଳିକା ଦୁର୍ବଳ ଶରୀର ହେଲେ ବାପ ମା, ଶିକ୍ଷକ ଓ ମୁରବି ଲୋକେ କହନ୍ତି ଯେ, ଭଲ ଖାଇବାକୁ ନ ମିଳିବାରୁ ପିଲାର ଅଣ୍ଟା ମୋଡ଼ି ହୋଇଯାଉଛି, ମାତ୍ର ସେମାନେ ଅସଲ ଭିତର କାରଣକୁ ଦୃଷ୍ଟି ଦିଅନ୍ତି ନାହିଁ । କେତେବେଳେ ହେଲେ ଅକଣ୍ଠ ଭୋଜନ କରିବ ନାହିଁ । ପେଟକୁ ଷୋଳଭାଗ କଲେ ଅଠପଣ ଖାଦ୍ୟ ଚୂରିପଣ ପାଣି, ବାକି ଚୂରିପଣ ପବନ ଯିବା ଆସିବା ପାଇଁ ସ୍ଥାନ ରଖିବ । କଥା ଅଛି "ଊଣା ଭାତରେ ଦୁଗୁଣା ବଳ, ଭରିପେଟ ରସାତଳ ।"

୭—ଏକାଦଶୀ, ଅମାବାସ୍ୟା, ପୂର୍ଣ୍ଣିମା ଓ ଅନ୍ୟାନ୍ୟ ବିଶିଷ୍ଟ ଦିନମାନଙ୍କରେ ଉପବାସ କରିବ । ଯେଉଁମାନେ ପୂର୍ଣ୍ଣ ଅନାହାରରେ ରହି ନ ପାରିବେ, ସେମାନେ ଲଘୁ ଆହାର କରିବେ । ଲଘୁ ଆହାର ମଧ୍ୟରେ ଦୁଧ, ଫଳ, ଲିଆ, ରୁଟି ପ୍ରଭୃତି ଅଳ୍ପ ଆହାର କରିବ ।

୮—ଯାବତୀୟ ବିଳାସ ଦ୍ରବ୍ୟ ଯତ୍ନପୂର୍ବକ ଛାଡ଼ିବ । ଆମର ଗୋଟାଏ କଥା ଅଛି, "ଖେଚା ଖାଇ ମୋଟା ପିନ୍ଧି କର ଭଜନା ।" ଜୀବନଧାରଣ କରିବାପାଇଁ ସାଧାରଣ ଭାବରେ ଯାହା କିଛି ଅବଶ୍ୟକ, ତାହା ଛଡ଼ା ଅତିରିକ୍ତ ଜିନିଷ ବିଳାସିତା । ଶରୀର ରକ୍ଷାପାଇଁ ଡାଲିଭାତ, ଦହିଦୁଧ, ଲୁଗା, ଖଣ୍ଡେ ଅଧେ ଜାମା ଚାଦର, ଖଣ୍ଡେ ଅଧେ ପତଳା ଶେଯ ଇତ୍ୟାଦି । କେବଳ କାମ

ଚଳିବା ମାତ୍ରିକେ ଏ ସବୁ ବ୍ୟବହାର କରିବ । ହାତେ ଉଚ୍ଚ ଖଟ ଉପରେ ଶୋଇବା, ସୁବାସିତ ବହୁମୂଲ୍ୟ ପାଟ ପ୍ରଭୃତି ବସ୍ତ୍ର ବ୍ୟବହାର, ସୁବାସିତ ତୈଳ ବ୍ୟବହାର ଇତ୍ୟାଦି ବିଳାସ ମଧ୍ୟରେ ଯିବ, ଏ ସବୁ ତ୍ୟାଗ କରିବ ।

୪—ମାଦକଦ୍ରବ୍ୟ ସେବନ କରିବ ନାହିଁ । ମାଦକଦ୍ରବ୍ୟ ମଧ୍ୟରେ ଭଙ୍ଗ, ଗଞ୍ଜେଇ, ଅଫିମ, ଚା, କଫି, କୋକେନ, ବିଡ଼ି, ସିଗାରେଟ, ପାନ ଇତ୍ୟାଦି । ଏ ସବୁ ଦ୍ରବ୍ୟ ସାମାନ୍ୟ ହୋଇପାରେ, ମାତ୍ର ଏଥିରୁ ପ୍ରତ୍ୟେକଟି ବ୍ରହ୍ମଚର୍ଯ୍ୟ ବିରୋଧୀ ।

୫—ଅନ୍ୟ ଲୋକ ବ୍ୟବହାର କରିଥିବା ଲୁଗା ପିନ୍ଧିବ ନାହିଁ । ଅନ୍ୟ ଲୋକ ଶୋଇଥିବା ଶେଯରେ ଶୋଇବ ନାହିଁ । କାହାର ଅଇଁଠା ଖାଇବ ନାହିଁ । ନିଜ ବ୍ୟବହାର୍ଯ୍ୟ ଜିନିଷ ଯେପରି ଅନ୍ୟ କେହି ବ୍ୟବହାର ନ କରେ ତହିଁ ପ୍ରତି ସାବଧାନ ଥିବ ।

୬—ଏକାହୋଇ ଗୋଟିଏ ଶଯ୍ୟାରେ ଶୋଇବ, ବରଂ ଏକେଲେ ଶୋଇବ ଅନ୍ୟ ଲୋକ ଶୋଇଥିବା ଶଯ୍ୟାରେ ଶୋଇବ ନାହିଁ । ଚିତହୋଇ ପିଠିରେ ଶୋଇବ; ତଳକୁ ମୁହଁ ମାଡ଼ି ଶୋଇବ ନାହିଁ ।

୭—ଆଠ ଘଣ୍ଟାରୁ ବେଶୀ ଶୋଇବ ନାହିଁ । ରାତି ଦଶଟାଠାରୁ ଚାରିଟା ପର୍ଯ୍ୟନ୍ତ ଶୋଇବ । ରାତ୍ରି ଶେଷ ପ୍ରହରରେ ଶୋଇବ ନାହିଁ । ଚାରିଟାବେଳେ ଉଠି ଜପ, ଧ୍ୟାନ, ସ୍ତୁତିପାଠ ଆଦି କରିବ । ଶେଷ ପ୍ରହରରେ ଶୋଇଲେ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ ନଷ୍ଟ ହୁଏ । ଶେଷ ରାତ୍ରରେ ଯେଉଁମାନେ ଶୁଅନ୍ତି, ସେମାନେ ବ୍ରହ୍ମଭ୍ରଷ୍ଟ ହେବା ଦୃଷ୍ଟକର । ଚାରିଟାବେଳେ ନିଦ ଭାଙ୍ଗିଲେ ଆଉ କେବେ ଶୋଇବ ନାହିଁ । ରାତିରେ ଅନିଦ୍ରା ରହିବ ନାହିଁ । ଦିନବେଳେ

କେବେ ଶୋଇବ ନାହିଁ । ଦିବା ନିଦ୍ରା ସ୍ୱାସ୍ଥ୍ୟ ନାଶକରେ ଏବଂ ମହାପାପ ।

୮—ସର୍ବଦା କୌପୀନ ବ୍ୟବହାର କରିବ; ଏହା ବ୍ରହ୍ମଚର୍ଯ୍ୟର ପ୍ରଧାନ ସହାୟ । ପିଲାଦିନେ କୌପୀନ ପାରିବା ଆମ ଦେଶରେ ଥିଲା, ବର୍ତ୍ତମାନ ନୂତନ ସଭ୍ୟତାଦ୍ୱାରା ସେ ପ୍ରଥା ଉଠିଯାଉଛି । ଏବେ ପିଲାମାନଙ୍କୁ ପାଇଜାମା, ସେମିଜ ପ୍ରଭୃତିରେ ଭୂଷଣ କରାଯାଉଛି ?

୯—ସକାଳେ ଓ ଅପରବେଳା ଦୁଇଥର ବ୍ୟାୟାମ କରିବ । ଆଜି ମନହେଲା କଲି, କାଲି ନ କଲି, ଏପରି କରିବ ନାହିଁ । ନିୟମିତ ରୂପେ କରିବ । ଦୁ'ଥର କରି ନ ପାରିଲେ ଥରେ କରିବ । ମାତ୍ର ପ୍ରତିଦିନ କରିବ । ବ୍ୟାୟାମ ଲାଗି ଆମ ଦେଶୀ ମାଲକୁସ୍ତି, ଦଣ୍ଡ ପ୍ରଭୃତି ଉତ୍ତମ । ବ୍ୟାୟାମ କରିବା ଅଧଘଣ୍ଟା ପୂର୍ବରୁ ଚଣାବୁଟ ମୁଠାଏ ଟିକିଏ ଲୁଣ, ଟିକିଏ ଗୁଡ଼ ଦେଇ ଖାଇବ । ବ୍ୟାୟାମ କଲେ ଶରୀର ଲହୁପର ଟାଣ ହୁଏ, ଖାଇବା ପଦାର୍ଥ ଜୀର୍ଣ୍ଣ ହୋଇଯାଏ; ମନ ପ୍ରଫୁଲ୍ଲ ହୁଏ, ସୁନିଦ୍ରା ହୁଏ; ମନ୍ଦଚିନ୍ତା ମସ୍ତିଷ୍କରେ ପ୍ରବେଶ କରେ ନାହିଁ ।

୧୦—ସର୍ବଦା କୌଣସି କାର୍ଯ୍ୟରେ ଲାଗିଥିବ । ଖାଲି ବସିଲେ ଅଳସୁଆ ମୁଣ୍ଡରେ ଭୂତ ବସା କରେ । ସର୍ବଦା ସତ୍‌କାର୍ଯ୍ୟ କରିବ, ଉତ୍ତମ ପୁସ୍ତକ ପାଠ କରିବ । ମନ୍ଦଚରିତ୍ର ଲୋକଙ୍କ ସଙ୍ଗେ ସାଙ୍ଗ ହେବ ନାହିଁ । କାହାର ଅଙ୍ଗ ପ୍ରତ୍ୟଙ୍ଗ ସ୍ପର୍ଶ କରିବ ନାହିଁ । ବିନା ପ୍ରୟୋଜନରେ ସ୍ତ୍ରୀଲୋକମାନଙ୍କ ମୁଖକୁ ଚାହିଁବ ନାହିଁ । ଦୃଷ୍ଟିରୁ ସୃଷ୍ଟି । ଲକ୍ଷ୍ମଣ ବ୍ରହ୍ମଚାରୀ ଥିଲେ । ସେ ସୀତା ରାମଙ୍କ ସଙ୍ଗେ ବହୁକାଳ ଏକଠାରେ ବାସ କରିଥିଲେ, ମାତ୍ର ସୀତାଙ୍କ ମୁଖ କପରି ସେ ଦେଖି ନ ଥିଲେ ।

୧୧—ବିନା କାରଣରେ କୌଣସି କଥା କହିବ ନାହିଁ । ଗୁଡ଼ାଏ କଥା କହିବାରେ ଅନେକ ଦୋଷ ଅଛି ଏବଂ ଅଳ୍ପକଥା କହିବାରେ ଅନେକ ଗୁଣ ଅଛି । ଯେତେ ଊଣା କଥା କହିବାକୁ ପଡ଼େ ସେତେବେଳେ ଭଲ । ବାକ୍‌ସଂଯମଦ୍ୱାରା ଅନେକ ପାପ ଓ କୁସଙ୍ଗ ହାତରୁ ରକ୍ଷା ମିଳେ । ବାକ୍‌ସଂଯମଦ୍ୱାରା ମାନସିକ ଶକ୍ତି ବଢ଼େ, ସ୍ମୃତିଶକ୍ତି ପ୍ରବଳ ହୁଏ, ତେଜ ବୃଦ୍ଧି ହୁଏ । ଓଜନ କରି କଥା କହିବ । ବାକ୍ୟ ତ୍ୟାଗ ବିଷୟରେ ଅତି କୃପଣ ହେବ । ଯେତିକି ଆବଶ୍ୟକ ସେତିକି କଥା କହିବ ।

୧୨—ତାସ, ପଶା ପ୍ରଭୃତି ଖେଳରେ ରତ ହେବ ନାହିଁ; ଏ ଗୁଡ଼ାକ ବ୍ୟସନ । କଥା ଅଛି, "ପଶା ଶତରଞ୍ଜ ଜୁଆ ରଙ୍ଗ, ପାସି ନ୍ୟାୟବଳ ବେଶ୍ୟାସଙ୍ଗ । ଏ ଛଅରସେ ଯେଉଁ ପୁଅ ରହେ, ଭେକରେ ଶୋଇ ଟାଙ୍କରା ଖାଏ ।" ଅର୍ଥାତ୍ ଏଥିରେ ଯେଉଁମାନେ ରତ ହୁଅନ୍ତି ସେଗୁଡ଼ାକ ଅଲକ୍ଷଣା, ଅଲସୁଆ, ଅକର୍ମା । ଏମାନଙ୍କୁ ଶେଷକୁ ଅନ୍ନ ଜଳ ମିଳେ ନାହିଁ । ଏହା ଏକପ୍ରକାର କୁସଙ୍ଗ, ଏଥିରେ ରତ ହେଲେ ସଂଯମ ନଷ୍ଟ ହୁଏ ।

୧୩—ମନରେ କେବେ ମନ୍ଦ ଚିନ୍ତାକୁ ସ୍ଥାନ ଦେବ ନାହିଁ । ସତ୍‌କାର୍ଯ୍ୟ କରିବ, ସତ୍‌ଚିନ୍ତା କରିବ, ସତ୍‌ସଂକଳ୍ପ କରିବ, ସଦ୍‌ଗ୍ରନ୍ଥ ପାଠ କରିବ, ଭଗବାନଙ୍କ ନାମ ଜପ, ଧ୍ୟାନ, ସ୍ମରଣ, କୀର୍ତ୍ତନ କରିବ, ସ୍ତବସ୍ତୁତି ପାଠ କରିବ । କେତେବେଳେ ମନ୍ଦଚିନ୍ତା ମନକୁ ଆସିଗଲେ ଇଷ୍ଟଦେବତାଙ୍କ ନାମ ସ୍ମରଣ କରି ଜପ ପ୍ରାୟଶ୍ଚିତ୍ତ କରିବ । ଶୋଇବା ପୂର୍ବରୁ ଅନ୍ୟ ସବୁ ଚିନ୍ତା ଦୂର କରି ଭଗବାନଙ୍କ ନାମ ଜପ କରି ଶୋଇବ । ଶୋଇବା ପୂର୍ବରୁ କିମ୍ବା ଶୋଇବା ବେଳେ କୌଣସି କୁଚିନ୍ତା କରିବ ନାହିଁ ।

୧୪—ପ୍ରତିଦିନ ଗୀତା ବା ଭାଗବତ ପାଠ କରିବ । ଗୋଟିଏ ଲେଖାଏଁ ଶ୍ଳୋକ ମୁଖସ୍ଥ କରିବ । ଅନ୍ତତଃ ଦିନକେ ଘଣ୍ଟାଏ ଦି'ଘଣ୍ଟା ଭଗବାନଙ୍କ ନାମ ଧ୍ୟାନ କରିବ । ଶୋଇବା ପୂର୍ବରୁ ଆତ୍ମପରୀକ୍ଷା କରିବ; ଅର୍ଥାତ୍ ଆଜି କି କି କାମ କଲି, ସେଥିରୁ ଭଲ କେତେ, ମନ୍ଦ କେତେ । ଯଦି କିଛି ମନ୍ଦକଥା ଥାଏ, ତେବେ କାଲି ଯେପରି ସେ କଥା ନ ହେବ ତହିଁ ପାଇଁ ସଂକଳ୍ପ କରିବ । ସଂକଳ୍ପ କଲେ ମନୁଷ୍ୟ ଅସାଧ୍ୟ ସାଧନ କରିପାରେ । ସଂକଳ୍ପ ବଳରେ ଲୋକେ ଦେବତାମାନଙ୍କଠାରୁ ବର ନେଇ ପାରୁଥିଲେ । ସଂକଳ୍ପ କଲେ ସଂଯମୀ ହୋଇ ପାରିବାରେ କିଛି ଆଶ୍ଚର୍ଯ୍ୟ ନାହିଁ ।

ସ୍ତ୍ରୀ—ତମେ ଯେତେକଥା କହିଲ ଏ ସବୁ ବୈଷ୍ଣବମାନେ କରି ପାରନ୍ତି, ଗୃହସ୍ଥାଶ୍ରମରେ ରହି ଏ ସବୁ କିପରି କରି ପାରିବ ?

ସ୍ୱା—କାହିଁକି ? ଗୃହୀ ଲୋକ ଏ ସବୁ କରି ପାରିବ ନାହିଁ ବୋଲି ଯାହା କହୁଛ, ତାହା ନିତାନ୍ତ ଭୁଲ । ଗୃହାସ୍ଥାଶ୍ରମରେ ରହି କିପରି ବ୍ରହ୍ମଚର୍ଯ୍ୟ ରକ୍ଷା କରି ପାରିବ, ଯେ ବିଷୟ ବିସ୍ତୃତ ଭାବରେ କହିବାକୁ ଗଲେ ଗୋଟିଏ ସ୍ୱତନ୍ତ୍ର ପୋଥି ହେବ । ଗୃହୀର କର୍ତ୍ତବ୍ୟ ସମ୍ବନ୍ଧେ ଅଲଗା ଶାସ୍ତ୍ର ଅଛି । ଏହାକୁ କାମଶାସ୍ତ୍ର କହନ୍ତି । ଏଥିରେ ଗୃହୀ ଓ ଗୃହିଣୀର ବିଧିନିଷେଧ କର୍ମ ବିଷୟରେ ସମସ୍ତ କଥା ଲେଖା ଅଛି । ସେ ପୋଥି ପଢ଼ ଏବଂ ସେ ପୋଥିରେ ଲେଖା ଥିବା ନିୟମ ପାଳ, ତେବେ ଗୃହସ୍ଥାଶ୍ରମରେ ଥାଇ ମଧ୍ୟ ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀ ହୋଇ ପାରିବ । ମୁଁ ଉପରେ ଯେ ସବୁ ନିୟମ ପାଳିବା କଥା କହିଲି, ସେ କଥାମାନ ମଧ୍ୟ ଶାସ୍ତ୍ରରେ ଅଛି । ସେ ସବୁ ନିୟମରେ ରହି ଗୃହସ୍ଥ ହେବାରେ କିଛି ବାଧା ନାହିଁ । ଗୃହସ୍ଥାଶ୍ରମ ସଂସାରରେ

ଜଳନ୍ତ ଶିକ୍ଷା ଆଶ୍ରମ । ଭଗବାନ ନିଜେ କହୁଛନ୍ତି, "ଗୃହସ୍ଥାଶ୍ରମରେ ରହି ଯେ ଧର୍ମ ଆଚରି, ସେ କଥା ଗୋଟିକୁ ପାର୍ଥ ବେହି ନୁହେ ସବ ।" ଭଗବାନ ଶ୍ରୀକୃଷ୍ଣ ଗୃହସ୍ଥାଶ୍ରମରେ ଥିଲେ, ଅଥଚ ସେ ପୂର୍ଣ୍ଣ ବ୍ରହ୍ମଚାରୀ ଏବଂ ସେ ଆଜି ସାରା ଜଗତରେ ଦେବତା ବୋଲି ପୂଜ୍ୟ । ସେ ତ କେବେ ସନ୍ନ୍ୟାସୀ ହୋଇ ବୁଲି ନ ଥିଲେ । ଜନକରାଜା ଗୃହସ୍ଥାଶ୍ରମରେ ଥାଇ ପୂର୍ଣ୍ଣ ବ୍ରହ୍ମଚାରୀ ଥିଲେ । ଅନେକ ଋଷିମୁନିମାନେ ସସ୍ତ୍ରୀକ ବନରେ ଥାଇ ମଧ୍ୟ ବ୍ରହ୍ମଚାରୀ ଥିଲେ । ଗୃହସ୍ଥାଶ୍ରମରେ ଥାଇ ବ୍ରହ୍ମଚର୍ଯ୍ୟ ନିୟମ ପାଳନ କରିବାରେ କିଛି ଦୋଷ ନାହିଁ । ବରଂ ଗୃହସ୍ଥାଶ୍ରମରେ ଥାଇ ଯେଉଁମାନେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ସେମାନେ ଉତ୍କୃଷ୍ଟ ବ୍ରହ୍ମଚାରୀ । ସର୍ବଦା ଭଗବାନଙ୍କଠାରେ ପ୍ରାର୍ଥନା କରିବ, 'ବ୍ରହ୍ମଚର୍ଯ୍ୟ ଦୃଢ଼ ହେଉ' ।

ସ୍ତ୍ରୀ—ଆଗୁ, ଆଗେ ବ୍ରହ୍ମଚର୍ଯ୍ୟ ରକ୍ଷାକରି ଅଧିକ କଣ ହେଉଥିଲା, ଏବେ କଣ ଊଣା ହେଉଛି

ସ୍ୱାମୀ—ଏ କଥା ପଚାରୁଛ ? ଆଗେ ଭୀଷ୍ମ, ଅର୍ଜୁନ, ଭୀମ ପ୍ରଭୃତିଙ୍କ ପରି ବୀର ଥିଲେ, ଏବେ କାହାନ୍ତି ? କାହିଁ କେଉଁଠି ଗୋଟାଏ ପଞ୍ଚହାତ ମର୍ଦ୍ଦ ଦେଖୁଛ ? କ୍ରମେ ଲୋକେ ଛୋଟ ହୋଇ ଆସୁଛନ୍ତି, ଆଉ କେତେଦିନ ପରେ ବାଇଗଣ ଗଛକୁ ଅଙ୍କୁଡ଼ି ଲଗାଇବେ । ମଣିଷ ପରି ମଣିଷଟାଏ ଦେଖିବାକୁ ସ୍ୱପ୍ନ ହେଲଣି । ଜଣେ ସାହେବ ଆଗରେ ପଡ଼ିଗଲେ ଲୋକଙ୍କ ଛାତିରୁ ରକ୍ତ ଶୁଖିପଡେ, ଭୟରେ ଅବାକାବା ହୋଇଯାନ୍ତି । ଯେତେ ପାଠପଢ଼ୁଆ ଲୋକେ ତାଙ୍କର ଦଶ ବାର ବର୍ଷରୁ ଚଷମା ବା ପରକ୍ଷେ ନ ହେଲେ ନ ଚଳେ । ରୋଗ ସଂଖ୍ୟା କହିଲେ ପୋଥିଏ ହେବ । ଡାକ୍ତରଖାନା ସଂଖ୍ୟା ଦିନୁଦିନ ବଢ଼ୁଛି;

ବୈଦ୍ୟ ଡାକ୍ତରଙ୍କ ସଂଖ୍ୟା ବଢ଼ୁଛି; ହୋମିଓପାଥି,ବାଇଓକେମିକ, କବିରାଜୀ ପ୍ରଣାଳୀ ବଢ଼ୁଛି । ଦେଶୀ ଔଷଧରେ କାମ ନ ଚଳିବାରୁ ବିଦେଶରୁ ଔଷଧ ଆସୁଛି । ଏ ସବୁ କଥାରୁ କଣ ପ୍ରମାଣିତ ହେଉଛି ? ଏଥିରୁ ପ୍ରମାଣିତ ହେଉନାହିଁ କି; କ୍ରମେ ଆମ ଦେଶ ଲୋକମାନେ ରୋଗୀ ହୋଇ ଯାଉଛନ୍ତି । ରୋଗ ଦେହରେ ପ୍ରବେଶ କଲେ ସବୁ ବଳ ଭାଙ୍ଗି ଦିଏ, ଲୋକ ନିର୍ବୀର୍ଯ୍ୟ ହୋଇ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଯାଏ । ଯେଉଁମାନେ ସର୍ବଦା ରୋଗ ଯନ୍ତ୍ରଣାରେ ଛଟପଟ, ସେମାନେ ସଙ୍ଗୀତ ବୁଝିବେ କଣ ? ଅନ୍ୟାନ୍ୟ ଶିଳ୍ପାଙ୍ଗସମ୍ବ କଥା ବୁଝିବେ କଣ ? ରୋଗ ସଙ୍ଗେ ଅନ୍ନ କଷ୍ଟ ମିଶି ଏ ଜାତି ଶରୀରରୁ ସାର ଝାଡ଼ି-ନେଇ ହାଣିଲେଣି । ଅଛି କେବଳ ଅନ୍ତଃସାରଶୂନ୍ୟ କଙ୍କାଳ-ମାଳ । ଏମାନଙ୍କ ମଧ୍ୟରୁ ସ୍ତ୍ରୀମାନେ ତ ଜାଣି ଅବଳା; ବ୍ରହ୍ମଚର୍ଯ୍ୟହୀନା ହୋଇ ସେମାନେ ଦୁର୍ବଳା ଅବଳା ।, ମାତ୍ର ପୁରୁଷମାନେ ଦାଢ଼ିମୁଛଧାରୀ ଅବଳା । ଭାରତବର୍ଷରେ ୩୩ କୋଟି ଲୋକ ବାସ କରନ୍ତି । ଏ ତେତିଶକୋଟି ଲୋକ ମଧ୍ୟରେ କେହିଏ ହେଲେ ଭୀଷ୍ମ କି ଅର୍ଜୁନ ନାହିଁ । ଏ ଜାତି ବ୍ରହ୍ମତେଜ ହରାଇ, ବ୍ରହ୍ମଚର୍ଯ୍ୟ ନଷ୍ଟକରି ଏପରି ନିର୍ବୀର୍ଯ୍ୟ ହେଲଣି ଯେ, ବର୍ତ୍ତମାନ ଅବସ୍ଥାରେ ଆଉ ସେପରି ଭୀଷ୍ମ ଅର୍ଜୁନ ଜନ୍ମିବାଲାଗି ସୁଯୋଗ ନାହିଁ । ଭାରତବାସୀ ବର୍ତ୍ତମାନ ନପୁଂସକ ତୁଲ୍ୟ ପଡ଼ି ରହିଛନ୍ତି । ଏ ଅବସ୍ଥାରେ କି ଉନ୍ନତି କରି ପାରିବ ? ବର୍ତ୍ତମାନ ସମୟରେ ଅଧିକାଂଶ ବାକ୍ୟବୀର, କର୍ମବୀର ସଂଖ୍ୟା ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । କର୍ମ କରିବାପାଇଁ ଶକ୍ତି ସାମର୍ଥ୍ୟ ନାହିଁ କି କିଛି ଚିନ୍ତା କରି କଳ୍ପନା କରିବା ଲାଗି ମସ୍ତିଷ୍କରେ ତେଜ ନାହିଁ ।

ସ୍ତ୍ରୀ—କଣ କଲେ ଏ ଅବସ୍ଥା ଦୂର ହେବ ?

ସ୍ୱାମୀ—ଅଛି, ଉପାୟ ଅଛି, । ସ୍ତ୍ରୀ ପୁରୁଷ ଉଭୟ ଏ ସମସ୍ୟା ସମାଧାନ ଲଗି ଅଣ୍ଟା ଭିଡ଼ିବା ଆବଶ୍ୟକ । ଉଭୟେ ବ୍ରହ୍ମଚର୍ଯ୍ୟ ମହତ୍ତ୍ୱ ବୁଝି, ଉଭୟ ସାଧନା ବଳରେ ବ୍ରହ୍ମଗୃହୀ ଓ ବ୍ରହ୍ମଗୃହିଣୀ ହେବାକୁ ହେବ । ଏହୁ ସଂକଳ୍ପ କର କାର୍ଯ୍ୟକାରଣୀ ଶକ୍ତିକୁ ପୁନର୍ବାର ଜାଗରିତ କରିବାକୁ ହେବ । ଏପରି କଲେ ଭାରତର ଉନ୍ନତି ଶୀଘ୍ର ହେବ । ସେ ଦିନ ଜଣେ ବ୍ରହ୍ମଗୃହୀ ଗୋଟିଏ ଗୀତ ଗାଉଥିଲେ, ତାର ପ୍ରତି ଅକ୍ଷର ସତ୍ୟ ।

ଗୀତ ।

ତ୍ୟାଗୀ ବଂଶଧର, ତ୍ୟାଗପ୍ରତିବୀର, ଭାରତବାସୀ ବିଳାସେ ।
ଭୁଲି ତ୍ୟାଗଧର୍ମ, ବିଳାସରେ ମନ, ରସିଲ୍ଲ ନିଶି ଦିବସେ । ଧ୍ରୁ ।

କାହୁ ପୂର୍ବ ତେଜ, କାହିଁ ପୂର୍ବ ବୀର୍ଯ୍ୟ
ସବୁ ଲୁଚିଗଲ୍ଲ ଏ ଦେଶେ,
ଜୀର୍ଣ୍ଣ ଶୀର୍ଣ୍ଣ ହୀନ, ଶ୍ରୀମୁଖ ମଳିନ
ବୁଲିଲ୍ଲ କାଙ୍ଗାଳ ବେଶେ । ୧ ।

ନାହୁ ବ୍ରହ୍ମଚର୍ଯ୍ୟ, ନାହିଁ ତେଜ ଓଜ
କଙ୍କାଳ ଶରୀର ଶେଷେ,
ଭୀମ ଅରଜୁନ ଭୀଷ୍ମ ବଂଶଗଣ
ବୁଲିଲ୍ ବାମନବେଶେ । ୨ ।

କାହୁଁ ହରିଶ୍ଚନ୍ଦ୍ର କାହିଁ ସେ ଗଜେନ୍ଦ୍ର
ଚଣ୍ଡାଳ ପେ ଦାନଶେଷେ,
କାହୁଁ ଶୈବ୍ୟା ରାଣୀ ସ୍ୱାମୀ ଲଗି ପ୍ରାଣୀ
ବିକିଲ୍ଲ ମହତ୍ତ୍ୱ ଶେଷେ । ୩ ।

ଏହି କି ସେ ଦେଶ, ସେ ନଦୀ ଅଶେଷ
ସେ ଗ୍ରହ ଭାଗ୍ୟ ବିକାଶେ,
ଯାହିଁ ସେହି ଯତି ସନ୍ନ୍ୟାସୀ ବହୁତ
ଡୋର ତପସୀନ ବେଶେ । ୪ ।
ଯାହିଁ ବ୍ରହ୍ମଗ୍ରସ୍ତ, ବ୍ରହ୍ମତେଜ ଧର
ଦମ୍ଭେ ଠିଆ ହେବ ଦେଶେ,
ପ୍ରଫୁଲ୍ଲ ବଦନେ ନିଜ ଅସ୍ଥି ଦାନେ
ଦୁଃଖୀ ହର ତରବ ସେ । ୫ ।
ଯାହିଁ କର୍ଣ୍ଣ ଦାନୀ ସତ୍ୟ ଚାତ୍ୟ ମାନି
ପୁତ୍ର ଶିର ଛେଦ ହସେ,
ଶିବରାଜା ଯାହିଁ ସ୍ଥିର ପକ୍ଷୀପାଇଁ
ନିଜ ମାଂସ କାଟିବ ସେ । ୬ ।
ନାହିଁ ଦେହେ ବଳ ଭୟେ ଥରହର
ନ କହେ କଥା ସାହସେ,
ଦମ୍ଭ ନାହିଁ ସ୍ଥିତ ଦେଖି ଏ ଦୁର୍ଗତି
ସାଗ୍ର ବିଶ୍ୱବାସୀ ହସେ । ୭ ।
ଭର ଭର ପଣ ଭାରତ ସନ୍ତାନ
ବ୍ରହ୍ମତେଜ ପରକାଶେ,
ତବ ପଦତଳେ ଲୋଟିବେ ସକଳେ
ଜୁହାରବେ ପଦ-ଦେଶେ । ୮ ।

---

ସ୍ତ୍ରୀ—ଇସ୍କୁଲରେ ଏ ବିଷୟ ସବୁ ଶିକ୍ଷା ଦିଆଯାଉ ନାହିଁ କାହିଁକି ?

ସ୍ୱା—ଅହେ, ଏ ସୁନଅରେ ଏ ପେଠା ନାହିଁ । ସ୍କୁଲ କଲେଜରେ ପିଲାମାନେ ଯେଉଁ ସ୍ୱତ ଜାତରେ ପଢ଼ନ୍ତି ଓ ବୋର୍ଡ଼ିଙ୍ଗରେ ବାସ

କରନ୍ତି, ସେ ସମସ୍ତ ବ୍ରହ୍ମଚର୍ଯ୍ୟର ବିରୋଧୀ । ଭାରତ ସନ୍ତାନମାନଙ୍କୁ ବ୍ରହ୍ମଚର୍ଯ୍ୟ ଶିକ୍ଷା ଦେବାଲାଗି ଆମର ପ୍ରାଚୀନ ପନ୍ଥା ଅନୁସରଣ କରିବାକୁ ହେବ । ଆଜିକାଲି ଅନେକ ଲୋକ ଏ କଥା ବୁଝୁଁଲେଣି; ମାତ୍ର କେତେ କାଳରେ କାର୍ଯ୍ୟ ହେବ ଦେଖା ଯାଉ । ସଂଯମ ଶିକ୍ଷା ନ କଲେ ଦୁର୍ଗତିର ସୀମା ରହିବ ନାହିଁ ।

ସ୍ତ୍ରୀ—ସଂଯମ ଶିକ୍ଷା କଣ ?

ସ୍ୱାମୀ—ସଂଯମ ଅର୍ଥ ପରା ଅଗରେ କହିଲି, ବୁଝି ପାରିଲ ନାହିଁ ? ଇନ୍ଦ୍ରିୟର ଅଧୀନ ନ ହେବା । ମନୁଷ୍ୟ ଇନ୍ଦ୍ରିୟର ଅଧୀନ ହୋଇ ପଡ଼ିଲେ ଆପଣାର ସର୍ବନାଶ ଆପେ କରେ । ଯେ ଇନ୍ଦ୍ରିୟମାନଙ୍କୁ ନିଜ ଅଧୀନରେ ରଖିପାରେ, ସେ ପ୍ରକୃତ ମନୁଷ୍ୟ ।

ସ୍ତ୍ରୀ—ଇନ୍ଦ୍ରିୟ କଣ ? ସେମାନଙ୍କୁ କିପରି ନିଜ ଅଧୀନରେ ରଖିବ ?

ସ୍ୱାମୀ—ଇନ୍ଦ୍ରିୟ ଅର୍ଥ ଚକ୍ଷୁ, କର୍ଣ୍ଣ, ନାସିକା, ତ୍ୱକ୍, ଜିହ୍ୱା । ସାଧନା ଦ୍ୱାରା ଏମାନଙ୍କୁ ଆୟତ୍ତରେ ରଖିବାକୁ ହେବ । ଚକ୍ଷୁ ଯାହା ଦେଖେ ତାକୁ ଲୋଭେ । ମଟରଗାଡ଼ି ଦେଖିଲେ, ଶୂନ୍ୟ ଜାହାଜ ଦେଖିଲେ, ଇତ୍ୟାଦି ବିଷୟ ହାଟ ବଜାରରେ ଦେଖିଲେ ତତ୍‌କ୍ଷଣାତ୍ ଗୋଟାଏ କିଣି ଆଣିବାକୁ ମନକୁ ଟାଣେ, ମନ ସମ୍ଭାଳି ହୁଏ ନାହିଁ । ଅଣ୍ଟାରେ ପଇସା ଥାଉ ବା ନ ଥାଉ କିଣି ପକାଏ । ଏହାକୁ କହନ୍ତି ଇନ୍ଦ୍ରିୟଲାଳସା । କିଛି ଆବଶ୍ୟକ ନାହିଁ, ଅଥଚ କେବଳ ଲାଳସାରେ ପଡ଼ି କିଣି ପକାଏ । କେଉଁଆଡ଼େ ବୁଲି ଚାଲି ଗଲେ ହାତରେ ଖଣ୍ଡେ ବାଡ଼ି ଆବଶ୍ୟକ । ଆମ ଦେଶରେ କଣ ବେତ, ବାଉଁଶ ବା ଅନ୍ୟାନ୍ୟ ଗଛର ଅଭାବ ଅଛି ? ସେଥିରୁ ଖଣ୍ଡେ ହାତରେ ଧରିଲେ କାମ ଚଳିଲା, ଅଥଚ ସେଥିଲାଗି ପଇସା ଦେବାକୁ ହେଲା ନାହିଁ ।

କିନ୍ତୁ ବଜାରରେ ହରେକ ରକମର ବିଦେଶ ତିଆରି ବାଡ଼ି ଅଛି । ଦେଖିବାକୁ ସୁନ୍ଦର, ପାଲିଶ, ନାନା ଆକାର ପ୍ରକାର । ଏ ସବୁ ଯେମନ୍ତ ଆଖି ପଡ଼ିଲା, ସେ ମନକୁ ଫୁସୁଲାଇଲା । ମନ ବିଚଳିତ ହୋଇ ଶେଷରେ ପାଞ୍ଚଟଙ୍କା ଦେଇ ମଧ୍ୟ କିଣି ପକାଇଲା । ମନର ଏହି ଅବସ୍ଥାକୁ ଅସଂଯତ ଅବସ୍ଥା କହନ୍ତି । ମନ ଯଦି ବିଚାରନ୍ତା; "ଓ, ସେଇ ବାଡ଼ି ତ, ଆମ ବାଉଁଶ ବାଡ଼ି ଯାହା କାମ ଦେବ, ଯେତେ ସୁନ୍ଦର ହେଲେ ଏ ଦଶ-ଟଙ୍କିଆ ବାଡ଼ିଟା ତ ସେହି କାମ ଦେବ, 'ଅଧିକା କେବଳ ଏ ଚକଚକ ଟିକକ, ଏଥିଲାଗି ଏତେ ପଇସା କାହିଁକି ବୃଥାରେ ଦିଅଯିବ । ସେ ପଇସାଟା ଅନ୍ୟ କୌଣସି ସତ୍ କାର୍ଯ୍ୟରେ ଦେଲେ ତ ଅଧିକ ଉପକାର ଅଛି । ନା, ଏ ବାଡ଼ି କିଣିବାର ଫଳ କଣ ? ମନ, ଢ଼ମୀ ହୋ; ମନ ଏ ଜାଲରେ ପଡ଼ ନା ।" ଏପରି ମନକୁ ବୁଝାଇଦେଲେ ମନ ଥଣ୍ଡା ହୋଇଗଲା, ଆଉ ତେଣିକି ଗଲା ନାହିଁ । ମନର ଏ ଅବସ୍ଥାକୁ ସଂଯତ ଅବସ୍ଥା କହନ୍ତି । ଏଠାରେ ଚକ୍ଷୁ ହାରିଲା, ମନ ଜିତିଲା । ଏଠାରେ ଇନ୍ଦ୍ରିୟ ନିଜ ଆୟତ୍ତରେ ରହିଲା । ଯଦି ଲୋଭ ଲାଳସାରେ ପଡ଼ି କିଣି ଥାନ୍ତା, ତେବେ ଇନ୍ଦ୍ରିୟ ଜିଣିଥାନ୍ତା ଏବଂ ସେ ଇନ୍ଦ୍ରିୟର ଅଧୀନ ହୋଇ ପଡ଼ିଥାଆନ୍ତା । ଦୃଷ୍ଟାନ୍ତ ସ୍ୱରୂପ ଏ ଗୋଟିଏ କଥା କହିଲି ପିଲା ! ପ୍ରତ୍ୟେକ ବିଷୟରେ ବିଚାର କରି ଦେଖ । କିଛି ଦିନ ମନକୁ ସଂଯତ କରିବାକୁ ଚେଷ୍ଟା କର, ଦେଖିବ ଇନ୍ଦ୍ରିୟମାନେ ଅଧୀନ ହୋଇ ପଡ଼ିବେ, ସେମାନେ ମନକୁ ଅନ୍ୟ ଦିଗକୁ ଟାଣି ନେଇ ପାରିବେ ନାହିଁ । ଏହିପରି ଶିକ୍ଷା ଲାଭ କରି, ମନକୁ ସଂଯତ କରିନେଲେ ଆମ୍ଭେମାନେ ଅନେକ ଅନର୍ଥର ଗର୍ତ୍ତରୁ ରକ୍ଷା ପାଇବୁଁ ଏବଂ ଅନେକ ପାପରୁ ମୁକ୍ତ ହେବୁଁ । ସ୍ତ୍ରୀ ପୁରୁଷ

ଜଭସ୍ତ ସଂଯତ ହୋଇ ଚଳନ୍ତେ ଏବଂ ବାହାର ଶୃଙ୍ଖଳତା ଦେଖି ନ ଭୁଲନ୍ତେ, ଅମ୍ଭମାନଙ୍କ ଦୁର୍ଦ୍ଦଶା ସମ୍ପୂର୍ଣ୍ଣ ବିନାଶ-ପ୍ରାପ୍ତ ହେବ । ପୁଣି ଭାରତବାସୀ ପୂର୍ବ ତେଜପୁଞ୍ଜ ଘେନି ମୁଣ୍ଡ ଟେକି ଠିଆ ହେବ । ସଂଯମ ଭାରତ ଉନ୍ନତିର ମୂଳମନ୍ତ୍ର ଏବଂ ଅସଂଯମ ଭାରତ ଦୁର୍ଗତିର ମୂଳକାରଣ । ଭାରତବାସୀ ସଂଯମ ଶିକ୍ଷା କଲେ ତାର ଅନ୍ୟ କୌଣସି ବିଷୟରେ ଚିନ୍ତା କରିବା ଅବଶ୍ୟକତା ନାହିଁ; ପ୍ରତ୍ୟେକ ଲୋକ ଯଦି ଏହି ସାମାନ୍ୟ କଥାଟି ବୁଝିପାରେ ଏବଂ ପ୍ରତ୍ୟେକ ଲୋକ ମାନସିକ କରି ଏହି ବ୍ରତଟି ପାଳନ କରେ, ତେବେ ଭାରତ ଅନ୍ୟ କୌଣସି ବାଜେ ଚିନ୍ତାରେ ମୁଣ୍ଡ ଖର୍ଚ୍ଚ କରିବାର ଅବଶ୍ୟକ ନାହିଁ । ମୋର ଏହା ଦୃଢ଼ ବିଶ୍ୱାସ । ସଂଯମ ଧର୍ମର ପ୍ରଧାନ ଅଙ୍ଗ । ସଂଯମ ନଷ୍ଟ ହେବା ଅର୍ଥ ଧର୍ମ ନଷ୍ଟ ହେବା । ଭାରତବାସୀ ସଂଯମ ହରାଇ ଘୋର ପାପରେ ବୁଡ଼ିଛନ୍ତି । ସେ ଧର୍ମର ପୁନରୁଦ୍ଧାର ନ ହେଲେ ଭାରତର ଗତ୍ୟନ୍ତର ନାହିଁ । ଯେଉଁଠି ଧର୍ମ, ସେଠାରେ ଜୟ । ଆମର ଧର୍ମ ନାହିଁ ତ ଜୟ ନାହିଁ । ଶୁଷ୍କ ତର୍କ ଓ ବାକ୍‌ଯୁଦ୍ଧ କରି ଫଳ ନାହିଁ । ଅଳ୍ପ ଏତିକି ।

ସ୍ତ୍ରୀ—ଭାରତରୁ ଏ ଧର୍ମ ଲୋପ ହେଲା କାହିଁକି ?

ସ୍ୱାମୀ—ସେଥିରେ ଅନେକ କଥା ଅଛି । ସେ କଥା କହିବା ପାଇଁ ଏଠାରେ ସ୍ଥାନ ନାହିଁ । ସେ ରହସ୍ୟ ବୁଝିବାକୁ ଇଚ୍ଛାକଲେ ଭାରତ ଇତିହାସ ପଢ଼ । ସେ କଥା ଆଲୋଚନା କରିବାରେ ବିଶେଷ କିଛି ଫଳ ନାହିଁ । ମୋଟାମୋଟି କହିବାକୁ ଗଲେ ଏହା ଆମ କର୍ମଦୋଷ । ବର୍ତ୍ତମାନ ସେ କଥା ମାଗି ହେଲେ କଣ ହେବ ? କେବଳ ବୃଥା ସମୟ ନଷ୍ଟ ହେବ ଯିନା । ଯେ କୌଣସି କାରଣରୁ ରୋଗ ଆସିଛି, ନିଦାନ ଯାହା ଜଣାଗଲା,

ଧର୍ମର ପ୍ରତିକାର ପାଇଁ ଲାଗିପଡ଼। ଭାରତବାସୀ ନିଜ ଧର୍ମୋଦ୍ଧାର ପାଇଁ ପ୍ରାଣପଣେ ଯତ୍ନ କଲେ ଭଗବାନ ସହାୟ ହେବେ। ଅମ୍ଭମାନଙ୍କ ପ୍ରାଣରେ ସେପରି ବ୍ୟାକୁଳତା ନ ନ ଦେଖିଲେ ଭଗବାନ ସହାୟ ହେବେ ନାହିଁ।

——8——

## ଏକବିଂଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ଭାଲ୍ ଖବରକାଗଜରେ ପଢ଼ିଲି, ମାଇପେ ଭୋଟ ଦେବାର ଅଧିକାର ପାଇବେଲି। ଭୋଟ କଣ ମ?

ସ୍ୱାମୀ—ଭୋଟ ଅର୍ଥ ତମେ ଆଜି ଯାଏ ବୁଝି ନାହଁ?

ସ୍ତ୍ରୀ—ମ, ମୁଁ କଣ ଏକା ବୁଝି ନାହିଁ, ସାରା ଓଡ଼ିଶାପାକ ବୁଲି ଆସିଲ୍, କେତେଜଣ ବୁଝିଛନ୍ତି ଭଲ ଦେଖିବି?

ସ୍ୱାମୀ—ମାଇପେ ଭୋଟ ପାଇବା ଅଧିକାର ପାଇଲେଣି, ତମେ କହୁଛ, ଭୋଟ ଅର୍ଥ କଣ? ଭୋଟ ଦେବା ଅର୍ଥ ଯେଉଁମାନେ ବୁଝି ନାହାନ୍ତି, ତାଙ୍କୁ ଅଧିକାର ଦେଲେ କେତେ ନ ଦେଲେ କେତେ? ଆହେ, ଭୋଟ ଅର୍ଥ ମତ।

ସ୍ତ୍ରୀ—ମତ ଅର୍ଥ କଣ?

ସ୍ୱାମୀ—କି ବିପଦ! ମତ ଅର୍ଥ କଣ ବୋଲି ଯେ ନ ଜାଣେ ତାକୁ କି ଉପାୟରେ ବୁଝାଇବି? ମତ ଅର୍ଥ ବିଚାର। ମାଇପେ ଭୋଟ ବା ମତ ଦେବେ ଅର୍ଥାତ୍ ମାଇପଙ୍କ ବିଚାରକୁ କଣ ପସନ୍ଦ ହେବ।

ସ୍ତ୍ରୀ—ମାଇପେ କାହାକୁ କଣ ପସନ୍ଦ କରିବେ ମ?

ସ୍ବା—ଅହେ, ଲାଟସାହେବଙ୍କ ସଭାକୁ ମେମ୍ବର ବଛା ହେଲାବେଳେ ଡିଷ୍ଟ୍ରିକ୍ଟବୋର୍ଡ, ମ୍ୟୁନିସିପାଲିଟି ପ୍ରଭୃତିର ମେମ୍ବର ବଛା ହେଲା-ବେଳେ, କିଏ ଗଲେ ଭଲ ହେବ, ଏହା ଲୋକମାନଙ୍କ ମତ ନିଆଯିବ ।

ସ୍ତ୍ରୀ—ଅମେ ତାହାକୁ ଜାଣୁ ଯେ, କିଏ ଗଲେ କଣ କରିବ କିପରି କହିବୁ ?

ସ୍ବା—ଦେଶରେ କେଉଁ ଲୋକ କି କାମ କରୁଛନ୍ତି, ତା' କଣ ବୁଝି ପାରିବ ନାହିଁ ? ପରସ୍ପରରେ ଶୁଣାଯିବ, ଖବର କାଗଜମାନେ ଲେଖିବେ, ଲୋକମାନେ ଏଣିକି ଦୃଷ୍ଟି ଦେଲେ ଜଣାଯିବ । ସେମାନେ ନିଜେ ନିଜେ ଲୋକମାନଙ୍କ ପାଖକୁ ଆସି ତାଙ୍କ ଗୁଣ ଗାଇ ବୁଲିବେ ଯେ ।

ସ୍ତ୍ରୀ—ଆପଣା ଗୁଣ ଗାଇ ବୁଲିବେ କଣ ସ ?

ସ୍ବା—ଅହେ, କଳିଯୁଗରେ ସବୁ ଓଲଟା । ଶାସ୍ତ୍ର କହୁଛି, ଆପଣା ମୁଖରେ ଆପଣା ପ୍ରଶଂସା କରିବା ମହାପାପ, ଏପରି କଲେ ନିଜର ପୁଣ୍ୟ ନାଶ ହୁଏ । ଏ କାଳର ବାବୁମାନେ ଆପଣା ଗୁଣପାଇଁ ଲେଖି ବହି ଛପାଇ ବାଣ୍ଟୁଛନ୍ତି ଶୁଣ ! କିଏ ଖବରକାଗଜ ବାଲାଙ୍କୁ ଧରି ତାଙ୍କଦ୍ୱାରା ଲେଖାଉଛି, କିଏ ସାଥୀ ଲୋକଙ୍କଦ୍ୱାରା ବକ୍ତୃତା କରାଉଛି, କିଏ ବହି ଛପାଇ ବାଣ୍ଟୁଛି; ଏପରି ଚାଲିଛି ।

ସ୍ତ୍ରୀ—ଆପଣାର ମନ୍ଦଗୁଣ ଥିଲେ କିଏ କହିବ ? ତେବେ ନିଜ ଗୁଣ ଗାଇ ବୁଲିବାଟା ଅସୁନ୍ଦର । ଅନ୍ୟମାନେ କହିଲେ ସିନା ସୁନ୍ଦର, ନିଜେ କହି ବୁଲିବା ଅତି ଅସୁନ୍ଦର । ଯେ ଦେଶକାମ କରିବାକୁ ଚାହୁଁଛି, ତାର ଗୁଣ ଥିଲେ ଲୋକେ ଆପଣା ଖୁସିରେ ତାଙ୍କ ପାଇଁ ମତ ଦେବେ । ସେ ଏପରି ବ୍ୟାକୁଳ

ହୋଇ ଲଣ୍ଡ ଭଣ୍ଡ ହେବେ ତାହିଁକି ? ଅଚ୍ଛା, ମେମ୍ବର ହେଲେ କିଛି ଲାଭ ଅଛି କି ? ଯେଉଁମାନେ ଭୋଟ ସଭାକୁ ଯାନ୍ତି, ଜିଲ୍ଲାବୋର୍ଡକୁ ଯାନ୍ତି, ସେମାନେ କିଛି ପାନ୍ତି କି ?

ସ୍ୱା—ଯିବା ଅସିବା ବାଟ ଖର୍ଚ୍ଚ ମିଳେ ରହିବା ଦିନଗୁଡ଼ିକର ଖୋରାକ ମିଳେ । ହିସାବରେ ଚଳିଲେ କିଛି ଲାଭ ହେବ ନାହିଁ କଣ ?

ସ୍ତ୍ରୀ—ସତେ ! ମୁଁ ତ ଜାଣିଥିଲି ଯେ, ଏମାନେ ହାତରୁ ଖର୍ଚ୍ଚବାର୍ଚ୍ଚ କରି ସଭାକୁ ଯାନ୍ତି । ଅସଲ କଥା ତ ଜାଣି ନ ଥିଲି; ଦୀପ ଲେଉଟିଲେ ହାତ ଶଙ୍କୁଣା । ଯାହାର ଅନ୍ୟ କିଛି ରୋଜଗାର ଉପାୟ ନ ଥିବ, ସେ ଭୋଟ ସଂଗ୍ରହ କରିବାପାଇଁ ବ୍ୟାକୁଳ ନ ହେବ କାହିଁକି ?

ସ୍ୱା—ଅହେ, ଖାଲି କଣ ବ୍ୟାକୁଳ ହୁଅନ୍ତି ? ଏଥିଲାଗି କେତେ ଖରଚ କରନ୍ତି ?

ସ୍ତ୍ରୀ—ଏଥିରେ ପୁଣି ଖର୍ଚ୍ଚ କଣ ମ ?

ସ୍ୱା—ଅହେ, ଗାଡ଼ି ଶଗଡ଼ ନେଇ ଗ୍ରାମେ ଗ୍ରାମେ ବୁଲିବାକୁ ହେବ । ଯେତେ ଭୋଟ ଦେବାବାଲା ଅଛନ୍ତି, ସମସ୍ତଙ୍କ ପାଖକୁ ଯିବାକୁ ହେବ । ମୁଁ ଦେଶହିତୈଷୀ, ମୋତେ ଭୋଟ ଦେବ; ମୋ ସାଥିରେ ଯେ ଠିଆ ହୋଇଛି, ସେ ଦେଶଦ୍ରୋହୀ ଖରାପ ଲୋକ, ତାକୁ ଭୋଟ ଦେଲେ ଓଲଟା ରସାତଳକୁ ଯିବ, ଇତ୍ୟାଦି ନାନା କଥା କହି ଲୋକଙ୍କୁ ମାୟାଜାଲରେ ଜଡ଼ିତ କରିବାକୁ ହେବ । ସାଥିରେ ଦଳେ ଭଡ଼ାଟିଆ ଲୋକ ଥିବେ, ସେମାନେ ତାଙ୍କ ପ୍ରଶଂସା ଗାଇ ଠାବେ ଠାବେ ସଭା କରି ଲୋକଙ୍କୁ ବୁଝାଇବେ । ଯେଉଁଦିନ ଭୋଟ ନିଆଯିବ, ସେଦିନ ଭୋଟର ମାନଙ୍କୁ ଆଦର ଅଭ୍ୟର୍ଥନା ଯେତେ ପ୍ରକାରେ କରାଯାଇ ପାରେ ତାହା କରିବେ । ଏଥିରେ ଅନେକ ଖର୍ଚ୍ଚ ହୁଏ । ଏତେ କଥା

ଭର ଯେବେ ଅଧିକ ଲୋକ ତାଙ୍କ ପକ୍ଷରେ ଭୋଟ ଦେଲେ, ତେବେ ସେ ମେମ୍ବର ହେବେ ।

ସ୍ତ୍ରୀ—ଏତେ କଥା ଏଥି ଭିତରେ ଅଛି ଆମେ ଜାଣିବୁ କିପରି ?

ସ୍ବା—ଏବେ ଜାଣିବ ଯେ, ଆଗେ ସିନା କେବଳ ପୁରୁଷମାନେ ମତ ଦେଉଥିଲେ; ଏବେ ସବୁ ପୁଣି ମାଇପେ ମତ ଦେବେ ! ଇଚ୍ଛା ଭଲେ ମାଇପେ ମେମ୍ବର ହୋଇପିବେ !

ସ୍ତ୍ରୀ—ମରଦମାନେ ମେମ୍ବର ହେଉଥିଲେ, ଏବେ ମାଇପେ ମେମ୍ବର ହୋଇ ଅଧିକ କଣ କରିବେ ମ ?

ସ୍ବା—ଅହେ, ସାହେବମାନେ ସବୁ କହୁଛନ୍ତି, ଭାରତବର୍ଷର ମାଇପେ ଅପାଠୁଆ, ସେମାନଙ୍କୁ ଭାରତବାସୀମାନେ ଘରେ ପୂରାଇ ରଖନ୍ତି । ସେମାନେ କେବଳ ହାଣ୍ଡିଶାଳକୁ ଯୋଗ୍ୟ । ଯେଉଁ ଦେଶରେ ଏପରି ବ୍ୟବହାର ଅଛି, ସେ ଦେଶକୁ ସ୍ୱାୟତ୍ତଶାସନ ଦିଆଯିବ କିପରି ? ବିଲାତରେ ମାଇପେ ସବୁ ସ୍କୁଲ୍ କଲେଜରେ ପଢ଼ନ୍ତି, ବି. ଏ., ଏମ୍. ଏ. ପାସ୍ କରନ୍ତି, ଗୃହକର କରନ୍ତି, ସଭାମାନଙ୍କରେ ମେମ୍ବର ହୁଅନ୍ତି । ତେଣୁ ଭାରତବାସୀ କହନ୍ତି, ଆମ ମାଇପେ ସେପରି ହେବା ଉଚିତ ।

ସ୍ତ୍ରୀ—କଥାରେ ଅଛି ପରା ଦେଖାଶିଖା ଓଝା । ଯାହା ସାହେବ କରିବେ, ତାହା ଆମେ କରିବା । ଆମ ନିଜ ବୁଦ୍ଧି ବିଦ୍ୟା କିଛି ନାହିଁ । ଭାରତରେ ପୂର୍ବେ କଣ ପାଠୁଆ ମାଇପେ ନ ଥିଲେ ?

ସ୍ବା—ଅହେ, ଯେଉଁ କାଳେ ଯେଉଁ ବିଦ୍ୟା । ଏ କାଳକୁ ତ ଏହି ଗୁଣ । ଏବେ ବୁଝିଲଟିକି ଭୋଟ ଅର୍ଥ କଣ ?

ସ୍ତ୍ରୀ—ହଁ, କିଛି କିଛି ବୁଝିଲି । ମୋଟ ଉପରେ ଯେ ବେଶୀ ଭୋଟ ଦେବାବାଲାଙ୍କୁ ହାତ କରିପାରିବ ତାରି ଜୟ । ଯେଉଁମାନେ

ମେମ୍ବର ହେବାକୁ ଇଚ୍ଛାକରିବେ, ସେମାନେ ଦୁଆରେ ଦୁଆରେ ନ ବୁଲିଲେ ଭଲ ହୁଅନ୍ତା ।

ସ୍ୱା—କାହିଁକି, ସେମାନେ ପ୍ରତି ଭୋଟଦାତାଙ୍କ ପାଖକୁ ଗଲେ କ୍ଷତି କଣ ?

ସ୍ତ୍ରୀ—କ୍ଷତି ନାହିଁ କଣ, ଲୋକେ ମୋହବଶରେ ପଡ଼ିଯିବେ, ସ୍ୱାଧୀନ ମତ ଦେଇ ପାରିବେ ନାହିଁ । ଯେ ଦେଶପାଇଁ କାମ କରିବ, ତାକୁ ତ ଲୋକେ ବଳେ ପସନ୍ଦ କରିବେ, ସେ କାହିଁକି ଭୋଟ ଭିକ୍ଷାକରି ବୁଲିବ ? ସେ କାହିଁକି ଅନ୍ୟର ନିନ୍ଦା କରିବ ? ସେ କାହିଁକି ଅନ୍ୟଦ୍ୱାରା ନିଜ ପ୍ରଶଂସା ଗାଇବା ପାଇଁ ଖର୍ଚ୍ଚ କରିବ ? ସେ କାହିଁକି ପରଧନ ନେଇ ଏଥିରେ ଖର୍ଚ୍ଚ କରିବ ? ସେ କାହିଁକି ଏତେ ବ୍ୟାକୁଳ ହେବ ? ଏଗୁଡ଼ାକ ମତେ ଭଲ ଲାଗୁ ନାହିଁ ।

ସ୍ୱା—ଅହେ, ଏ ଭୋଟ କାରଖାନା ଏହିପରି ବିଲାତରେ ହୁଏ; ଆମ ଦେଶରେ ନ ହେବ କାହିଁକି ?

ସ୍ତ୍ରୀ—ସବୁ ତ ବିଲାତଠାରୁ ଶିଖିବ, ଏ କଥା ନ ଶିଖିବ କାହିଁକି ? ତେବେ ମୁଁ ଦେଖୁଛି, ଯେ ଏ ଭୋଟପାଇଁ ବିକଳ ହେବ, ତାକୁ ଭୋଟ ନ ଦେବା ଉଚିତ । ସେଥିରୁ ଜଣାଯିବ, ସେ ନିଜ ସ୍ୱାର୍ଥପାଇଁ ଏତେ ଉଦ୍ୟମ କରୁଛି । ଦେଶସ୍ୱାର୍ଥପାଇଁ ଲୋକେ ନିଜ ସ୍ୱାଧୀନ ମତ ଦେଇ ଯେତେବେଳେ ଲୋକ ବାଛିବେ, ସେତେବେଳେ ଭଲଲୋକ ପାଇବେ । ତେଣିକି ଲୋକେ ନିଜ ମତ ଅନୁସାରେ ଭଲଲୋକ ଦେଖି ମତ ଦିଅନ୍ତେ ।

ସ୍ୱା—ତମେମାନେ ତ ଏଣିକି ଅଧିକାର ପାଉଛ, ସେହିପରି ହେଉ ବୋଲି ସରକାରକୁ ଜଣାଇବ । ଲୋକେ ତ କିଛି ବୁଝି ନାହାନ୍ତି, କଣ ହେବ ?

ସ୍ତ୍ରୀ—ଅହେ, ଲୋକେ ତ ଜାଣି ଅଶିକ୍ଷିତ, ବୁଝି ପାରୁ ନାହାନ୍ତି;
ତମେ ପାଠୁଅ ଯାକ ତ ଲୋକଙ୍କୁ କରାଇ ଦେବ ନାହିଁ।
ତମେ ତ ସବୁ ଅପଣା ଅପଣା ମଧ୍ୟରେ କଳି କରିବ,
ସମସ୍ତେ କହିବ ମୁଁ ବଡ଼, ଲୋକେ କଣ କରିବେ ? ତମେ-
ମାନେ ତ ଲୋକଙ୍କୁ ଟିକା ଓଠରୁ କରି ବ୍ୟସ୍ତ କରିବ,
ତମେମାନେ କାମ କର। ତମ କାମ ଦେଖି ଲୋକେ ବୁଝିବେ
ଯେ, କାମ ବେଳକୁ କେହି ନାହିଁ; ଖାଲି ନାମ ପାଇଁ କଳି
କଜିଅ। ଅମ ମାଇପିବୁଦ୍ଧିକି ତ ପସନ୍ଦ ଧରୁ ନାହିଁ। ଫୁଲ
ଫୁଟିଲେ ତ ଗୁହ ଅହେ ମହକିବ, ବଳେ ଚାଖିବେ !
ସ୍ୱାମୀ—ହଁ, ସେ କଥା ସତ, ତେବେ ଏ ଦେଶରେ ତ ଏ କଥା ନ
ଥିଲା, ନୂଆ ହୋଇ ହେଉଛି; ସମସ୍ତେ ସବୁ ସବୁ ହେଉଛନ୍ତି।
ସ୍ତ୍ରୀ—ଅ ହେ ନାହିଁ ହେ, ଅସଲ କଥା ପଇସା। ଯେବେ ଏମାନଙ୍କୁ
ସ୍ତ୍ରୀ ଝିଅଙ୍କ ଖୋରାକ ନ ମିଳନ୍ତା, ତେବେ କେତେଜଣ
ବାହାରନ୍ତେ ଦେଖନ୍ତେଇଁ ! ସରକାର ଭଲଲୋକ ଦେଖି
ବାଛିକରି ନେଉ ନାହାନ୍ତି ?
ସ୍ୱାମୀ—ସରକାର ଯେବେ ବାଛିକରି ନେବେ, ତେବେ ଦେଶ
ଲୋକଙ୍କର ଅଉ କି ଅଧିକାର ରହିବ ? ସରକାର ଯାହାକୁ
ବାଛିକରି ନେବେ, ସେ ସରକାରଙ୍କ ମୋହବତ ରଖିବେ,
ଦେଶ ଲୋକଙ୍କପାଇଁ ନିର୍ଭୟରେ ଲଢ଼ି ପାରିବେ ନାହିଁ।
ଅଗେ କଣ ସେପରି ହେଉ ନ ଥିଲା କି ? ଦେଖାଗଲା ଯେ,
ସେମାନେ ଲୋକହିତପାଇଁ କିଛି କରି ପାରିଲେ ନାହିଁ।
ସେହି ହେତୁ ସବୁ ଅପତ୍ତି ହେଲା, ସରକାର ସେ କଥା ବୁଝି
ଅଇନ ବଦଳାଇ ଦେଲେ, ଏବେ ଏ କ୍ଷମତା ଲୋକଙ୍କ
ହାତକୁ ଅସିଛି।

ସ୍ତ୍ରୀ—ହଁ, ସେ କଥା ମଧ୍ୟ ସତ । ଯଦି ରମଣୀ ଯେ ଭୋଟ ଦେବା ଅଧିକାର ପାଇଲେ, ଭାରତବର୍ଷ ସ୍ୱର୍ଗକୁ ଉଠିବ, ସେ କଥା ମଧ୍ୟ ମୋ ମନକୁ ଆସୁ ନାହିଁ । ରମଣୀର କର୍ତ୍ତବ୍ୟ ଅଛି, ଦାୟିତ୍ୱ ଅଛି, ଦେଶର ମଙ୍ଗଳ ଅମଙ୍ଗଳରେ ତାର ଭାଗ ଅଛି, ଦେଶର ଉନ୍ନତି ଲାଗି ତାର ଗୁରୁ ଭାର ଅଛି, ମାତ୍ର ଭୋଟ ଦେଲେ ସେ ଦାୟିତ୍ୱ ଶେଷ ହେବ ନାହିଁ । ଆଜି ଭାରତବର୍ଷରେ ଗୋଟାଏ ଧୂଆ ଉଠୁଛି, ନାରୀ ପୁରୁଷର ସମାନ ଅଧିକାର ପାଉ । ଏଥିଲାଗି ଶୁଣୁଛି, କେତେ ମାଇପେ ସଭା ସମିତି କରି ବକ୍ତୃତା କରୁଛନ୍ତି । ମାଇପେ ଭୋଟ ଦେବେ; ଗୃହର କହିବେ; ଓକିଲ, ମୁକ୍ତାର ହେବେ; ସଭାରେ ମେମ୍ବର ହେବେ, ଏଥିଲାଗି ଭାରି ଚିତ୍କାର ଉଠୁଛି । ଆଜିକାଲି ଶିକ୍ଷିତା ସ୍ତ୍ରୀମାନେ ମନେ କରୁଛନ୍ତି, ପୁରୁଷ ଯାହା କରୁଛନ୍ତି, ସେମାନେ କାହିଁକି ତା ନ କରିବେ ?

ସ୍ୱାମୀ—ଏପରି କହିବାରେ ସ୍ତ୍ରୀମାନଙ୍କର କିଛି ଭୁଲ ହେଉଛି ?

ସ୍ତ୍ରୀ—ଭୁଲ ହେଉ ନାହିଁ କଣ ? ମାଇପଙ୍କର କଣ କାମ ନାହିଁ ଯେ ସେମାନେ ଏ ଅଧିକା କାମଗୁଡ଼ାକ କରିବେ ? ଏ ପୃଥିବୀରେ ପ୍ରତ୍ୟେକ ଲୋକ କିଛି କାମ କରିବ । ଯାହାର ଯେପରି ଶକ୍ତି ଅଛି ସେ ସେପରି କାମ କରିବ । ମାଇପେ କଣ ନିଷ୍କର୍ମା ହୋଇ ବସିଛନ୍ତି ? ତାଙ୍କୁ ଭଗବାନ ଯେଉଁ କାମ ଦେଇଛନ୍ତି, ସେଇ କାମ ତ କରି ପାରୁ ନାହାନ୍ତି ଅଉ ଏ ଅଧିକା କଥାକୁ ମନ ବଳାଇଲେ କଣ ହେବ ?

ସ୍ୱାମୀ—ସେ କି କାମ ମ ?

ସ୍ତ୍ରୀ—ସେହି ଯେ ପରମ ପବିତ୍ର ବିଧିନିର୍ଦ୍ଦିଷ୍ଟ କର୍ମ—ସନ୍ତାନ ପ୍ରତିପାଳନ । ଭବିଷ୍ୟତ୍ ବଂଶଧରମାନେ ଉପଯୁକ୍ତ ଭାରତବାସୀ

ହେବାକୁ ଇଚ୍ଛା ଥିଲେ, ସେ କାର୍ଯ୍ୟ ରମଣୀ ହାତରେ ଅଛି । ସେ କାମଟି ତ ସହଜ କାମ ନୁହେ । ସୁପୁତ୍ର ସୁକନ୍ୟା ହେବା ଲାଗି ହିନ୍ଦୁ ରମଣୀ ଦାୟୀ । ସେ ହାଣ୍ଡିଶାଳେ ଥାଇ, ଘର ଭିତରେ ଥାଇ ସେମାନଙ୍କୁ ଯେପରି ଗଢ଼ିଦେବ, ସେମାନେ ସେପରି ହୋଇ ଦାଣ୍ଡକୁ ବାହାରିବେ । ହିନ୍ଦୁ ରମଣୀର ଏ ପବିତ୍ର ଗୁରୁଦାୟିତ୍ୱ ଜ୍ଞାନ ଚଳିଯିବାରୁ କମି ଯାଉଛି । ଏହି ହେତୁ ଅଜି ଭାରତସନ୍ତାନ, ଭାରତ କନ୍ୟା ଭୀରୁ କାପୁରୁଷ ବୋଲି ଜଗତରେ ଊଣ୍ଡିମ ବାଜୁଛି । ଚିତ୍ରାଙ୍ଗଦା ଅର୍ଜ୍ଜୁନଙ୍କୁ କଣ କହିଥିଲେ, ଶୁଣିଛ ନାହିଁ ? ସେ ଆଦର୍ଶଶିକ୍ଷା ଭାରତରେ କାହିଁ ?

ସ୍ୱାମୀ—ଚିତ୍ରାଙ୍ଗଦା ଅର୍ଜ୍ଜୁନଙ୍କୁ କଣ କହିଥିଲେ କି, କହିଲ ?

ସ୍ତ୍ରୀ—ଚିତ୍ରାଙ୍ଗଦା କହିଥିଲେ—

ନୁହେଁ ମୁହିଁ ଦେବୀ, ନୁହେଁ ମୁହିଁ ସାମାନ୍ୟ ରମଣୀ,
ବାଞ୍ଛା ନାହିଁ, ପୂଜା ପାଇ ବସିବ ମୁଁ ସ୍ୱାମୀ ମସ୍ତକରେ,
ଇଚ୍ଛା ନାହିଁ, ଥିବ ପୃଷ୍ଠଦେଶେ ପଡ଼ି ପାଇ ଅବହେଳା ଜ୍ଞାନେ,
ରଖ ମୋତେ ସଦା ପାର୍ଶ୍ୱଦେଶେ, ସମ୍ପଦେ ବିପଦେ,
ଦିଅ ଅନୁମତି, ହେବି ତବ ସାଥୀ ସଙ୍କଟ ପଥରେ,
କଠିନ ବ୍ରତ ପାଳନେ ଅବା ତବ ଦୁରୂହ ଚିନ୍ତାରେ,
ସୁଖେ ଦୁଃଖେ, କର ମୋତେ ସଦା ସହଚରୀ,
ପାଇବ ମୋ ପରିଚୟ ତେବେ ପ୍ରିୟ ନାଥ !
ଧରିଛି ଗରଭେ ମମ ସନ୍ତାନ ତୁମ୍ଭର,
ହୁଏ ଯଦି ପୁତ୍ର, ଅଶେଷ ଦେଇ ବୀରଶିକ୍ଷା,
କରିପାରେ ତାକୁ ମୁହିଁ ଦ୍ୱିତୀୟ ଅର୍ଜ୍ଜୁନ,
ପଠାଇ ଦେବି ଯେ ଦିନ ତବ ଶ୍ରୀ ଚରଣେ ତାକୁ,

ତେବେ ସିନା ଜାଣିବ ହେ ପ୍ରାଣ ପ୍ରିୟତମ,
ମମ ପରିଚୟ ! ଅଛି ଥାଉ କହିଲି ଏତିକି ।

ସ୍ତ୍ରୀ—ଓହୋଃ ! କି ପବିତ୍ର ଭାବ ! କି ପବିତ୍ର ଆଦର୍ଶ ! ହିନ୍ଦୁ-ରମଣୀର ଏ କଠୋର କର୍ତ୍ତବ୍ୟ ଅତି ସ୍ପଷ୍ଟ ପରି ଲାଗୁଛି । ଏ ଆଦର୍ଶ ଆଗରେ ରଖି ଯେତେବେଳେ ହିନ୍ଦୁରମଣୀ କାର୍ଯ୍ୟ କରିବ, ସେତେବେଳେ ଭାରତ ପୁଣି ନୂଆ ହୋଇବ ! ଶିବା-ଜୀଦାଙ୍କ ଉକ୍ତି ପ୍ରତ୍ୟେକ ଭାରତ ରମଣୀର ଗୁରୁମନ୍ତ୍ର ହେବା ଆବଶ୍ୟକ । ଏ ପ୍ରକାର ଶିକ୍ଷା ଘରେ ଘରେ ପ୍ରଚଳିତ ହେବା ଆବଶ୍ୟକ । ଆମ ହିନ୍ଦୁଶାସ୍ତ୍ର ଅନୁସାରେ ମାତା ଯେପରି ହେବ, ପୁତ୍ର କନ୍ୟା ସେପରି ହେବେ । ଗର୍ଭବାସଠାରୁ ସନ୍ତାନ ଯୁବକ ହେବା ପର୍ଯ୍ୟନ୍ତ ମାତାକୁ ଅନେକ ନିୟମ ପାଳି ଚଳିବାକୁ ହେବ ଏବଂ ଏହା ଗୋଟିଏ ବଡ଼ କଠିନ ସାଧନା । ଏ ବିଷୟରେ ହିନ୍ଦୁ ମହର୍ଷିମାନେ କାମଶାସ୍ତ୍ର ନାମକ ଏକ ଶାସ୍ତ୍ର ଲେଖି ଯାଇଛନ୍ତି । ପ୍ରତ୍ୟେକ ସ୍ତ୍ରୀ ପୁରୁଷ ସେ ଶାସ୍ତ୍ରର ନିୟମ-ମାନ ପାଳନ କଲେ ଶୀଘ୍ର ଭାରତର ଉନ୍ନତି ହେବ । ଭାରତ ରମଣୀ ଇଚ୍ଛାକଲେ ପ୍ରତିଜ୍ଞା କଲେ, ବ୍ରତ କଲେ, ଅବିଳମ୍ବରେ ଭୀଷ୍ମ, ଅର୍ଜ୍ଜୁନଙ୍କ ପରି ସନ୍ତାନ ଜନ୍ମ ହେବେ । ଶିବାଜୀଦା ସେହି ହେତୁ କହୁଲେ, ପୁତ୍ରକୁ ଶିକ୍ଷା ଦୀକ୍ଷା ଦ୍ୱାରା ଭୀଷ୍ମ ଅର୍ଜ୍ଜୁନ କରି ପାରିଲେ ତାଙ୍କ ପରିଚୟ ମିଳିବ ।

—:—

## ଦ୍ୱାବିଂଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ ! ଜନ୍ମଭୂମି କାହାକୁ କହନ୍ତି ମ ? ତମେ ତ କେତେ ଥର ଏ କଥା କହ, ମୁଁ କିଛି ବୁଝିପାରେ ନାହିଁ ।

ସ୍ୱା—ଯେ ଯେଉଁଠି ଜନ୍ମ ହୁଏ, ସେ ତାର ଜନ୍ମଭୂମି। ପିଲା ମା ପେଟରୁ ବାହାର ଆଗ ଭୂଇଁ ଉପରେ ପଡ଼େ। ମା ପେଟ ଭିତରେ ପିଲକୁ ସ୍ଥାନ ଦେଇଥାଏ; ମାତ୍ର ବାହାରକୁ ଆସିବା ମାତ୍ରେ ଭୂଇଁ ତାକୁ ସ୍ଥାନ ଦିଏ। ତେଣୁ କହନ୍ତି, ଜନନୀ ଓ ଜନ୍ମଭୂମି ଦୁହେଁ ମାତା ସମାନ। ମାତାକୁ ପୁତ୍ର ଯେପରି ଭକ୍ତି, ସ୍ନେହ ଓ ପୂଜା କରିବ, ଜନ୍ମଭୂଇଁକୁ ମଧ୍ୟ ସେହିପରି ଭକ୍ତି ସ୍ନେହ ଓ ପୂଜା କରିବ। ମାତାଠାରେ ପୁତ୍ର ଯେପରି ଋଣୀ, ଜନ୍ମଭୂମି ନିକଟରେ ମଧ୍ୟ ସେହିପରି ଋଣୀ। ପେଟ ଭିତରେ ଥିଲାବେଳେ ମାତା ତା ନିଜ ରକ୍ତ ଦେଇ ପିଲାକୁ ପୋଷେ, ମାତ୍ର ପିଲା ଜନ୍ମହେଲା ପରେ ଭୂଇଁର ଶସ୍ୟ ଫଳ ମୂଳ ଇତ୍ୟାଦି ଖାଇ ଜୀବନ ଧାରଣ କରେ। ସୁତରାଂ ମାତା ଜନ୍ମଦାତା; ମାତ୍ର ଜନ୍ମଭୂମି ଅନ୍ନଦାତା ଓ ଆଶ୍ରୟଦାତା ମାତା। ଏହି ହେତୁ କହନ୍ତି, ଜନନୀ ଜନ୍ମଭୂମି ସ୍ୱର୍ଗ ଅପେକ୍ଷା ବଡ଼। ଏକମାତା ପେଟରୁ ଯେତେ ସନ୍ତାନ ଜନ୍ମନ୍ତି, ସେମାନେ ଯେପରି ନିଜର ଭାଇ ଭଉଣୀ, ଜନ୍ମଭୂମି ଯେଉଁମାନଙ୍କୁ ଅନ୍ନ ଦେଇ ପୋଷେ, ସେମାନେ ମଧ୍ୟ ସେହିପରି ନିଜର ଭାଇ ଭଉଣୀ।

ସ୍ତ୍ରୀ—ସ୍ୱଦେଶ କାହାକୁ କହନ୍ତି ?

ସ୍ୱା—ନିଜର ଜନ୍ମଭୂମି ଯେଉଁ ଦେଶରେ, ସେ ଦେଶ ତାର ସ୍ୱଦେଶ। ଆମର ଜନ୍ମ କାମାପଡ଼ା ଗ୍ରାମରେ। କାମାପଡ଼ା ଗ୍ରାମ ପୁରୀ ଜିଲ୍ଲାରେ। ପୁରୀ ଜିଲ୍ଲା ଓଡ଼ିଶା ପ୍ରଦେଶରେ। ଓଡ଼ିଶା ପ୍ରଦେଶ ଭାରତବର୍ଷ ଦେଶରେ। ସୁତରାଂ ସମଗ୍ର ଭାରତ ଆମର ସ୍ୱଦେଶ। ଭାରତବର୍ଷରେ ଯେତେ ନର ନାରୀ ଜନ୍ମିଛନ୍ତି ବା ଜନ୍ମିବେ, ସେମାନେ ଆମର ଭାଇ ଭଉଣୀ। ସେମାନଙ୍କ ସୁଖରେ ସୁଖୀ ହେବା ଏବଂ ସେମାନଙ୍କ ଦୁଃଖରେ

ଦୁଃଖୀ ହେବା । ଅସମାନଙ୍କର ପ୍ରଧାନ ଧର୍ମ । ଜନ୍ମଦାତା ମାତା ଉପରେ ଆପଦ ବିପଦ ପଡ଼ିଲେ ପୁଅ ଯେପରି ନିଜ ପ୍ରାଣ ଦେଇ ତାର ଦୁଃଖ ମୋଚନ କରିବାକୁ ଧର୍ମତଃ ବାଧ୍ୟ, ସେହିପରି ସ୍ୱଦେଶର ଆପଦ ବିପଦବେଳେ ପ୍ରତ୍ୟେକ ଦେଶବାସୀ ତାକୁ ସେ ବିପଦରୁ ଉଦ୍ଧାର କରିବାପାଇଁ ବାଧ୍ୟ । ଏହାକୁ କହନ୍ତି ଦେଶସେବା, ଦେଶହିତ, ଦେଶପ୍ରେମ, ଦେଶଭକ୍ତି ଇତ୍ୟାଦି ।

ସ୍ତ୍ରୀ—ଏପରି ହିସାବରେ ସାରା ଦୁନିଆଟା କଣ ଆମର ନୁହେ ?

ସ୍ୱାମୀ—ନୁହେ ବୋଲି କିଏ ନାହିଁ କଲା ? ସେ ତ ଅଧିକା କଥା; ସେ ହିସାବରେ ଏ ବସୁଧାରେ ଯେତେ ଲୋକ ଅଛନ୍ତି, ସମସ୍ତେ ତ ଆମର କୁଟୁମ୍ବ । ତର୍ପଣ କଲାବେଳେ ତ ଏ ଅନନ୍ତ ବ୍ରହ୍ମାଣ୍ଡ ମଧ୍ୟରେ ଯେତେ ଲୋକ ଯେଉଁଠି ମରିଛନ୍ତି, ସମସ୍ତଙ୍କୁ ପାଣି ଦିଆଯାଏ । ଆମର ସମସ୍ତଙ୍କ ସଙ୍ଗେ ସମ୍ବନ୍ଧ ନ ଥିଲେ, ପାଣି ଦିଆ ଯାଆନ୍ତା କାହିଁକି ? ସମସ୍ତେ ଯେବେ ସେ କଥା ବୁଝନ୍ତେ ଏବଂ ସେହି ମତରେ କାର୍ଯ୍ୟ କରନ୍ତେ, ତେବେ ଏ ସଂସାରରେ ଗଣ୍ଡଗୋଳ ହୁଅନ୍ତା କାହିଁକି ? ସେ କଥା ତ ସବୁ ଦେଶଲୋକେ ବୁଝୁ ନାହାନ୍ତି । ଲୋଭ ହେତୁ ଏକ ଦେଶର ଲୋକେ ଆସି ଅନ୍ୟ ଦେଶ ଲୋକଙ୍କ ଗଳାକାଟି ଭାତ ନେଇ ଯାଉଛନ୍ତି । ଏହି କାରଣରୁ ଏକ ଦେଶର ଲୋକଙ୍କ ସଙ୍ଗେ ଅନ୍ୟ ଦେଶର ଲୋକଙ୍କର କଳିକଜିଆ, ମାରପିଟ, ଯୁଦ୍ଧ ଇତ୍ୟାଦି ଗଣ୍ଡଗୋଳ ହେଉଛି । କହିଲ ଦେଖି; ତମେ ଯେବେ ଆସି ମୋ ଘରକୁ ଅନ୍ନ ନେଇ ପିଠାକୁ ବସିବ, ମୁଁ ମୋ ଅନ୍ନ ମୁଠାକ ରଖିବା ପାଇଁ ଚେଷ୍ଟା କରିବି ନାହିଁ ? ମୋ ବଳ ଯେତେ ଦୂର ପାଇବ, ମୁଁ ତ ଲଢ଼ିବି, ତେଣିକି ତମ ବଳ ବେଶୀ ହେଲେ

ତେମେ ନେଇଯିବ, ମୁଁ ଭୋକରେ ମରିବି । ଏହା କଣ ନ୍ୟାଯ୍ୟ ହେଲା ?

ସ୍ତ୍ରୀ—ନ୍ୟାଯ୍ୟ ତ ହେଲା ନାହିଁ । ସେମାନେ ତାହାଙ୍କ ଏ କଥା ବୁଝନ୍ତି ନାହାନ୍ତି ?

ସ୍ୱା—ତାହାଙ୍କ ଏ କଥା ବୁଝନ୍ତି ନାହାନ୍ତି—ବୁଝି ପରୁ ନାହଁ ? ଦେଖି ନାହଁ ଗୋଟାଏ କୁକୁର ଖାଉଛି, ଅନ୍ୟ ଗୋଟାଏ ବଳୁଆ କୁକୁର ଅସିଲେ ସେ ତାକୁ ଘଉଡ଼ାଇ ଦେଇ ମାଡ଼ି ବସି ଖାଇ ଯାଉଛି ।

ସ୍ତ୍ରୀ—ହଁ, ପଶୁ ଜାତିରେ ଏ କଥା ଦେଖା ଯାଉଛି । ମନୁଷ୍ୟ ତ ପଶୁ ନୁହେଁ ? ପଶୁର ସିନା ଜ୍ଞାନ ନାହିଁ ବୋଲି ସେ ଏପରି କରୁଛି, ମନୁଷ୍ୟର ତ ଜ୍ଞାନ ଅଛି, ସେ କାହିଁକି ଏପରି କରୁଛି ?

ସ୍ୱା—କି ହେ, ମନୁଷ୍ୟ କଣ ପଶୁ କଣ ? ମନୁଷ୍ୟଠାରେ ପଶୁବୃତ୍ତି ଅଛି । ଆହାର, ନିଦ୍ରା, ଭୟ, ମୈଥୁନ ଏ ଗୁରି କାର୍ଯ୍ୟରେ ମନୁଷ୍ୟ ଓ ପଶୁ ମଧ୍ୟରେ କିଛି ପ୍ରଭେଦ ନାହିଁ ବୋଲି ଭଗ ଗୀତା କହୁଛନ୍ତି । ମନୁଷ୍ୟଠାରେ ଜ୍ଞାନ ଅଛି ସତ୍ୟ, ମାତ୍ର ମନୁଷ୍ୟ ଯେବେ ଜ୍ଞାନଲାଭ ନ କରେ, ତେବେ ତ ସେ ପଶୁ । ମନୁଷ୍ୟ ଜନ୍ମ ପାଇବାର ଯେଉଁଠିକି ଲାଭ, ସେ ଠିକି ମନୁଷ୍ୟ ଯେବେ ଅର୍ଜନ କରି ନ ପାରେ, ତେବେ ସେ ପଶୁ ।

ସ୍ତ୍ରୀ—ମନୁଷ୍ୟ ଜନ୍ମର ଅଧିକା ଲାଭ କଣ ?

ସ୍ୱା—ଭାଗବତ କହୁଛନ୍ତି—

ମନୁଷ୍ୟ ଜନ୍ମର ଏ ଲାଭ,
ଯେବେ ଗୋବିନ୍ଦେ କରେ ଭାବ ।

ସ୍ତ୍ରୀ—ଗୋବିନ୍ଦଙ୍କଠାରେ କିପରି କଣ ଭାବ କରିବ ମ ?

ସ୍ୱା—ମନୁଷ୍ୟର ଯଦି ଏତିକି ଜ୍ଞାନ ହୁଏ ଯେ, ଭଗବାନ ଏ ସୃଷ୍ଟିର କର୍ତ୍ତା, ପ୍ରାଣୀ ମାତ୍ରକେ ସେହି ଭଗବାନଙ୍କର ସନ୍ତାନ, ସମସ୍ତଙ୍କ ହୃଦୟରେ ସେହି ଭଗବାନ ବା ଗୋବିନ୍ଦ ଅଛନ୍ତି, ତେବେ ମନୁଷ୍ୟ ବୁଝି ପାରିବ ଯେ, ଏ ଜଗତରେ ଯେତେ ପ୍ରାଣୀ ଅଛନ୍ତି, ସମସ୍ତେ ମୋର କୁଟୁମ୍ବ । ଜଣେ ବଳୁଆ ହୋଇ ପାରେ, ଜଣେ ନିର୍ବଳୁଆ ହୋଇପାରେ, ତଥାପି ଦୁର୍ବଳଠାରେ ଯେଉଁ ଭଗବାନ ଅଛନ୍ତି, ନିର୍ବଳୁଆଠାରେ ତ ସେହି ଭଗବାନ ଅଛନ୍ତି । ମୁଁ ବଳୁଆ ହେଲି ବୋଲି ନିର୍ବଳୁଆ ଉପରେ ଅତ୍ୟାଚାର କରିବି କାହିଁକି ? ମନୁଷ୍ୟର ଏ ଠିକ ଜ୍ଞାନ ହେଲେ ଆଉ କେହି କାହା ଉପରେ ଅତ୍ୟାଚାର କରନ୍ତି ନାହିଁ। ଏହି ଜ୍ଞାନ ଅର୍ଥ ଗୋବିନ୍ଦ ଭାବ ।

ସ୍ତ୍ରୀ—ଏ କଳିକାଳରେ ଏପରି ଭାବ କାହାର ହେଉଛି କି ? ଆଜି ତ ମାକୁ ପୁଅ ଗୋଟାଏ ମାରୁଛି, ବାପକୁ ପୁଅ ମାନୁ ନାହିଁ, ଆଉ କାହା କଥା କହିବ ?

ସ୍ୱା—ତା ହେଉଛି, ତେବେ ଏ ସବୁ ଅଧର୍ମ । ପାପ ବେଶୀ ହେଲାରୁ ଲୋକଙ୍କର ଲୋଭ ବଢ଼ୁଛି, ଲୋଭ ବଢ଼ିଲାରୁ କେହି କାହାକୁ ଛାଡ଼ି ପାରୁ ନାହାନ୍ତି । ଏହି ଅଚିହ୍ନା ବ୍ୟାଧି ଘୋଟିଲାରୁ ଲୋକେ ଆପଣା ଆପଣା ମଧ୍ୟରେ କଳି ଗୋଳ, ବିବାଦ ବିସମ୍ବାଦ କରୁଛନ୍ତି । ପଶୁମାନଙ୍କ ପରି କାମୁଡ଼ା କାମୁଡ଼ି ହେଉଛନ୍ତି । ଏକ ଦେଶ ଅନ୍ୟ ଦେଶ ଉପରେ ବଳ ପ୍ରୟୋଗ କରୁଛି । ଯେଉଁ ଦେଶ ଉପରେ ବଳ ପ୍ରୟୋଗ ହେଉଛି, ସେ ଦେଶ ଆତ୍ମରକ୍ଷା ପାଇଁ ଚେଷ୍ଟା କରୁଛି ।

ସ୍ତ୍ରୀ—ଆତ୍ମରକ୍ଷା ଅର୍ଥ କଣ ?

ସ୍ୱା—ଅହେ, ନିଜ ଜୀବନକୁ ରକ୍ଷା କରିବାଲାଗି ଭଗବାନ ପ୍ରତ୍ୟେକ ପ୍ରାଣୀକି ଗୋଟିଏ ଲେଖାଏଁ ଅସ୍ତ୍ର ଦେଇଛନ୍ତି। ଯେତେବେଳେ କୌଣସି ପ୍ରାଣୀକି କୌଣସି ପ୍ରାଣୀ ଆକ୍ରମଣ କରିବ, ସେ ପ୍ରାଣୀ ତା ନିଜ ଜୀବନ ରକ୍ଷା କରିବା ଲାଗି ସେ ଅସ୍ତ୍ର ବ୍ୟବହାର କରିବ। ଯଦି ପିମ୍ପୁଡ଼ି ଉପରେ ଅଙ୍ଗ ଅଡ଼ିଲେ ସେ କାମୁଡ଼ି ଦେବେ, ସାପ ଉପରେ କେହି ଗୋଡ଼ ପକାଇ ଦେଲେ ସେ ଦଂଶିଦେବ, ଗୋରୁ ଗାଈଙ୍କି ଆକ୍ରମଣ କଲେ ସେ ଶିଙ୍ଗରେ ଭୁଷି ଦେବେ, ମାଙ୍କଡ଼ ଅମ୍ପୁଡ଼ି କାମୁଡ଼ି ଦେବ ଇତ୍ୟାଦି।

ସ୍ତ୍ରୀ—ମନୁଷ୍ୟଠାରେ ତ ସେପରି କିଛି ଅସ୍ତ୍ର ନାହିଁ, ମନୁଷ୍ୟ କଣ କରିବ ?

ସ୍ୱା—ମନୁଷ୍ୟଠାରେ ମହାଅସ୍ତ୍ର ଅଛି। ସେ ଅସ୍ତ୍ର ବୁଦ୍ଧି, ବିବେକ ଓ ଜ୍ଞାନ। ଭାଗବତ ପଦ କହୁଛି—

ବୁଦ୍ଧି ବିବେକ ଜ୍ଞାନ ବଳେ,
ମରଣ ଜିଣିପାରେ ହେଳେ।

ମନୁଷ୍ୟ ବୁଦ୍ଧି ବଳରେ ସିଂହକୁ ଜିଣି ପାରେ, ନିର୍ବୁଦ୍ଧିଆ ହେଲେ ମରିବ। ଆତ୍ମରକ୍ଷା ପାଇଁ ମନୁଷ୍ୟ ନିଜ ବୁଦ୍ଧି ବଳରେ କେତେ ଉପାୟ କୌଶଳ କରି ପାରୁଛି। ମନୁଷ୍ୟ ଅରଣ୍ୟ ଭିତରେ ମେଲ ବାନ୍ଧି ବାସ କରୁଛି, ନାନା ପ୍ରକାର ଅସ୍ତ୍ର, ଶସ୍ତ୍ର, ଯାନ, ବାହନ ତିଆରି କରୁଛି, ନାନା ପ୍ରକାର ଔଷଧ କରୁଛି, ଇତ୍ୟାଦି ନାନା ପ୍ରକାର ଆତ୍ମରକ୍ଷା କାର୍ଯ୍ୟ ମନୁଷ୍ୟ ବୁଦ୍ଧିବଳରେ କରୁଛି। ଦେଖ, ବୁଦ୍ଧିବଳରେ ଲୋକେ ଆକାଶରେ ଉଡ଼ୁଛନ୍ତି, ଜଳରେ ବୁଡ଼ୁଛନ୍ତି, ମାସକ ବାଟ ଦିନକେ ଯାଉଛନ୍ତି। ସେ ଯେତେ ବୁଦ୍ଧି ଖେଳାଇବ, ସେ ସେତେ ଜ୍ଞାନୀ ହେବ। ମନୁଷ୍ୟ ଜ୍ଞାନ ବଳରେ ଈଶ୍ୱରଙ୍କ ସାକ୍ଷାତ ଲାଭ କରୁଛି। ଏ ସୃଷ୍ଟିରେ

ଯେତେ ପ୍ରାଣୀ ଅଛନ୍ତି, ମନୁଷ୍ୟ ସବୁଠାରୁ ଶ୍ରେଷ୍ଠ । ମନୁଷ୍ୟ ଯେବେ ବୁଦ୍ଧି ପରିଚାଳନା କରି ନ ପାରିବ, ତେବେ ହାରିବ। ମନୁଷ୍ୟଙ୍କୁ ଭଗବାନ ଏହାଠାରୁ ବଳି ଅନ୍ୟ କି ଅସ୍ତ୍ରଶସ୍ତ୍ର ଦେଇଅଛନ୍ତି ?

ସ୍ତ୍ରୀ—ଯଦି ବୁଦ୍ଧିବଳ ପ୍ରଧାନ ଅସ୍ତ୍ର, ତେବେ ତ ଯାହାର ବୁଦ୍ଧିବଳ ବେଶୀ, ସେ ଅନ୍ୟ ଉପରେ ଅତ୍ୟାଚାର କରିବ, ଆଉ ନ୍ୟାୟ ଅନ୍ୟାୟ କଣ ?

ସ୍ୱା—ନ୍ୟାୟ ଅନ୍ୟାୟ ନ ଥିଲେ ସଂସାର ଚଳିବ କିପରି ? ଯେ ଯେତେ ବଳଶାଳୀ ହେଉ, ସେ ଯେତେ ବୁଦ୍ଧିମାନ ହେଉ, ନ୍ୟାୟ ପଥ ଛାଡ଼ିଲେ ତାର ପାପ ହେବ ଏବଂ ଏଥିପାଇଁ ସେ ଦଣ୍ଡ ଭୋଗ କରିବ । ଭଗବାନ ସ୍ୱୟଂ ଗୀତାରେ କହିଛନ୍ତି— ଯେତେବେଳେ ପୃଥିବୀରେ ଅନ୍ୟାୟ ଅଧର୍ମ ବେଶୀ ହେବ, ତେତେବେଳେ ସେ ନିଜେ ଅବତାର ହୋଇ ଦୁଷ୍ଟମାନଙ୍କୁ ସଂହାର କରି ଶିଷ୍ଟମାନଙ୍କୁ ରକ୍ଷା କରିବେ । ପୁରାଣ ପଢ଼ିଛ ଟିକି ? ରାବଣ ଭାରି ବଳୁଆ, ଭାରି ବୁଦ୍ଧିମାନ, ମାତ୍ର ଯେତେବେଳେ ଧର୍ମପଥ ଛାଡ଼ିଲା, ସଂସାର ଲୋକମାନଙ୍କୁ କଷ୍ଟ ଦେଲା, ତେତେବେଳେ ରାମ ଅବତାର ହେଲା । କଂସ ନାଶପାଇଁ କୃଷ୍ଣଙ୍କ ଅବତାର ହେଲା । ଏପରି ପୁରାଣରେ ଅନେକ ଦୃଷ୍ଟାନ୍ତ ଦେଖିବ । ଯେତେବେଳେ ଲୋକକ୍ଷୟ ଦରକାର ପଡ଼ୁଛି, ସେତେବେଳେ ନାନା ଉପାୟରେ ଏ କାର୍ଯ୍ୟ ହେଉଛି । ବରଷ ପଡ଼ି ଲୋକେ ମରୁଛନ୍ତି, ଭୂମିକମ୍ପରେ ଲୋକେ ମରୁଛନ୍ତି, ମହାମାରୀ, ଦୁର୍ଭିକ୍ଷ, କାନ୍ତାରରେ ମରୁଛନ୍ତି ।

ସ୍ତ୍ରୀ—ଯେବେ ଭଗବାନ ନ୍ୟାୟ ଅନ୍ୟାୟ ପାଇଁ ଦଣ୍ଡ ଦେବେ; ତେବେ ମନୁଷ୍ୟ କାହିଁକି ଛଟପଟ ହେବ; ଅସ୍ତ୍ରରକ୍ଷା ପାଇଁ ଚେଷ୍ଟା କରିବ।

ସ୍ବାମୀ—ତମ କହିବା ମତଲବ ଏହି ଯେ, ଆମେ ଘରରେ ତେଲ ପକାଇ ନିଶ୍ଚିନ୍ତରେ ଶୋଇବା, ଭଗବାନ ଆସି ଆମ ଶତ୍ରୁଙ୍କୁ ଦଣ୍ଡ ଦେବେ । ଏହା ହୋଇ ପାରେ ନାହିଁ । ମନୁଷ୍ୟର ବୁଦ୍ଧିବଳ ଯେତେବେଳେ ଶେଷ ହେବ, ମନୁଷ୍ୟଙ୍କୁ ଆଉ କିଛି ବୁଦ୍ଧି ବାଟ ଦେଖା ନ ଯିବ, ତେତେବେଳେ ଭଗବାନ ସହାୟ ହେବେ । ମନୁଷ୍ୟ ତାର ନିଜ କର୍ତ୍ତବ୍ୟ କର୍ମ କରିବାକୁ ବାଧ୍ୟ । ମନୁଷ୍ୟ ଅଳସୁଆ ହୋଇ ଶୋଇଲେ ତା କଥା କେହି ଶୁଣିବେ ନାହିଁ । ନ୍ୟାୟ ପଥରେ ଥାଇ ନିଜ କର୍ତ୍ତବ୍ୟ କର୍ମ କରିବ । ଶୁଣି ନାହଁ, ଅର୍ଜୁନ ଯେତେବେଳେ ଯୁଦ୍ଧ କରିବେ ନାହିଁ ବୋଲି କହିଲେ, ଭଗବାନ କହିଲେ, ତା ହେବ ନାହିଁ, ତାଙ୍କ ସହିତ ଯୁଦ୍ଧ କରିବାକୁ ହେବ । ଯୁଦ୍ଧ କରିବା କ୍ଷତ୍ରିୟର କର୍ତ୍ତବ୍ୟ । ଜାଗ୍ରତ ହୁଅ, ଉଠ, କର୍ମ କର, ଫଳାଫଳ ଭଗବାନ ବିଚାର କରିବେ । ମନୁଷ୍ୟ ଏହି ନୀତି ଧରି ସର୍ବଦା କାର୍ଯ୍ୟରେ ତତ୍ପର ଥିବ । ଜନନୀ ହେଉ ବା ଜନ୍ମଭୂମି ହେଉ, ଆପଦ ବିପଦବେଳେ ପ୍ରତ୍ୟେକ ନରନାରୀ ଆଗୁଆ ଭଳି ଠିଆ ହେବା ଧର୍ମ । ଜନନୀ ବା ଜନ୍ମଭୂମିର ଅବମାନନା, ଦୁରବସ୍ଥା ଦେଖି ଯେଉଁ ସନ୍ତାନର ହୃଦକୁ ନ ବାଧେ, ସେ ଅଧମ ସନ୍ତାନ ! ଯାହାର ଯେତେ ଶକ୍ତି ଅଛି, ଯାହା ହାତରେ ଯାହା ହୋଇ ପାରିବ, ସେ ତାହା କରି ଜନ୍ମଭୂମିର ମଙ୍ଗଳକର କାର୍ଯ୍ୟ କରିବ ।

ସ୍ତ୍ରୀ—ଜନ୍ମଭୂମିର ମଙ୍ଗଳକର କାର୍ଯ୍ୟ କଣ ?

ସ୍ବାମୀ—ମାତାର ମଙ୍ଗଳକର କାର୍ଯ୍ୟ କଣ ? ମାତା ସୁଖରେ ରହିବ, ତାର ଖାଇବା ପିଇବାର କିଛି କଷ୍ଟ ହେବ ନାହିଁ; ମାତାଙ୍କୁ କେହି ଅପମାନ ଦେବ ନାହିଁ, ମାତାର ଧନ ଦ୍ରବ୍ୟ କେହି

କାଢ଼ି ନେବ ନାହିଁ, ମାତାର ଯଶ ଗୌରବ ଦେଶ ଦେଶାନ୍ତରରେ ବିଖ୍ୟାତ ହେବ, ଇତ୍ୟାଦି କଥା ମାତାର ମଙ୍ଗଳକର କାର୍ଯ୍ୟ । ସେହିପରି ଜନ୍ମଭୂମିର ଲୋକେ ସୁଖରେ ରହିବେ, ସେମାନଙ୍କ ଅନ୍ନ କେହି କାଢ଼ି ନ ନେବ, ସେମାନଙ୍କ ଧନ ଦ୍ରବ୍ୟ କେହି କାଢ଼ି ନ ନେବ, ସେମାନେ ଶିଳ୍ପ, ସାହିତ୍ୟ, ସ୍ଥାପତ୍ୟ, ବାଣିଜ୍ୟ, ବେପାର କରି ସୁଖ ସ୍ୱଚ୍ଛନ୍ଦରେ କାଳଯାପନ କରି ପାରିବେ, ଅନ୍ୟ କେହି ସେମାନଙ୍କ ଉନ୍ନତି ପଥରେ ବାଧା ଦେଇ ନ ପାରିବ, ସେମାନେ ଅବାଧରେ ଆପଣା ଘର କଥା ଆପେ ବୁଝି ପାରିବେ, ଇତ୍ୟାଦି ପ୍ରକାର କାର୍ଯ୍ୟ ଜନ୍ମଭୂମିର ମଙ୍ଗଳକର କାର୍ଯ୍ୟ । ଏ ସମସ୍ତଙ୍କ ଉନ୍ନତି ଦେଶର ଉନ୍ନତି । ଜନ୍ମଭୂମି ଉନ୍ନତ ହେଲେ ଦେଶ ବିଦେଶରେ ତାର ଜୟପତାକା ଉଡ଼ିବ ଏବଂ ତାର କୀର୍ତ୍ତି, ଯଶ, ଗୌରବ ଦେଶ ଦେଶାନ୍ତରରେ ବିଖ୍ୟାତ ହେବ । ଦେଶ ବିଦେଶରେ ସେମାନଙ୍କୁ କେହି ଅପମାନ ନ ଦେବ । ଏ ସବୁ କାର୍ଯ୍ୟ ଲାଗି ପ୍ରତ୍ୟେକ ନରନାରୀ ଦାୟୀ । ଜନ୍ମଭୂମିର ଏ ସବୁ କାର୍ଯ୍ୟ ଲାଗି ପ୍ରତ୍ୟେକ ନରନାରୀ ପ୍ରାଣପଣେ ଚେଷ୍ଟା କରିବ । ଏହା ଆମ୍ଭମାନଙ୍କର କର୍ତ୍ତବ୍ୟକର୍ମ ଓ ଧର୍ମ । ପ୍ରତ୍ୟେକ ଦେଶବାସୀ ଏ ଭାବରେ ଅନୁପ୍ରାଣିତ ହେଲେ, ଜନ୍ମଭୂମିର ଉନ୍ନତି ପଥରେ କେହି ବାଧା ଦେଇ ପାରିବ ନାହିଁ । ଯଦି ଦେଶବାସୀମାନେ ଆପଣା ଆପଣା ହିତକାର୍ଯ୍ୟରେ ନ ଲାଗନ୍ତି, ପରସ୍ପର ମଧ୍ୟରେ କଳିଦ୍ୱନ୍ଦ ଘଟାନ୍ତି, ତେବେ ସେମାନେ ଆଉ ଜନ୍ମଭୂମିର ସମୂହ ଉନ୍ନତିରେ ବାଧା ଦେଇପାରନ୍ତି ନାହିଁ । ତେତେବେଳେ ଅନ୍ୟ ବୁଦ୍ଧିମାନ ଲୋକେ ଅନ୍ୟ ଦେଶରୁ ଆସି ଏହି ସୁବିଧା ସୁଯୋଗ ଦେଖି ସେମାନଙ୍କ ଉପରେ ଅଧିକାର କରି ବସନ୍ତି । ଏହା ଆମର

ଜନ୍ମଭୂମି ପ୍ରତିବର୍ଣ୍ଣ କଥା କହୁ ନାହିଁ, ଏହା ଉଚିତର ଚିରନ୍ତନ ନିୟମ ।

ସ୍ତ୍ରୀ—ଏଥିରେ ଏତେ କଥା ଅଛି, ଅମେ ମାଇପେ ଲୋକେ କିପରି ଜାଣିବୁ ମ ?

ସ୍ୱା—ଅହେ, ତମେ ମାଇପେଯାକ ଏ କଥା ବୁଝୁନାହଁ ବୋଲି ତ ଏତେ କଥା କହୁଛି । ତମେମାନେ ବୁଝୁ ନ ଥିବାରୁ ପିଲାମାନେ ବୁଝୁ ନାହାନ୍ତି । ତମେମାନେ ପରା ହାଣ୍ଡି ଗଢ଼ିବା ବାଲି ! ହାଣ୍ଡି ଗଢ଼ିବାବେଳେ ଯେପରି ଚିତ୍ର କରିବାକୁ ଇଚ୍ଛା କରି ଗାର ପକାଇବ, ସେହିପରି ଚିତ୍ର ଦାଗି ହୋଇଯିବ । ସେହିପରି ଅତି ଶିଶୁବେଳେ ପିଲାକୁ ମା ଯେପରି ଶିଖାଇବ, ସେ ସେପରି ଶିଖିବ । ଭଲକଥା ଶୁଣିଲେ ଭଲ ହେବ, ମନ୍ଦ କଥା ଶୁଣିଲେ ମନ୍ଦ ହେବ । ଏହି ହେତୁ ଜନନୀର ସକଳପ୍ରକାର ବିଦ୍ୟାରୁ କିଛି କିଛି ଜାଣିବା ଉଚିତ । ମାତା ନିଜେ ଜାଣି ନ ଥିଲେ ପିଲାକୁ କି ଶିକ୍ଷା ଦେଇପାରିବ ? ଜନ୍ମଭୂମି କଥା ମାତା ଯେବେ ଶିଶୁ କାନରେ ମୂଳରୁ ପକାଏ, ତେବେ ଶିଶୁ ଅତିଶୀଘ୍ର ଦେଶପ୍ରେମିକ ହେବ । ଅନ୍ୟାନ୍ୟ ଦେଶର ଇତିହାସ ପଢ଼; ଜାଣିବ; ଦେଶ-ଲାଗି କେତେ ଲୋକ ଜୀବନ ଦେଇଛନ୍ତି ଏବଂ ସେମାନଙ୍କ ମାତାମାନେ ସେମାନଙ୍କୁ ପ୍ରଥମରୁ କିପରି ଶିକ୍ଷା ଦେଇଥିଲେ ?

ସ୍ତ୍ରୀ—ଏପରି କେଉଁ ଦେଶରେ କେଉଁ ମାତା ପୁଅକୁ ଶିକ୍ଷା ଦେଇଥିଲା, ଗୋଟିଏ ଦୃଷ୍ଟାନ୍ତ ଦେଲ ?

ସ୍ୱା—ଅଚ୍ଛା, କହୁଛି ଶୁଣ । ଜାପାନ ଦେଶରେ ଗୋଟିଏ ସ୍ତ୍ରୀ ଲୋକ ଥିଲା । ତାର ଗୋଟିଏ ମାତ୍ର ପୁତ୍ର ଥିଲା । ଯେତେବେଳେ ଜାପାନ ଓ ରୁଷିଆ ମଧ୍ୟରେ ଯୁଦ୍ଧ ହେଲା, ସେତେବେଳେ ପ୍ରତ୍ୟେକ ପୁରୁଷ ଯୁଦ୍ଧକୁ ଯିବାକୁ ବାଧ୍ୟ ହେଲେ । ମାତ୍ର ଜାପାନର ନିୟମ

ଅନୁସାରେ ଯେଉଁ ଲୋକର ମାତା ଜୀବିତ ଥିବ ଏବଂ ସେ ମାତାର ଏକମାତ୍ର ପୁତ୍ର ହୋଇଥିବ, ସେ ଯୁଦ୍ଧକୁ ଯାଇ ପାରିବ ନାହିଁ । ଏହା ଜାଣିପାରି ସେ ସ୍ତ୍ରୀ ଲୋକ ମନରେ ଭାରି ଦୁଃଖ ହେଲା । ସେ ଭାବିଲା, ଦେଖ, ସେ ବଞ୍ଚିଥିବାରୁ ତା ପୁଅ ଯୁଦ୍ଧକୁ ଯାଇ ଦେଶସେବା କରିପାରିଲା ନାହିଁ ସିନା ! ତା ଘରେ ପଟେ ଖଣ୍ଡା ଥିଲା । ସେ ତାକୁ ନେଇ ପୁଅକୁ ଦେଇ କହିଲା, "ମୁଁ ବଞ୍ଚିଛି ବୋଲି ତୁ ଦେଶକାର୍ଯ୍ୟ କରି ପାରୁ ନାହୁଁ । ଆଜି ଏ ଖଣ୍ଡା ନେ, ମତେ ହାଣିଦେଇ ଯୁଦ୍ଧକୁ ଯା । ଏହା ନ କରି ପାରିଲେ ତୁ ଜାପାନର ଅଧମ ହୀନ ସନ୍ତାନ ବୋଲି ପରିଚିତ ହେବୁ । 'ପରି ଜୀବନ ଧାରଣ କଲେ ଯେ, ନ କଲେ ସେ ।" ଦେଖିଲ ଦେଖି, ସେ ରମଣୀର ସ୍ବଦେଶପ୍ରେମ କି ପ୍ରକାରର ! ଆମ ଦେଶ ମାଇପେ ଯେତେବେଳେ ଏହି ଦୃଷ୍ଟିରେ ଜନ୍ମଭୂମିକି ଦେଖି ପାରିବେ, ସନ୍ତାନପ୍ରେମ ଅପେକ୍ଷା ସ୍ବଦେଶ-ପ୍ରେମକୁ ଅଧିକ ବୋଲି ଜାଣିବେ, ନିଜ ପ୍ରାଣ ଅପେକ୍ଷା ସ୍ବଦେଶକୁ ବଡ଼ ବୋଲି ମନେ କରିବେ, ସେତେବେଳେ ଜଣାଯିବ ଯେ, ଭାରତ ଜନନୀ ଆଡ଼କୁ ଯାଉଛି ! ବର୍ତ୍ତମାନ ତ ପଶୁ ପକ୍ଷୀଙ୍କ-ଠାରୁ ଆମ ଜ୍ଞାନ ଊଣା, ଆମେ ଜନ୍ମଭୂମିକି ଚିହ୍ନିବା କିପରି ? ଯେଉଁ ଦେଶରେ ମାତା ବା ଜନନୀକି ଜୀଅନ୍ତା ଦେବତାପରି ପୂଜା କରୁଥିଲେ, ସେ ଦେଶରେ କାଳ ପ୍ରଭାବରୁ ତାଙ୍କୁ ଗୋଇଠା ମାରିଲେଣି, ସେ ଦେଶରେ ଅଉ ଜନ୍ମଭୂମିକି ଚିହ୍ନିବେ କିପରି ?

ସ୍ତ୍ରୀ—ଜୀବନ୍ତ ଦେବତା ପରି କଣ ପୂଜା କରୁଥିଲେ ମ ?

ସ୍ବାମୀ—ମହାଭାରତରେ ପଢ଼ି ନାହଁ, ଜଣେ ବ୍ୟାଧ ଥିଲା, ସେ ଭାରି ଧାର୍ମିକ । ଜଣେ ବ୍ରହ୍ମଚାରୀ ତପସ୍ୟା କରି ଗର୍ବ କଲେ ଯେ,

ତାଙ୍କର ସିଦ୍ଧିଲାଭ ହୋଇଛି; ସେ ଯାହାକୁ ଚାହିଁବେ ସେ ଭସ୍ମ ହୋଇଯିବ । ଏପରି ଭାବି ଯେଉଁ ଗଛ ମୂଳେ ତପସ୍ୟା କରୁଥିଲେ, ତା ଉପରକୁ ଚାହିଁଲେ । ଦୈବାତ୍ ଯୋଡ଼ାଏ ପକ୍ଷୀ ବୃକ୍ଷ ଉପରେ ଥିଲେ, ମରି ତଳେ ପଡ଼ିଗଲେ । ସେ ସନ୍ୟାସୀ ମନେ କଲେ ଯେ, ତାଙ୍କ ଦୃଷ୍ଟିରେ ଏ ପକ୍ଷୀ ଭସ୍ମ ହୋଇଗଲେ । ମନରେ ଏହି ଗର୍ବ କରି ଜଙ୍ଗଲମଧ୍ୟରୁ ଯାଇ ଗୋଟିଏ ଗ୍ରାମରେ ବ୍ରାହ୍ମଣ ଘରେ ପହଞ୍ଚିଲେ । ବ୍ରାହ୍ମଣ ଘରେ ନାହିଁ, ବ୍ରାହ୍ମଣୀ ଭାତ ରାନ୍ଧୁଛି, ସେ ବ୍ରାହ୍ମଣୀ ଭାରି ପତିବ୍ରତା । ସନ୍ନ୍ୟାସୀ ଅନେକ ଡାକିଲେ, ଭିକ୍ଷା ମାଗିଲେ; ମାତ୍ର ବ୍ରାହ୍ମଣୀ ଉତ୍ତର ଦେଲା ଯେ, ତାର ସ୍ୱାମୀପାଇଁ ସେ ଭାତ ରାନ୍ଧୁଛି । ସେ କାମ ନ ସାରିଲେ ଭିକ୍ଷା ଦେଇ ପାରିବ ନାହିଁ । ସନ୍ନ୍ୟାସୀ ଭାରି ରାଗିଗଲେ, ଶାପ ଦେବାକୁ ଧମକ ଦେଲେ । ବ୍ରାହ୍ମଣୀ କହିଲା, ତାକୁ କଣ ସେ ପକ୍ଷୀ ମନେ କରିଛନ୍ତି କି, ଭସ୍ମ କରିଦେବେ ? ସନ୍ନ୍ୟାସୀ ଅବାକ୍ ହେଲେ; ଭାବିଲେ, ଜଙ୍ଗଲ କଥା ଏ ବ୍ରାହ୍ମଣୀ ଘରେ ଥାଇ ଜାଣିଲା କପରି ? ବ୍ରାହ୍ମଣୀ ତେବେ ବେଶୀ ଜ୍ଞାନୀ । ସନ୍ନ୍ୟାସୀ ବ୍ରାହ୍ମଣୀର ଶିଷ୍ୟ ହେବାକୁ କହିଲେ । ସେ ଉତ୍ତର ଦେଲେ ଯେ, ତାଠାରୁ ଅଧିକ ଜ୍ଞାନୀ ବ୍ୟାଧ ନିକଟକୁ ଯାଅ । ସେ ସନ୍ନ୍ୟାସୀ ସେହି ବ୍ୟାଧ ପାଖକୁ ଗଲେ । ବ୍ୟାଧ ପ୍ରତିଦିନ ପଶୁପକ୍ଷୀ ମାରି ମାଂସ ବିକ୍ରୟ କରି ଜୀବନଯାତ୍ରା ଚଳାଏ । ସନ୍ୟାସୀ ଅନେକ ଦିନ ବ୍ୟାଧ ପାଖରେ ଅନୁସରଣ କରି ରହିଲେ । କିଛି ବିଶେଷତ୍ୱ ଦେଖି ପାରିଲେ ନାହିଁ । କେତେ ଦିନ ପରେ ବ୍ୟାଧ ସନ୍ନ୍ୟାସୀଙ୍କି ଧର୍ମ ଉପଦେଶ ଦେଲା । ବ୍ୟାଧ ପିତାମାତାଙ୍କୁ ଦେବତାପରି ପୂଜା କରେ । ପିତାମାତାଙ୍କୁ ଦୋଳିରେ ବସାଇ ସ୍ନାନ କରାଏ । ଫୁଲ ତୁଳସୀ ଦେଇ

ପୂଜାକରେ । ସେମାନଙ୍କୁ ଅନ୍ନଭୋଜନ କରାଇ ସାର ତାଙ୍କ ପ୍ରସାଦ ପାଏ । ବ୍ୟାଧ ଏହିପରି ପ୍ରତିଦିନ ମାତାଙ୍କୁ ପୂଜାକରେ । ବ୍ୟାଧ କହେ, ମାତାପିତା ସାକ୍ଷାତ ଦେବତା, ଏ ଶରୀରର ମୂଳକାରଣ ସେମାନେ, ସୁତରାଂ ସଂସାରରେ ଅନ୍ୟ ଯେ ଦେବଦେବତା ଥିଲେ ଥାନ୍ତୁ; ମାତ୍ର ମନୁଷ୍ୟ ପକ୍ଷରେ ଏ ଦୁଇଜଣ ଜୀବନ୍ତ ଦେବତା । ଏ ଦୁହିଁଙ୍କି ଯେ ପୂଜା ନ କରେ, ସେ ଘୋର ନରକରେ ପଡ଼େ । ଏହା ବ୍ୟାଧର ପରମଧର୍ମ । ଏହି ଧର୍ମକୁ ମୂଳ କରି ବ୍ୟାଧ ସନ୍ନ୍ୟାସୀଙ୍କ ବହୁତ ଧର୍ମ ଉପଦେଶ ଦେଲା । ବ୍ୟାଧଠାରୁ ଏପରି ଗୂଢ଼ ଧର୍ମତତ୍ତ୍ୱ ଶୁଣି ସନ୍ନ୍ୟାସୀ ଅବାକ୍ ହେଲେ ଏବଂ ବ୍ୟାଧର ଶିଷ୍ୟ ହେଲେ । ଏ ଜୀବନ୍ତ ଦେବତା ପୂଜା କ୍ରମେ ଊଣା ହୋଇ ଆସୁଛି ! ଏ ଅବସ୍ଥାରେ ଜନ୍ମଭୂମି-ପ୍ରତି ଲୋକଙ୍କ ଶ୍ରଦ୍ଧା କିପ୍ରକାର ହେବ କିପରି ? ସୁତରାଂ ଏ ସବୁ ଶିକ୍ଷା ମାତାମାନେ ପ୍ରଥମରୁ ପିଲାମାନଙ୍କୁ ଦେଲେ, ଦେଶର ବିଶେଷ ମଙ୍ଗଳ ହେବ ।

ସ୍ତ୍ରୀ—ଆଜ୍ଞା, ଆମ ଦେଶରେ ତ ଏପରି ସବୁ ଶିକ୍ଷା ଥିଲା, ଏବେ ସେ ସବୁ କେଉଁଆଡ଼େ ଉଡ଼ିଗଲା ମ ? ଅନ୍ୟ ଦେଶ ମାନଙ୍କରେ କଣ ଆମରିପରି ଅଶିକ୍ଷିତା ?

ସ୍ୱାମୀ—ଆମ ଦେଶରେ ଶିକ୍ଷା ନାହିଁ । ଆମ ଦେଶରେ ୧୦୦ ଜଣରୁ ୯୫ ଜଣ ଅକ୍ଷର ଚିହ୍ନି ଜାଣନ୍ତି ନାହିଁ । ଆମେରିକା, ଇଂଲଣ୍ଡ, ଜର୍ମାନୀ, ଋଷିଆ ପ୍ରଭୃତି ଦେଶରେ ୧୦୦ ଜଣରୁ ୯୦ ଜଣ ଅକ୍ଷର ଚିହ୍ନନ୍ତି, ଖବରକାଗଜ ପଢ଼ନ୍ତି । ଏହି କାରଣରୁ ସେମାନେ ଦେଶ ବିଦେଶର ଯେତେ ଖବର ଜାଣନ୍ତି, ଆମ ଦେଶ ଲୋକେ ଆପଣା ଜିଲ୍ଲାଟିର ଖବର ସୁଦ୍ଧା ଜାଣନ୍ତି ନାହିଁ । ଏ ଗ୍ରାମ ଲୋକ ଆର ଗ୍ରାମର ଖବର ଜାଣେ ନାହିଁ । ଶିକ୍ଷା ଅର୍ଥ

ତ କେବଳ ବହି ପଢ଼ିବା ନୁହେ । ଯେ ଯେତେ ଅଧିକ ବିଷୟ ଜାଣେ, ସେ ସେତେ ଶିକ୍ଷିତ । ଆଜିକାଲି ଯୁଗରେ ଯେପରି ଖବରକାଗଜ ବାହାରୁଛି, ଯାହାର ଅକ୍ଷର ପରିଚୟ ଥିବ; ସେ ବହୁତ ବିଷୟ ଜାଣି ପାରିବ, ନାନା ଦେଶର ଖବର ଜାଣି ପାରିବ । ସେ ଦେଶର ମେହେନ୍ତରମାନେ ଖବରକାଗଜ ପଢ଼ି ପାରନ୍ତି, ମାତ୍ର ଆମ ଦେଶର ଅନେକ ଉଚ୍ଚଶ୍ରେଣୀର ଲୋକେ ସୁଦ୍ଧା ଖବରକାଗଜ ପଢ଼ନ୍ତି ନାହିଁ । ସମସ୍ତେ ଯେ ଇସ୍କୁଲ କଲେଜରେ ପଢ଼ି ବି. ଏ., ଏମ୍. ଏ. ପାଶ କରିବେ ତାହା ନୁହେ । କେବଳ ଅକ୍ଷର ପରିଚୟ ଠିକ୍ କଲେ, ଭାଷାଜ୍ଞାନ ହେଲା । ଯେଉଁ ମାଆମାନଙ୍କର ଅକ୍ଷର ପରିଚୟ ଅଛି, ସେମାନେ ପ୍ରଥମରୁ ପିଲାଙ୍କ ମନ ସେ ଦିଗକୁ ଟାଣିବା ଆବଶ୍ୟକ । ଆମ ଦେଶ ଲୋକେ କିଛି ଖବର ଜାଣି ନ ପାରି ଓଲୁପରି ହୋଇଛନ୍ତି । ସେମାନେ ଯେବେ ଦେଶ ବିଦେଶର ଖବରବି ଜାଣି ପାରନ୍ତେ, ତେବେ ତାଙ୍କ ଦହ ଶଅଁନ୍ତା; ଦେଶର ଅବସ୍ଥା କଣ ହେଉଛି, ସେମାନେ ଜାଣି ପାରନ୍ତେ । ଏ ମୂର୍ଖତା ଦୂର ନ ହେବା ଯାଏ ଲୋକେ ଏହିପରି ଓଦାକାନ୍ଥୁ ପରି ଥିବେ । ତାଙ୍କ ଦହକୁ କିଛି ଲାଗିବ ନାହିଁ; ଯେତେ ଯେ ଯାହା କହିଲେ ତାଙ୍କ ଦହରେ ଗଲାତ ନାହିଁ, ଜନ୍ମଭୂମି ପ୍ରତି ପ୍ରଗାଢ଼ ଭକ୍ତି ଜନ୍ମେ ନାହିଁ । ସୁତରାଂ କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କର ଅକ୍ଷର ପରିଚୟ କରିବା ନିତାନ୍ତ ଆବଶ୍ୟକ ।

---

## ତ୍ରୟୋବିଂଶ ପରିଚ୍ଛେଦ

ସ୍ତ୍ରୀ—ହଇହେ, ଗୋଟାଏ କଣ ସରକସ ଆସିଛି, ଟିକିଏ ଦେଖି ଯାଆନ୍ତେନିଁ ? ପିଲାମାନେ ଲଗାଇଛନ୍ତି, ଚାଲ ଯିବା, ଦେଖି ଆସିବା !

ସ୍ୱାମୀ—ମାଗଣା ନା କିଛି ପଇସା ଦେବାକୁ ପଡ଼ିବ ?

ସ୍ତ୍ରୀ—ମାଗଣା ନୁହେଁ ମ, ପଇସା ପଡ଼ିବ—ଜଣ ପିଛା ଅଠଅଣା ଲେଖାଏଁ ପଡ଼ିବ । ଆମେ ଅଠଜଣ ଗଲେ ଚାରିଟଙ୍କା ପଡ଼ିବ । ଟଙ୍କା ଚାରିଟା ଦିନେ ଦେବ, ସବୁଦିନେ ତ ଦେବ ନାହିଁ ?

ସ୍ୱାମୀ—ଚାରିଟା ଟଙ୍କା ସିନା ତମକୁ ଅଳ୍ପ ଦିଶୁଛି, ମତେ ତ ଅଳ୍ପ ଦିଶୁ ନାହିଁ !

ସ୍ତ୍ରୀ—କେତେ ମାଇପେ ଯାଉଛନ୍ତି, ସେମାନେ ତ ପୁଣି ପଇସା ଖର୍ଚ୍ଚ କରି ଯାଉଛନ୍ତି ? ଆମେ ମାଇପି ଜନ୍ମ ପାଇଛୁଁ ବୋଲି ଏ କଣରେ ପଡ଼ି ପଡ଼ି ମରିବୁଁ; ଆଜ ଦିନେହେଲେ କେଉଁଆଡ଼େ ବାହାରିବୁଁ ନାହିଁ ? ଯେବେ ପୁଣି ଶରଧାରେ କେଉଁଆଡ଼େ ଯିବାକୁ ମନ କରିବି, ତେବେ ଯୁଗକର ବାଉକଥା ବାହାରିବ । ମାଇପେ ସବୁ କେତେ ପଇସା ଖର୍ଚ୍ଚକରି ବାର ତୀର୍ଥ ବ୍ରତ କରୁଛନ୍ତି, ବାର ଯାତ୍ରା ତୀର୍ଥ ଦେଖୁଛନ୍ତି, ଆମ ପିଛାରେ କଣ ଖର୍ଚ୍ଚ ହେଉଚି ମ ?

ସ୍ୱାମୀ—ହଁ ହେ, ସେ କଥା କଣ ମୁଁ ଦେଖୁ ନାହିଁ ? ମୁଁ କଣ ଏକା ତମରି କଥା କହୁଛି ?—ଆମ ଓଡ଼ିଆ ଘର ସବୁ ମାଇପଙ୍କ ହୁସାବ ଏକା ପରି । ଆଗୋ, ମୁଁ କହୁଛି କଣ କି, ତମେ ପରା ଏତେ କାଳର ଘରଣୀ; କେତେ ପଇସା ରଖିଛ ?

ସ୍ତ୍ରୀ—ମୁଁ କେଉଁଠୁ ପଇସା ରଖିବି ମ ? ଯାହାତ ଦେଉଛ ସବୁ ଖର୍ଚ୍ଚରେ ଯାଉଛି । ମୁଁ କଣ ଘିଅ ଗୁଡ଼ ଖାଇ ଯାଉଛି ? ମୋର ତ ସେହି ପଖାଳ, ମୁଁ କଣ ଗୁଡ଼ାଏ ଖାଇ ଯାଉଛି ?

ସ୍ୱାମୀ—ଅହେ, ନାହିଁ ହେ, ମୁଁ କଣ ଦେଖୁ ନାହିଁ କି ? ତମେ ଗୁଡ଼ାଏ ଖାଇ ଯାଉ ନାହଁ ଯେ, ଖାଇ ଅସୁ ନାହିଁ । ଗୁଡ଼ାଏ ଯାହା ଖର୍ଚ୍ଚ ହେଉଛି ତାର ହିସାବ ରଖ ନାହଁ । ଯେ ହିସାବ ନ ରଖେ, ସେ ଜାଣିପାରେ ନାହିଁ, କେତେ ଆସିଲା କେତେ ଗଲା ! ତମେ ତ ରୋଜଗାର କରୁନାହଁ, କିପରି ଜାଣିବ ପଇସାଟା କେତେ କଷ୍ଟରେ ଆସେ ? ସେତକ ଯେବେ ବୁଝୁଥାନ୍ତ, ତେବେ ସରକସ ଦେଖାରେ ଗୁଡ଼ାଟା ଟଙ୍କା ଖର୍ଚ୍ଚ କରି ଦେଲବେଳକୁ ପ୍ରାଣକୁ ବାଧନ୍ତା ! ତମ ମନକୁ ତ ସେ କଥା ଲାଗୁ ନାହିଁ । ତମେ ଭାବୁଛ, ଟଙ୍କା ତ ଗଛରୁ ଝଡ଼ି ଆସୁଛି, ଗୁଡ଼ାଟା ଟଙ୍କା ଖର୍ଚ୍ଚ ହୋଇଗଲେ କଣ ହୋଇଯିବ ? କାଲିକି ପୁଣି ଆସିବ ନାହିଁ କି ? ଆସୁ ନ ଆସୁ ଆମର କଣ ଅଛି, ମାମଲତ ଯେ କରୁଛି ସେ ବୁଝିବ । ଏ ଗୁଡ଼ାଟା ଟଙ୍କା କଥା ପଡ଼ ନାହିଁ ଯେ, ମୁଁ ସବୁ ବିଷୟରେ ଦେଖୁଛି, ଆମ ଦେଶ ମାଇପେ ମୋଟେ ହିସାବ ଜାଣନ୍ତି ନାହିଁ ।

ସ୍ତ୍ରୀ—ଆମ ଦେଶ ମାଇପେ କଣ ଦୁଧରେ ଅଞ୍ଚୋଇ ଘିଅରେ କୁଳୁ-କୁଞ୍ଚା କରୁଛନ୍ତି ?

ସ୍ୱାମୀ—ଅହେ, ଘିଅ ଦୁଧ ରଖି ପାରିଲେ ସିନା ହୁଅନ୍ତା ? ମୁଁ କହୁଛି, ହିସାବ ଜାଣ ନାହିଁ । ଆମର ଆୟ କେତେ ବ୍ୟୟ କେତେ, ଏ କଥା ପ୍ରଥମରୁ ମନେ ରଖିବା ଉଚିତ । ପୁଣି କେଉଁ କାମରେ କେତେ ବ୍ୟୟ କଲେ କାମ ଚଳିଯିବ, ସେ କଥା ହିସାବ କରି ଦେଖିବା ଉଚିତ । କେଉଁ ବ୍ୟୟ ନିତାନ୍ତ ଆବଶ୍ୟକ; ନ

ହେଲେ ନ ଚଳେ, କେଉଁ ବ୍ୟୟ ନ କଲେ ଚଳିଯିବ, ଏ କଥା ବୁଝିବା ଆବଶ୍ୟକ । ଏ ଭଳି କଥା ଯେ ନ ବୁଝେ, ସେ କି ଘର କରିବ ? ସେଥିପାଇଁ ଘରଣୀ ବେଭାର ବୋଲି କଥା ଅଛି, 'ଯେଉଁ ଘରଣୀ ବେଭାର, ସେ ଘର ଯାଏ ଅପାର କାଳ ।' ଦେଖ, ଆମ ଭାରତବର୍ଷ ହେଉ, ଓଡ଼ିଶା ହେଉ, କମେ ଦରିଦ୍ର ହୋଇ ଯାଉଛି, ଅନେକ ଲୋକଙ୍କୁ ଦି ଓଳି ଦି ମୁଠା ଖାଇବାକୁ ମିଳୁ ନାହିଁ । ଏ ଦେଶରେ ଆମକୁ କେତେ ହିସାବରେ ଚଳିବାକୁ ହେବ, ତମେ କେବେ ଭାବିଛ ? ମହାତ୍ମା ଗାନ୍ଧୀଙ୍କ ନାମ ତ ଶୁଣିଥିବ । ଏବେ ଭାରତ-ବର୍ଷ କାହିଁକି; ଜଗତ ଲୋକେ ତାଙ୍କୁ ଭକ୍ତି କରୁଛନ୍ତି । ସେ ଅଣ୍ଟାକାଳି ଖଣ୍ଡେ ଖଦର ବେହାଣ ପିନ୍ଧୁଛନ୍ତି, ସେଥିରେ ପୁଣି ଅଣ୍ଟୁ ଲୁଚୁ ନାହିଁ । ଖଣ୍ଡେ ଚଦର ଦେହରେ ପକାଉଛନ୍ତି । ତାଙ୍କ ସ୍ତ୍ରୀଙ୍କର ସେହିପରି ଖଣ୍ଡେ ଖଦର ଶାଢ଼ୀ । ସେ ଇଚ୍ଛା କଲେ ହୀରାନୀଳାଜଡ଼ିତ ଲୁଗା ଚଦର ପିନ୍ଧି ପାରନ୍ତେ, ଇଚ୍ଛା କଲେ ବହୁମୂଲ୍ୟ ବସ୍ତ୍ର, ସେମିଜ, ପାଟ ପୀତାମ୍ବର ସ୍ତ୍ରୀକି ପିନ୍ଧାଇ ପାରନ୍ତେ । ତାଙ୍କର କିଛି ପଇସାର ଅଭାବ ନାହିଁ । ତାଙ୍କ ଜୀବନଚରିତ ବହି ସେ ଲେଖିଥିଲେ, ତାକୁ ଆମେରିକାର ଜଣେ ସାହେବ ଲକ୍ଷେ ଟଙ୍କା ଦେଇ କିଣିନେଲେ । ସେ ଲକ୍ଷେ ଟଙ୍କା ପାଇଲେ, ମାତ୍ର ସେ ଟଙ୍କା କଣ କଲେ ଜାଣ ? ସେ ଟଙ୍କାତକ ସମ୍ପ୍ରଦାୟ ସେ ଖଦର ତିଆରି ହେବାପାଇଁ ଦେଇଦେଲେ ।

ସ୍ତ୍ରୀ—ସେ କାହିଁକି ଏପରି ଅଣ୍ଟଲା ଖଣ୍ଡେ ପିନ୍ଧୁଛନ୍ତି ମ ?

ସ୍ୱାମୀ—ସେ କହନ୍ତି, ଆମଦେଶର ଜଳବାୟୁ ଯେପରି, ଏହି ଦି ଖଣ୍ଡ ଲୁଗାରେ ତ କାମ ଚଳିଯିବ, ଅଯଥା ଗୁଡ଼ାଏ ବେଶୀ ବ୍ୟୟ

କହିବା ଦରକାର କଣ ? ଆମ ଦେଶରେ ଏହି ଯେ ଖଣ୍ଡ ଲୁଗା ତ କେତେ ଲୋକଙ୍କୁ ମିଳୁ ନାହିଁ, ସେ କାହିଁକି ଗୁଡ଼ାଏ ବେଶୀ ଲୁଗା ବ୍ୟବହାର କରିବେ ? ଆମ ଦେଶରେ ତ ଲୁଗା ତିଆରି ହେଉ ନାହିଁ, ବିଦେଶୀ ଲୁଗା ଆସି ଆମ ଘରୁ ଧାନ ଚାଉଳ ନେଇ ଯାଉଛି । ଅନ୍ୟ ଦେଶ ଲୁଗା ଆମେ ଯେତେ ବେଶୀ କିଣିବା, ସେ ଦେଶ ଲୋକେ ଆମଠାରୁ ସେତେ ବେଶୀ ପଇସା ନେଇଯିବେ । ଫଳରେ ସେମାନେ ହେବେ ବଡ଼ଲୋକ, ଆମେ ହେବା ଦରିଦ୍ର । ଆମ ଦେଶଲୋକେ କପା କରି ଅଟେଠରେ ସୂତା କାଟି ଲୁଗା କରନ୍ତୁ, ଯେତେ ଇଚ୍ଛା ସେତେ ପିନ୍ଧନ୍ତୁ । ଦେଶର ବର୍ତ୍ତମାନ ଅବସ୍ଥାରେ ପ୍ରତ୍ୟେକେ ଏହି ନୀତି ଧରି ଚଳନ୍ତୁ । ନ ହେଲେ ରକ୍ଷା ନାହିଁ । ଭାରତବର୍ଷ ଉଚ୍ଛନ୍ନ ହୋଇଯିବ । ସେହି ଯେ ଖଣ୍ଡ ଲୁଗା ପିନ୍ଧି ସେ ଲାଟ-ସାହେବ ପାଖକୁ ଯାଆନ୍ତି, ସଭା ସମିତିକୁ ଯାଆନ୍ତି । ତାଙ୍କୁ ତ ଲାଜ ମାଡ଼ୁ ନାହିଁ । ସମସ୍ତେ ତ କୋଟ ପେଣ୍ଟ ଆଦି କେତେ ପୋଷାକ ପିନ୍ଧୁଛନ୍ତି । ମାତ୍ର ବହୁତ ପୋଷାକପିନ୍ଧା ବାବୁଙ୍କର ଦେଶ ବିଦେଶରେ ତା ଗାନ୍ଧୀଙ୍କ ପରି ମାନ୍ୟ ଭକ୍ତି ନାହିଁ । ତାଙ୍କର ଗୁଣ ଅଛି, ସେ ଗୁଣକୁ ଲୋକେ ପୂଜା କରୁଛନ୍ତି, ତାଙ୍କ ପୋଷାକ ଅଳଙ୍କାର ତ କେହି ଦେଖୁ ନାହିଁ । ବୁଢ଼ା କେଡ଼େ ହିସାବ ଧରିଛି ଦେଖୁଛ ଠିକ ?

ସ୍ତ୍ରୀ—କାଣି ଗାଈର ଅଲଗା ଗୋଠ ପରି ତାଙ୍କର ଗୋଟାଏ ଅଲଗା ବାଟ । ତାଙ୍କ ବାଟରେ କେଇ ଜଣ ଚାଲୁଛନ୍ତି ?

ସ୍ୱା—ଯେ ବୁଝୁଛନ୍ତି ତାଙ୍କ ବାଟରେ ଚାଲୁଛନ୍ତି । ଯେ ନ ବୁଝୁଛନ୍ତି ତାଙ୍କୁ ଏ କଥା ଶୁଣି ସଙ୍କଟ ମାଡ଼ି ପଡ଼ୁଛି । ତାଙ୍କ ବାଟରେ ସମସ୍ତେ ଚାଲୁଥିଲେ ତ ଏତେବେଳ ସବୁଙ୍କ ଭାରତର ଘରେ

ଘରେ ଖବର ଚଳନ୍ତାଣି ! ଯେଉଁମାନେ ଏତେବେଳ ସବୁ ବଳଚକଆ ଲୁଗା ପୋଷାକ ପିନ୍ଧି ଅସିଲେଣି, ସେମାନଙ୍କୁ ଗାନ୍ଧିଙ୍କ କଥା ଅଡ଼ୁଆ ଲାଗୁଛି । ତମକୁ ସରକାରରେ ପଇସା ଖର୍ଚ୍ଚ କଥା କହିଲାରୁ ତମକୁ ଯେପରି ଅଡ଼ୁଆ ଲାଗିଲା, ନ ବୁଝିବା ଲୋକେ ସେହିପରି କହୁଅଛନ୍ତି । ହିସାବ ଧରି ପାରୁ ନାହାନ୍ତି, ହିସାବ ବୁଝିଲେ ପଥ ରୁଚିବ ଭଲ ଲାଗୁ ନାହିଁ । ବାପି ଫୁଲିକା ଦାନା ନ ଥାଇ ପଛକେ, ସାହେବଙ୍କ ପରି ପୋଷାକ ନ ପିନ୍ଧିଲେ ଅମକୁ ସାହେବମାନେ କଣ କହିବେ ? ଭାଲେ ଅମକୁ ଅସଭ୍ୟ ବୋଲି ମନେ କରିବେ, ଏହି ଭାବ ମନକୁ ଛୁଇଁଲାରୁ କଣ କରି ଘିଅ ଖାଉଥାଇଁ । ହିସାବ ଜ୍ଞାନ ଥିଲେ, ଅମ ଦେଶରେ ଧାନ ଗହମ ଫଳୁଛି, ଅମେ ଅନ୍ନ ବିନା ମରନ୍ତେଇଁ ? ଅମ ଦେଶ ପୁରୁଷ ସ୍ତ୍ରୀଙ୍କର ଏହିପରି ହିସାବ ଜ୍ଞାନ ! ଅମ ଦେଶରେ ଦେଖୁଛୁ, ମାରୁଆଲି ଜାତଟା ଠିକ୍ ଏ ହିସାବ ! ଯେତେ ଟଙ୍କା ଖର୍ଚ୍ଚ କରିବେ, ଯେତେ ଟଙ୍କା କାରବାର କରିବେ, ଟଙ୍କାରେ ପଇସାଏ ଲେଖାଏଁ ଧର୍ମକାର୍ଯ୍ୟ ପାଇଁ ଅଲଗା ରଖି ଦିଅନ୍ତି । ଏହିପରି ହିସାବରେ ଥିବାରୁ ଆଜି ଯେଉଁ ସହରକୁ ଯାଅ, ଦେଖିବ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରି ସେମାନେ ଧର୍ମଶାଳା, ଗୋଶାଳାମାନ ତିଆରି କରି ଦେଇଛନ୍ତି ! ତମେ ତ ୩୦ ବର୍ଷ ଘରଣୀ ହେଲଣି, ଅନ୍ତ କମରେ ପଚିଶ ହଜାର ଟଙ୍କା ତମ ହାତରେ ଖର୍ଚ୍ଚ କରି ସାରଲଣି, ପଚିଶ ହଜାର ପଇସା ତ ଇଚ୍ଛା କରିଥିଲେ ରଖି କୂଅ ପୋଖରୀ ଖୋଳାଇ ଦେଇପାରି ଥାନ୍ତ ! କାହିଁ, ତମ ହାତରେ ତ ଅଧଲାଏ ନାହିଁ ! ତମକୁ ପରା 'ବଡ଼ାକେ ଭରି ବଡ଼ାକେ ମରି' କଥା କହିଥିଲି । ଯାହାର ବଡ଼ାକୁ ନଜର

ନାହିଁ, ତାର ଫୋଡ଼କୁ ନଜର ନାହିଁ । ଯାହା ଆସୁଛି ତ ଆସୁଛି, ଯାହା ଯାଉଛି ତ ଯାଉଛି, କିଛି ହିସାବ ନାହିଁ । କଥାରେ କହନ୍ତି, 'ତେଲ୍ ନା ଯା ପେଲ୍ ।' ଆମ ହିସାବ ସେହିପରି । ସବୁବେଳେ ହିସାବ ଉପରେ ନଜର ଥିବ । କେବଳ ପଇସା କଉଡ଼ି ବିଷୟରେ ଯେ ନଜର ଥିବ ତା ନୁହେ । ଗୃହର ପରିଷ୍କାର ପରିଚ୍ଛନ୍ନତା ଉପରେ ବିଶେଷ ହିସାବ ରଖିବାକୁ ହେବ । କେଉଁଠି ଅଳିଆ ଜମିଗଲା; କେଉଁଠି ଅଳନ୍ଧୁ ଜମିଗଲା, କେଉଁଠି ପାନଚିଛ ପଡ଼ିଲା, କେଉଁଠି ମଇଳା ଜମିଗଲା, ପ୍ରତିଦିନ ତନ୍ନ ତନ୍ନ କରି ହିସାବ ନେବାକୁ ହେବ । ସାହେବଙ୍କ ଘରର ସ୍ତ୍ରୀମାନେ ଏ ବିଷୟରେ ବଡ଼ ସାବଧାନ । ସେମାନେ ଯେପରି ଅବସ୍ଥାରେ ଥାନ୍ତୁ ଯେତେ ଅଳ୍ପ ରୋଜଗାର କରନ୍ତୁ ପଛେ, ତାଙ୍କ ଘରଦ୍ୱାର ଦେଖିବ ସବୁବେଳେ ସଫା ସୁତୁରା, କେଉଁଠି ଟିକିଏ ହେଲେ ମଇଳା ଦେଖିବ ନାହିଁ । ମାତ୍ର ଆମ ଦେଶ ସ୍ତ୍ରୀ ପୁରୁଷଙ୍କର ଏ ରୁଚିର ମାତ୍ରା କମ୍ ।

ସ୍ତ୍ରୀ—ତମ ଚାକରଙ୍କ କହିଲେ ତ ଶୁଣିବେ ନାହିଁ, ତମେ ତ ସେମାନଙ୍କୁ ଖାତିର କରିବ ନାହିଁ, ଆମକୁ କହିଲେ କଣ ହେବ ?

ସ୍ୱା—ଚାକର ଆମ ଢଙ୍ଗଢାଙ୍ଗ ତ ଦେଖୁଛି । ଚାକର ନ କଲେ ଆମେ ଯେବେ ହାତରେ କରି ଦେଉଥାନ୍ତେ ତେବେ ସେ ବଳେ ଡର ମରି କରନ୍ତା । ସେ ଦେଖୁଛି ଯେ, ଆମେ ତ ଏଗୁଡ଼ାକ ସହି ଯାଉଥାଉଁ, ସେ ନ କଲେ ମଧ୍ୟ ଚଳିଯିବ । ଆମର ପରିଷ୍କାର ପରିଚ୍ଛନ୍ନତା ହିସାବ ଅପେକ୍ଷା ତାର ହିସାବ ତ ବେଶୀ ନୁହେ, ବରଂ କମ୍ । ସେ ମନକୁ କରିବ କାହିଁକି ? ସେ ଆମ ଗତି ଗୋଟି ଦେଖି ଫାଙ୍କିଦିଏ । ସେ ଯେବେ ଦେଖନ୍ତା ଯେ, ସେ ନ

ଭଲେ ମଣିମା ନିଜେ ହାତରେ କରି ପକାଇଲେ, ତେବେ ତାକୁ ଲାଜ ମାଡ଼ନ୍ତା, ଥରେ ନ କରନ୍ତା, ଦିଥର ନ କରନ୍ତା, ତିନିଥର ବେଳକୁ ବଳେ କରନ୍ତା । ସେ ଦେଖୁଛନ୍ତି, ମଣିମା ପାନ ଭାଙ୍ଗୁଛନ୍ତି, କିନ୍ତୁ ଚୂନ ହାତ ଗୃହଅଡ଼େ ବୋଳା ହେଉଛି । ଖଟରେ ଚୂନ, କାନ୍ଥରେ ଚୂନ ଯେଉଁଠି ଦେଖ, ସେଇଠାଏ ଲେଖାଏ ଚୂନ ଦାଗ । କାନ୍ଥ ବାଡ଼ରେ ପାନପିକ ପିଚ ପିଚ କରି ପକାଇ ଦେଉଛନ୍ତି, ଅଳିଅ ଅଛି ସେଇଟି ଅଡ଼େଇ ବସି ପଡ଼ୁଛନ୍ତି, ଘସୁଛନ୍ତି ତ ଦାନ୍ତ ମୁଣ୍ଡ ଲୁଗା ସବୁ କଳା । ସେ ଚାକର ଲୋକେ ଆଉ ବେଶୀ ଶିଖିବେ କଣ ? ସୁଆର ଯେପରି ବାଗ ଦିଏ ଘୋଡ଼ା ସେପରି ଚାଲେ । ସବୁ କଥା ଚାକର ଉପରେ ପକାଇ ନିଶ୍ଚିନ୍ତ ହେଲେ ତ ଚଳିବ ନାହିଁ । ଗୋରୁ ଅଛନ୍ତି, ଚାକର ଯାହା ମନ ହେଲା ଖୁଆଇଲେ, ମନ ନ ହେଲା ହେଲା କଲେ । ଗୋରୁ ସବୁ ଉପବାସ ରହନ୍ତି, ତେବେ ପାପ ଗୃହସ୍ଥର, ଚାକରର ନୁହେଁ ତ । ଆମେ ଦୁଧ ଖାଇବା, ଆମ ପିଲାଏ ଦୁଧ ଖାଇବେ, ଆମେ ତାର ହିସାବ ନେବା ନାହିଁ । ଚାକର ନ କଲା ବୋଲି ନିଶ୍ଚିନ୍ତ ହେଲେ ତ ପାପରେ ଭାଗୀ ହେବା । ଏହିପରି ଇତ୍ୟାଦି ଘରକରଣା କଥାରେ ଗୃହିଣୀର ହିସାବ ରଖିବା ଆବଶ୍ୟକ । ବିନା ହିସାବରେ ସବୁ ଫୁଟୁଳା ହୋଇଯିବ । ଘର ଗୋଟାଏ ଅଳି ମାଳି ପେଡ଼ିରେ ପରିଣତ ହେବ ।

ସ୍ତ୍ରୀ—ଆଗ ଅପେକ୍ଷା ଏବେ କଣ ବେଶୀ ଖର୍ଚ୍ଚ ହେଉଛି ?

ସ୍ୱାମୀ—ତା ତମେ କାହିଁକି ଜାଣି ପାରିବ ? ସାଧାରଣତଃ ଦେଖାଯାଏ, ମାଇପଙ୍କ ହାତକୁ କଡ଼ାଏ ଗଲେ ସେ ଦମଡ଼ା କରିବାର ଚେଷ୍ଟା କରନ୍ତି । ଆମ ଓଡ଼ିଆ ମାଇକିନିଅଙ୍କ ହାତକୁ ଦମଡ଼ା ଗଲେ ସେ ତାକୁ କଡ଼ାଏ ମନେ କରି ଖର୍ଚ୍ଚ କରି ଦିଅନ୍ତି ।

ପିଲାଙ୍କ କଣ ହେବ ସେ କଥା ବିଚାର ନ ଥାଏ । 'ଅଣ୍ଡା ଭୁଟୁ
ଭୁଟୁ ହସ, ପିଲାଙ୍କ ଲଙ୍ଗଳ କପାଇଁ ରନ୍ଧ' ଗପ ଶୁଣିଛ ଠିକ୍ ?
ଏହିହେତୁ ଆମ ଦରିଦ୍ର ଦଶା ଘଟୁଛି । ଯେ ଯେତେ ରୋଜ-
ଗାର କରୁ, ତାଙ୍କୁ ସବୁ ଟଙ୍କାପଇସାରେ ଗୃହିଁଲେ ଟଙ୍କା ଶହେଟା
ଦେଇ ପାରିବ ନାହିଁ । ଯେଉଁ ମାଇପେ ସହରରେ ରହି ପାଞ୍ଚକଥା
ଦେଖିଲେଣି, ପାଞ୍ଚକଥା ଶୁଣିଲେଣି, ତାଙ୍କ ଅବସ୍ଥା ତ ଏହିପରି;
ଆଉ ମଫସଲ କଥା କାହିଁକି କହୁଚ ? ସେ କଥା କହି
ବସିଲେ ପୋଥିଟାଏ ହେବ ।

ସ୍ତ୍ରୀ—ତମେ କେବଳ ମାଇପଙ୍କ ଦୋଷ ଦେଖିବାରେ ଥାଅ ।
ମରଦଙ୍କର ଆଉ କିଛି ଦୋଷ ନାହିଁ ?

ସ୍ବାମୀ—ଅହେ, ମୁଁ ଦୋଷ କଣ ଦେଖିଲି ମ ? ଯାହା ସତକଥା, ସେ
କଥାରେ ଚିଡ଼ିବାର କଣ ଅଛି ? ଆମର ଦୋଷ ଥିଲେ
ଛାଡ଼ିବା, ଭଲ କଥା ଶିଖିବା, ଭଲବାଟରେ ଯିବା, ଏଥିରେ
ଲାଜ କଣ ? ଆପଣା ଦୋଷ ଆପେ ଘୋଡ଼ାଇଲେ କଣ ହେବ ?
ଘର ନାହିଁ ବୋଲି ଲୁଗାରେ ପୁରାଇଲେ କଣ ଲୁଗା ପୋଡ଼ି-
ଯିବ ନାହିଁ ? ମୁଁ ଏଥିଲାଗି କହୁଛି ସିନା ! ଅନ୍ୟଦେଶ ମାଇପେ
ଆସି ଆମକୁ କହୁଛନ୍ତି ମଇଳା, ମ୍ଳେଚ୍ଛ, ଅସଭ୍ୟ । ଆମେ
ସାମାନ୍ୟ ଟିକିଏ ଯତ୍ନ କଲେ ଏ ଦୁର୍ନାମ ତ ଆଉ ଶୁଣିବା
ନାହିଁ । ହାତ ଅଳସରେ ନାଶ ବଙ୍କା ପରି, କେବଳ ଅବ-
ହେଳାରୁ ଆମ ଲୁଗା ମଇଳା ରହୁଚ; ଶେଜ ମଞ୍ଚ ବିଛଣା
ଗୁଦର ମଇଳା ହେବ; ଘର ଅଳିଅ ହେବ । ଅଳ୍ପ ନଜର
ଦେଲେ ଏ ଗୁଡ଼ାକ ତ ରହିବ ନାହିଁ । ସ୍ବାସ୍ଥ୍ୟରକ୍ଷା ପକ୍ଷରେ
ଏଗୁଡ଼ିକ ନିତାନ୍ତ ଅବଶ୍ୟକ । ତମେମାନେ ଯେ ଏ କଥା ନ
ଜାଣ ତାହା ନୁହେଁ, କିନ୍ତୁ ହେଳାରୁ ସେ ଜ୍ଞାନଟାକୁ କାର୍ଯ୍ୟରେ
ଲଗାଅ ନାହିଁ । ଅଚ୍ଛା, ଆଜି ଏତିକି ଥାଉ ।

---

# ଚତୁର୍ବିଂଶ ପରିଚ୍ଛେଦ

ସ୍ତ୍ରୀ—ଦେଖ ମ, ବେଳ ଅସି ଓଳଏ ହେଲାଣି, ବାଉରୁଣୀଟା ଆସିଲା ନାହିଁ, ଗୁହାଳ ଏତେ ବେଳଯାଏ ପୋଛା ହେଲା ନାହିଁ ।

ସ୍ବା—ବାଉରୁଣୀ ଗୁହାଳ ପୋଛିବ ବୋଲି କଣ ଶାସ୍ତ୍ରରେ ଲେଖା ଅଛି ? ବାଉରୁଣୀ ନ କଲେ, ଆଉ କେହି କଲେ କଣ ପାପ ହେବ ?

ସ୍ତ୍ରୀ—ଆଉ କିଏ ପୋଛିବ ମ ?

ସ୍ବା—ତମେ ପୋଛି ଦେଉ ନାହଁ !

ସ୍ତ୍ରୀ—ଆଃ ମୁଁ କେମିତି ପୋଛିବ ମ ? ଗୋବର ମୁଁଆଁର ହାତରେ ଲାଗିଯିବ, ଲୁଗା ମଇଳା ହୋଇଯିବ । ଗୋବର ଗନ୍ଧରେ ମୋର କିଏ ସେ କାମ କରିବ ମ ?

ସ୍ବା—ଗୋରୁର କାମ କଲାବେଳକୁ ତ ଗନ୍ଧ ଲାଗୁଛି, ଦୁଧ ଦହି ଖାଇଦେଲା ବେଳକୁ ତ କିଛି ଗନ୍ଧ ହୁଏ ନାହିଁ ? ସେତେବେଳକୁ ପାଟି ସ୍ବାଦୁ ହୁଏ !

ସ୍ତ୍ରୀ—ସମସ୍ତେ ଦୁଧ, ଦହି, ଘିଅ ଖାଉଛନ୍ତି କି ମୁଁ ଏକା ଖାଉଛି ? ଦୁଧ ଖାଇବ ବୋଲି କଣ ଗୋବର ଗୁହାଳ ପୋଛିବ ?

ସ୍ବା—ନାହିଁ ହେ, କାହିଁକି ସେ କାମ କରିବ ? ଏ ତ କଳିକାଳ ! ଯେତେବେଳେ ଗୋରୁର ସେବା କଲେ ଧର୍ମ ବୋଲି ଲୋକଙ୍କର ବିଶ୍ବାସ ଥିଲା, ସେତେବେଳେ ସିନା ଲୋକେ ଗୋରୁକୁ ଦେବତା ପରି ମଣୁଥିଲେ । ଏବେ ତ ଲୋକେ ଗୋରୁକୁ ମାରି ଖାଉଛନ୍ତି, ଆଉ ସମାଜରେ ତାର ସ୍ଥାନ କାହିଁ ? ଆଉ କଣ ସେ ପୁରୁଣା ବିଶ୍ବାସ ଅଛି ? ଗୋରୁର ରୂପ ଗୋଟିକେ ଦେବତା ଗୋଟିଏ ।

ତା ନାମ ଥିଲା ଗୋମାତା । ଗୋରୁଠାରୁ ବଳି ମନୁଷ୍ୟର ଅଢ଼ ଅଧିକ ଉପକାରୀ ପ୍ରାଣୀ କିଏ ଅଛି କହିଲ ?

ସ୍ତ୍ରୀ—ଆମେ ଯେପରି ଗାଈକୁ ଖାଇବାକୁ ପିଇବାକୁ ଦେଉଥାଉଁ, ସେ ସେପରି ଦୁଧ ଦେଉଛି, ଆଉ ଉପକାର କଣ କଲା ?

ସ୍ୱାମୀ—ଅନ୍ୟ ଯେଉଁମାନେ ଖାଉଛନ୍ତି, ସେମାନେ କଣ ଦୁଧ ଦଅନ୍ତି ? ଗୋରୁ ଯେ ଉପକାର କରେ, ସାତଜନ୍ମରେ ତାହା ଶୁଝିପାରିବ ନାହିଁ । ଗୋରୁ ନ ଥିଲେ ଚାଷ ହୁଅନ୍ତା କିପରି ? ଚାଷ ନ ହେଲେ ଆମର ଡାହାଣ ହାତ ଚଳନ୍ତା କିପରି ? ଗୋରୁ ହେତୁ ଆମେ ଧାନ, ଗହମ, ବିରି, ମୁଗ ଇତ୍ୟାଦି ବହୁମୂଲ୍ୟ ଶସ୍ୟ ଉତ୍ପନ୍ନ କରୁ । ସେହି ଧନରେ ଖାଇ ପିଇ ନିଶ୍ଚିନ୍ତରେ ରହୁ ଏବଂ ଧନୀ ବଡ଼ଲୋକ ହେଉ । ଆମ ଅପୂର୍ବ ଅଳଙ୍କାର ପାଟ ପଟନୀ ପ୍ରଭୃତି ସେହି ଧନରୁ କିଣା ଯାଉଛି । ଗାଈ କ୍ଷୀର ଦିଏ, କ୍ଷୀରରୁ ସର, ଲବଣୀ, ଦହି, ଛେନା, ଘିଅ ପ୍ରଭୃତି ସୁମିଷ୍ଟ ବଳକାରକ ଅମୃତତୁଲ୍ୟ ଜିନିଷ ହୁଏ । ସେ ସବୁ ଖାଇପିଇ ଆମ ଶରୀର ବଳିଷ୍ଠ ଓ ପୁଷ୍ଟ ହୁଏ । ଗୋରୁ ଗୋବରରୁ ଘଷି ହୁଏ । ସେ ଘଷି ଜାଳ ହୁଏ । ଗୋମୂତ୍ର ଅନେକ ରୋଗର ମହୌଷଧ । ଶୋଥ ରୋଗରେ ଗୋମୂତ୍ର ପାନ ପ୍ରଧାନ ଔଷଧ । ପଞ୍ଚଗବ୍ୟ ପାନ କଲେ ମନୁଷ୍ୟର ମହାପାତକ ନାଶ ଯାଏ । ପଞ୍ଚଗବ୍ୟ ମଧ୍ୟରେ ଗୋବର ଅଛି । ପଞ୍ଚାମୃତରେ ମହୁ ଛଡ଼ା ଆଉ ସବୁ ଗୋରୁଠାରୁ ପ୍ରାପ୍ତ । ଯେ ଆମର ଏତେ କାମ ଚଳାଏ, ସେ କଣ ଆମର ଆରାଧ୍ୟ ଦେବତା ନୁହେ ? ଏପରି ମହୋପକାରୀ ପଶୁକୁ ଆମେ ସର୍ବତୋଭାବେ ପୂଜା କରିବା କଣ କର୍ତ୍ତବ୍ୟ ନୁହେ ?

ସ୍ତ୍ରୀ—ଆମେ କଣ ଗୋରୁକୁ ପାଳୁ ନ ଥାଉଁ ?

ସ୍ବା—ହଁ, ଆମେ ପାଞ୍ଚ ନ ଥାଉଁ କଣ ? ସେ ଧାନ ଆମଦାନୀ କରିବ, ଖାଇବ ନଡ଼ା, ପାଳ, ଚଷ୍ଟ, ଭୋଳଥ, ମୁଗ, ବିରି, ବୋଡା, ଚୋରଣି ଇତ୍ୟାଦି । ସେଥିରେ ପଣ୍ଡ ଅଧିକାଂଶ ଲୋକେ ଦେଅନ୍ତି ନାହିଁ । ଯାହା ବଳକା ଯାଇ କେବଳ ଚାଳ ଅସିଲେ ତେତେବେ । ତହିଁରେ ପୂର୍ଣ୍ଣ ଛାଡ଼ା ଏଅସ୍ତ୍ରକ ମୁହଁ ବନ୍ଧାଇଲେ ଠେଙ୍ଗାଏ ! ବେଙ୍ଗଳା ପଡ଼ିଲବେଳେ ଧାନ ଖାଇଯିବ ବୋଲି ମୁହଁରେ ତୁଣ୍ଡି ବୋ ଦିଏ । ଅଦ୍ୟଣୁ ପାହାରେ, ଯାଜଣୁ ପାହାରେ ତାଙ୍କ ଭପାଳେ ଲେଖା । ଅବେଗ ପ୍ରତି ଗ୍ରାମରେ ଗୋଚର ଜମି ଥିଲା । ଏବେ ଲୋକେ ସେ ଜମିଯାକ ଗୃଷ ଚଷିଗଲେ, କେତେ ଗ୍ରାମରେ ଗୋଚର ଜମି ଅଦୌ ନାହିଁ । ଏବେ ଯେଉଁ, ଗ୍ରାମକୁ ଯାଅ, ଦେଖିବ ଗୋରୁଯାକ ହାଡ଼ମାଳ, ଫୁଙ୍କିଦେଲେ ପଡ଼ି ମରିବେ । ତାଙ୍କ ଦେହରେ ଅବା ଅସ୍ଥା ନାହିଁ; ଜମି ଚଷିବାକୁ ବଳ କାହିଁ ? ଅବେଗ ଲୋକେ ଘାସ ପୁଳାଏ ଅଣି ସ୍ନାନ ସାରି ଗୋରୁ ମୁହଁରେ ଦେଇ ତା ଲାଞ୍ଜ ଧୋଇ ପାଣି ପିଇ ସାରି ଅନ୍ନ ଗ୍ରହଣ କରୁଥିଲେ, ଏବେ ସେ ନିଷ୍ଠା କାହିଁ ? ଏବେ ଘର ବଣହାକ ଖାଇ ସାରିଲେ ଗୋରୁ ଖାଇବା କଥା ମନେ ପଡ଼ିବ । ଅବେଗ ଗୋରୁସେବାକୁ ପବିତ୍ର କାର୍ଯ୍ୟ ମନେ କରୁଥିଲେ, ଏବେ ତ ତଦେ କହୁଛ ହାତ ଗନ୍ଧାଇବ, ଲୁଗାରେ ମଇଳା ଲାଗିଯିବ ! ଯାହାର ଗୋବରରେ ଘର ଦ୍ୱାର ଲିପା ହେଲେ ଘର ଦ୍ୱାର ପବିତ୍ର ହେଉଥିଲା; ଆଜି ସେ ହେଲା ଦୁର୍ଗନ୍ଧ ଜନକ ! ଗୋରୁ ଗୁହାଳକୁ ଗଲେ ଗୋଡ଼ରେ ମଇଳା ଲାଗିବ ବୋଲି ଯେତେବେଳେ ମନରେ ବିଚାର ହେଲଣି, ଅଉ ଗୋରୁଙ୍କର ଅଧିକ ସେବା କରିବା କଥା କାହିଁକି କହୁବା ? ଗୋଟିଏ ଘରେ ଯେତେ ପ୍ରାଣୀ ଅଛନ୍ତି, ସମସ୍ତଙ୍କ ଅପେକ୍ଷା

ଗୋରୁ ବେଶୀ ଉପକାରୀ, ଘରର ସମସ୍ତ ଲୋକେ ତାଠାରେ ଋଣୀ; ମାତ୍ର ତା' କଥା ପ୍ରତି କାହାର ନଜର ନ ଥାଏ । ଆମେ ପୁଷ୍ଟିକର ଯେପରି ପାଉଁ, ତା ଖାଇବା ପିଇବା ଖବର ବୁଝୁଁ, ଗୋରୁ କଥା କଣ ସେପରି ବୁଝୁଁ ? ଆମ ମନରେ କଣ ସେପରି ଧଂଳ ଥାଏ ? ଗୋରୁମୁହାଁ କାମଟା ଗୋଟାଏ ବାଜେ କାମ ! ସେ କାମ କରିବାକୁ ବାବୁ ବାବୁଆଣୀମାନଙ୍କୁ ଲାଜ ମାଡ଼େ; ସେ କାମ ଗୁଲର କରିବେ ! ଗୁଲର ଭଲ କରି ଖାଇବାକୁ ଦେଲେ କି ନ ଦେଲେ, ସେ କଥା ଦେଖିବାକୁ ମଧ୍ୟ ବାବୁ ବାବୁଆଣୀମାନେ ସଜ ହୁଅନ୍ତି ନାହିଁ । ଗୋରୁ ଚରାଇବା କାମ ତ ଚଷଡ଼ର । ସେ କାମ କରିବାକୁ ମଧ୍ୟ ଲାଜ ମାଡ଼େ । ଗୋରୁ ଯା କାମରେ କେବେ ତ୍ରୁଟି କରେ ନାହିଁ । ତ୍ରୁଟି କଲେ ତା ପାଇଁ ଗୁଆ, କୋଳବା ବାଡ଼ିଙ୍କ କଣି ପାଞ୍ଚଣ ଅଛି । ଯେତେ ପ୍ରକାର ତ୍ରୁଟି, ସବୁ ଆମର । ଆମେ ତ ଏହିପରି ଗୋ ସେବା କରୁଁ ? ଆମେ ଯେପରି ସେବା କରୁଛୁଁ, ସେପରି ଫଳ ପାଉଥାଉଁ । ଆଜି ଟିକିଏ ଭଲଘିଅ କି ଖାଣ୍ଟି ଗୋଷୀର ଖାଇବାକୁ ମିଳୁ ନାହିଁ । ସମୟରେ ଔଷଧପାଇଁ ଟିକିଏ ଗୁଆ ଘିଅ ମିଳୁ ନାହିଁ । ଲୋକେ ଭଲ ଘିଅ ଦୁଧ ଖାଇବାକୁ ନ ପାଇ ଦୁର୍ବଳ ହୋଇ ଯାଉଛନ୍ତି, ଆୟୁ ହାନି ହେଉଛି । ଏବେ ବିଲାତରୁ ଭିଜିଟେବଲଘିଅ ଆସି କାରବାର ହେଉଛି । ମୂଲ୍ୟ ଖୁବ ଶସ୍ତା । ଶସ୍ତା ପାଇ ଲୋକେ ଆନନ୍ଦରେ ଖାଉଛନ୍ତି ହାଟ ବଜାରରେ ଯେତେ ଖାଦ୍ୟ ଜିନିଷ ମିଳୁଛି, ସବୁ ଏହି ଘିଅରେ ତିଆରି ହେଉଛି । ଏ ସବୁ ଘିଅମିଶା ତେଲରେ ପ୍ରସ୍ତୁତ ଜିନିଷ ଖାଇ ଲୋକଙ୍କର ଯେ କେତେପ୍ରକାର ପେଟ ବେମାରି ହେଉଛି, ତାହା କେହି ଦେଖୁ ନାହିଁ । ଫଳରେ ଅକାଳ ମୃତ୍ୟୁସଂଖ୍ୟା ବଢ଼ୁଛି ।

ବଶୁଦ୍ଧ ଗୁଅ ଘିଅ, ଗୋକ୍ଷୀର ସାକ୍ଷାତ୍ ଅମୃତ ତୁଲ୍ୟ, ପାଣି ମିଶା ଘିଅ ତେଲ ସାକ୍ଷାତ୍ ବିଷ ସମାନ । ଯେତେ ଶୀଘ୍ର ସମ୍ଭବ ଏ ବିଷ ପାନରୁ ରକ୍ଷା ପାଉନ୍ତି, ମାତ୍ର ତାହା କରବାକୁ ଅନେକ ଘଣ୍ଟା ମନେ କରନ୍ତି । ଏଥିରେ ଆମର ଏତେ ଦୁର୍ଦ୍ଦଶା ନ ହୋଇ କାହାର ହେବ ?

ସ୍ତ୍ରୀ—ଏବେ ତ ମାଛ ମାଂସ ବେଶୀ ମିଳୁଛି, ଘିଅ ଦୁଧ ପରିବର୍ତ୍ତେ ମାଛ ମାଂସ ଖାଇଲେ ତ ଚଳନ୍ତା ?

ସ୍ୱା—ମାଛ ମାଂସ ବଳକାରକ ସତ, ମାତ୍ର ଭାରତବର୍ଷର ଜଳବାୟୁ ପ୍ରତି ମାଛ ମାଂସ ସେତେ ଉପକାରୀ ନୁହେ । ଆମ ଭାରତର ଜଳବାୟୁ ପ୍ରତି ଗୋରସଠାରୁ ଅଧିକ ଉପାଦେୟ କିଛି ନାହିଁ, ଆମିଷ ସେପରି ନୁହେ । ଋଷି ମୁନିମାନେ ଏ ସମସ୍ତ ବିଷୟ ଅନୁଭବ କରି ଆମିଷକୁ ଅସ୍ୱାସ୍ଥ୍ୟକର ଖାଦ୍ୟ ଶ୍ରେଣୀଭୁକ୍ତ କରିଥିଲେ ଏବଂ ଗୋରସକୁ ସାତ୍ତ୍ୱିକ ଖାଦ୍ୟ ଶ୍ରେଣୀରେ ନେଇଥିଲେ । ଏବେ ସାହେବମାନଙ୍କୁ ଦେଖି ଆମ ବାବୁମାନେ ମନେ କରୁଛନ୍ତି ଯେ, ସାହେବମାନେ ମାଂସ ଖାଉଛନ୍ତି ବୋଲି ସିନା ଏପରି ହୃଷ୍ଟ ପୁଷ୍ଟ ବଳିଷ୍ଠ ହୋଇଛନ୍ତି, ଆମେ ମାଂସ ଖାଇଲେ ତାଙ୍କପରି ହୋଇଯିବା । ଆମକୁ ଆଉ କିଛି ବୁଝିବା ଦରକାର ନାହିଁ, ଯାହା ସାହେବ ଘରେ ଦେଖିଲେ ମନେ କଲେ ଯେ, ସେ କଥା କଲେ ଆମେ ତାଙ୍କ ପରି ହୋଇଯିବା । କିନ୍ତୁ ବାବୁ, ଏତକ ବିଚାର କରୁ ନାହଁ ଯେ, ଦେଶ ଫଳ ତାର ଖାଦ୍ୟ ସିନା; ଅନ୍ୟ ଦେଶ ଖାଦ୍ୟ ଖାଇବେ ଆମ ଧାତୁରେ ଚଳିବ କିପରି ? ସାହେବଙ୍କ ଦେଶ ଥଣ୍ଡା ମୁଲକ, ଆମ ଦେଶ ଗରମ ମୁଲକ । ଥଣ୍ଡା ଦେଶରେ ଉଷ୍ଣବୀର୍ଯ୍ୟ ଖାଦ୍ୟ ଉପକାରୀ । ଆମ ନାଡ଼ୀ ନକ୍ଷତ୍ର ପ୍ରତି ସେହି ଖାଦ୍ୟ ଉପକାରୀ, ସେ କଥା

ବିଚାର କଲେ ହିଁ ନା ହେବ । ସାହେବ ଯାହା ଖାଉଛନ୍ତି, ଆମେ-
ତାହା ଖାଇବାକୁ ଅନୁକରଣ କରି ଶେଷରେ ଅଗ୍ନିମାନ୍ଦ୍ୟ,
ଅଜୀର୍ଣ୍ଣ ରୋଗରେ ପଡ଼ି ସଡ଼ି ମରିବା ହିଁ ନା ! ଭାରତବାସୀ
କେବେ ମାଂସହାରୀ ନ ଥିଲେ, କିନ୍ତୁ ଭାରତରେ ଭ କର୍ଣ୍ଣାର୍ଜ୍ଜୁନ
ପ୍ରଭୃତିଙ୍କ ପରି ହୃଷ୍ଟ ପୁଷ୍ଟ ବଳିଷ୍ଠ ବୀରପୁରୁଷ ଥିଲେ । ଭାରତ
ଜଳବାୟୁ ପ୍ରତି ଆମିଷ ଜାତୀୟ ନୈମିତ୍ତିକ ଖାଦ୍ୟ ନୁହେ ।

ସ୍ତ୍ରୀ—ହଁ, ସେ କଥା ସତ, ମାତ୍ର ଏ ଯେ ନୂଆ ସଭ୍ୟତା ଆମ
ଦେଶକୁ ଆସିଛି, ତାହା ଫଳରେ କେତେ ଏପରି କରୁଛନ୍ତି !

ସ୍ୱାମୀ—ଆଜି ଲୋକେ ଆମକୁ ଗୋସେବା କରିବାକୁ ଲଜ୍ଜା ମାଡ଼ୁଛି, କିନ୍ତୁ
ଶ୍ରୀକୃଷ୍ଣଙ୍କ ପରି ମହାପୁରୁଷ, ଯାହାଙ୍କୁ ହିନ୍ଦୁ ଜାତି ସ୍ୱୟଂ ଭଗବାନ
ବୋଲି ପୂଜା କରୁଛନ୍ତି, ସେ ଯେ ଗୋରୁ ଚରାଉଥିଲେ, ସେ
କଥା ତ ଶାସ୍ତ୍ରରେ ପଢ଼ୁଛ । ତାଙ୍କଠାରୁ କଣ ଆମେ ବେଶୀ
ବଡ଼ ମହାତ୍ମା ମହାପୁରୁଷ ! ସେ ଆନନ୍ଦରେ ଗୋସେବା
କରୁଥିଲେ, ଗୋସେବା କରିବାକୁ ସୁଖ ମଣୁଥିଲେ । ତାଙ୍କୁ
ଯଶୋଦା ଗୋରୁ ଚରାଇବା ପାଇଁ କେତେ ଥର ବାରଣ
କରନ୍ତି, ମାତ୍ର ସେ କଥା ଶୁଣିଲେ ତାଙ୍କ ମନରେ ଭାରି ଦୁଃଖ
ହୁଏ; ସେ ଅନେକ ଥର ମାତାଙ୍କୁ କହନ୍ତି ଯେ, ଗୋସେବା
କଲେ ଆୟୁ ଯଶ ଶ୍ରୀ ବୃଦ୍ଧି ହୁଏ, ସେ କାହିଁକି ତାଙ୍କୁ ବାରଣ
କରୁଛନ୍ତି । ଗୋସେବା ଜାତୀୟ ଧର୍ମ ଓ କର୍ତ୍ତବ୍ୟ । ଶ୍ରୀକୃଷ୍ଣ
ଭାରତକୁ ଏ ମହାଶିକ୍ଷା ଦେଇ ଯାଇଛନ୍ତି । ଆଜି ସେ ମହୋ-
ପଦେଶ ଲୋକେ ପାସୋରି ଅନାଚାରରେ ଦରିଦ୍ର ହେଉଛନ୍ତି ।
ମୁଁ ଆଜି ଜଣେ ନିଷ୍ଠାପର ଗୋସେବକ ଦେଖିଛି । ସେ କିଏ
ଜାଣ ? ସ୍ୱର୍ଗୀୟ ମହାରାଜା ମୁକୁନ୍ଦଦେବ ! ତାଙ୍କ ରାଜ୍ୟ
ନାହିଁ, ମାତ୍ର ହୃଦୟର ଧର୍ମରାଜ୍ୟରେ ସେ ମହାରାଜା ବୋଲି

ସମ୍ମାନିତ । ଯାତ୍ରୀମାନେ ତାଙ୍କ ପାଦ ପୂଜା କରନ୍ତି । ଉତ୍କଳର ସବୁ ରଜା ମହାରଜାଙ୍କ ଅପେକ୍ଷା ତାଙ୍କ ମାନ ମହତ୍ତ୍ୱ ବେଶୀ । ସେ ଚଳନ୍ତିବିଷ୍ଣୁ ବୋଲି ଲୋକରେ ପରିଚିତ । ସେ ସ୍ୱୟଂ ଜଗନ୍ନାଥଙ୍କ ଛତ୍ରାବଧାରକ । ତାଙ୍କୁ କଣ ଅଭାବ ଅଛି ? ତାଙ୍କୁ କଣ ଗୃହର ଚାକରର ଅଭାବ ଥିଲା ? ମାତ୍ର ସେ ନିଜେ ହାତରେ ଗୁହାଳ ପୋଛୁଥିଲେ, ଗାଈ ଦୁହୁଁଥିଲେ, ଗୋରୁଙ୍କୁ ନିଜେ ଚିଅ ହୋଇ ଖୁଆଉଥିଲେ । ଏ କାର୍ଯ୍ୟ ତାଙ୍କର ବଡ଼ ପ୍ରିୟ, ଏ କାର୍ଯ୍ୟରେ ତାଙ୍କର ବଡ଼ ଆନନ୍ଦ ।

ସ୍ତ୍ରୀ—ହଁ ହଁ, ଶୁଣିଥିଲି, ଖଣ୍ଡୀଙ୍କ କ୍ଷୀର ଯୋଗାଇବା ପାଇଁ ସେ ନିଜେ ଗାଈ ଦୁହଁନ୍ତି । ଅନ୍ୟ ଲୋକେ ଦୁହିଁଲେ କାଳେ ନେଇପିବ ?

ସ୍ୱାମୀ—ହେଲା ଏବେ, ଖଣ୍ଡୀ କଣ ମନୁଷ୍ୟ ନୁହେ ? ବଡ଼ ଲୋକ ହେଲେ ମଧ୍ୟ ଗରିବ ଖଣ୍ଡୀଠାରେ ତାଙ୍କର କି ଦୟା ! ଆପଣା ଦେହର ବିଳାସରେ ପଇସାଏ ଖର୍ଚ୍ଚ ନାହିଁ, ସୁନା ରୁପାକୁ ମାଟି ପରି ଜ୍ଞାନ କରନ୍ତି, ଅକାତରରେ ଦାନ କରନ୍ତି । ଏ କଣ କମ୍ ଗୁଣ ! ସେ ଜଣେ ରାଜର୍ଷି ଥିଲେ । ଲୋକେ କଣ ସେ ଜାଣନ୍ତି ନାହିଁ ।

ସ୍ତ୍ରୀ—ସତେ ସେ ଏପରି ଲୋକ ଥିଲେ ? ତାଙ୍କ ନାମରେ ଖଣ୍ଡୀକି ଲଗାଇ ଏତେ ହୁରି ହାଟ କାହିଁକି ଶୁଣାଯାଏ ମ ?

ସ୍ୱାମୀ—ଅହେ, ଆମ ଦେଶରେ ନ ଦେଖିଲ ଉପାଡ଼ ଛ ଫଡ଼ା । କେତେକ ସ୍ୱାର୍ଥୀକ ଲୋକ ତାଙ୍କୁ ଉଲୁ କରି ରଖିବା ଚେଷ୍ଟାରେ ଥାନ୍ତି । ସେହିମାନେ ଖଣ୍ଡୀକି ଲଗାଇ ବାରକଥା ପ୍ରଚାର କରନ୍ତି । ମୁଁ ତ ଆଠ ମାସ କାଳ ଦେଉଳରେ କାମ କରୁଛି । ତାଙ୍କ ହାଲ ଗୁଲ ମତେ ଭଲ ଜଣା ଅଛି । ସେ ଜଣେ ଚରି

ଖାଣ୍ଟି ଲୋକ, ତାଙ୍କ ମନରେ ଲେଶମାତ୍ର କପଟ ନାହିଁ । ତାଙ୍କ ମନ ବଡ଼ ଉଦାର, ସେ ତାହାଙ୍କୁ ମୁଣ୍ଡ ନୋଇଁବା ଲୋକ ନୁହନ୍ତି । ପ୍ରାଚୀନ ଗୀତ ନାଟ ବେଶ୍ ଭଣିଥାନ୍ତି । ସେ ବଡ଼ ସ୍ୱାଧୀନଚେତା ଲୋକ ଥିଲେ । ନିଜେ ଯାହା ଠିକ୍ ବୋଲି ବୁଝନ୍ତି ତାହା କରନ୍ତି । କେହି ଉପର ପାହୁଆ ଲୋକ ଧମକାଇ ଦେଲେ ଡର ଡର ହୁଁ କରିବା ଲୋକ ନୁହନ୍ତି । ଝଣ୍ଡୀ ପାଇଁ ଲାଟ ସାହେବଙ୍କ ଯାଏ କଥା ଗଲା, ତାଙ୍କର ଏକା କଥା ।

ସ୍ତ୍ରୀ—ଝଣ୍ଡୀକି ଛାଡ଼ିବା ପାଇଁ ପରା ଲାଟ କଲେକ୍ଟର କମିଶନମାନେ ଲଗାଇଥିଲେ ?

ସ୍ୱାମୀ—ହଁ, ଲଗାଇଥିଲେ, କିନ୍ତୁ କେହି କିଛି କରି ପାରିଲେ ନାହିଁ । ଶୁଣିଛ, ରାଜା ମୁକୁନ୍ଦଙ୍କୁ ସମସ୍ତେ ଓଲୁ ବୋଲି କହନ୍ତି ସତ, କିନ୍ତୁ ଦେଖ ଦିନେ କମିଶନ ସାହେବ ତାଙ୍କ ଘରଠାକୁ ଆସିଥିଲେ । ସାହେବଙ୍କ ସାଥିରେ ଗୋଟିଏ ଅତି ସୁନ୍ଦର କୁକୁର ଥିଲା । ସାହେବ ଆସି କହିଲେ, "ରାଜା ! ଆପଣ ଝଣ୍ଡୀକି ଛାଡ଼ି ଦିଅନ୍ତୁ । ଆପଣ ନ ଛାଡ଼ିଲେ ସରକାର ବଡ଼ ଅସନ୍ତୁଷ୍ଟ ହେବେ ।" ରାଜା ଟିକିଏ ଚିନ୍ତା କଲେ, ପରେ କହିଲେ, "ସାହେବ, ଆପଣ କୁକୁରଟାକୁ ମତେ ଦିଅନ୍ତୁ, ମୋର ଶ୍ରଦ୍ଧା ହେଉଛି ।" ସାହେବ କହିଲେ, "ଏ କୁକୁରଟା ମୋର ନୁହେଁ, ସେ ମୋ ସ୍ତ୍ରୀର; ସେ ତାକୁ ବଡ ଶ୍ରଦ୍ଧା କରନ୍ତି, ସେ ଦେବେ ନାହିଁ—ମୋର ବିଶ୍ୱାସ ।" ରାଜା ତତ୍‌କ୍ଷଣାତ୍ କହିଲେ, "ଆପଣ କୁକୁରଟାକୁ ଛାଡ଼ି ପାରୁ ନାହାନ୍ତି, ମତେ ଗୋଟାଏ ମନୁଷ୍ୟ ଛାଡ଼ିବାକୁ କିପରି କହୁଛନ୍ତି ? ମୁଁ ଯେ ତାକୁ ଭାରି ଶ୍ରଦ୍ଧା କରେଁ ?" ଏହେ ଉତ୍ତର ଶୁଣି ରାଜାଙ୍କଠାରୁ ବିଦାୟ ନେଇ

ସାହେବ ଅଙ୍କ ପାଡି ଫେଡାଇଲେ ନାହିଁ । ଏପରି ଯେ ଉତ୍ତର ଦେଇ ପାରନ୍ତି, ସେ କଣ ଓଲୁ ?

ସ୍ତ୍ରୀ—ମୁଁ ଏତେ କଥା ଜାଣି ନ ଥିଲି ମ । ଧନ୍ୟ ସେ ମହାପୁରୁଷ, ଗୋରୁସେବା କରିବା କଥା ମୁଁ ଜାଣେ, ମୁଁ ତମକୁ ସେପରି କହୁଥିଲି ପରା ! ଅମେ ଯାହାର କ୍ଷୀର ଖାଇ ପ୍ରାଣ ଧାରଣ କରିବା, ତାର ସେବା କଲେ ଦୋଷ କଣ ?

ସ୍ବା—ତୁମେ କହୁଥିଲୁ ପରା ମୁଁ କହୁଥିଲି । ମୁଁ ଏକା ତମର କଥା କହୁ ନାହିଁ । ଅଜକାଲି ମାଇକିନିଅ ମରଦ ସମସ୍ତଙ୍କର ଗୋରୁ ପ୍ରତି ଅବହେଳା ଦେଖାଯାଏ । ଗୋରୁ ପ୍ରତି ଲୋକଙ୍କର ପୂର୍ବ ଅସ୍ଥା ନାହିଁ । ଅମ ମନ ଗୁଣେ ଫଳ ମିଳୁଛି । ଗୋରୁ ନିଶ୍ବାସରୁ ଅମର କଲ୍ୟାଣ ହେଉ ନାହିଁ ।

---

## ପଞ୍ଚବିଂଶ ପରିଚ୍ଛେଦ

ସ୍ତ୍ରୀ—ହଇ ହେ, ଏବେ ବଭ୍ରାଘର ବେଳେ ଏତେ ଗୀତ ସବୁ ବଣ୍ଟା ହେଉଛି କଣ ?

ସ୍ବା—ବଭ୍ରାଘର ତ ଗୋଟିଏ ଅନନ୍ଦ ଉତ୍ସବ ବେଳ, ମନ ଖୁସିରେ ଲୋକେ ଗୀତ କରି ଛପାଇ ବାଣ୍ଟି ଦେଉଛନ୍ତି । ଅଗେ କଣ ଗୀତ ବୋଲା ହେଉ ନ ଥିଲା ? ମନୁଷ୍ୟଅ ତ ମନୁଷ୍ୟରେ ଗୀତ ବୋଲେ । ଏବେ ଛାପାଖାନା ହେଲାରୁ ଲୋକେ ଗୀତ କରି ଛପାଇ ବାଣ୍ଟି ଦଅନ୍ତି ।

ସ୍ତ୍ରୀ—ଅଗେ ଅମ ସାଅନ୍ତଘରମାନଙ୍କରେ ଗାୟଣୀମାନେ ମଙ୍ଗଳ ଗୀତ ଗାଉଥିଲେ ପରା, ଏବେ ତ ସମସ୍ତଙ୍କ ଘରେ ଗୀତ ଛପାହୋଇ ବଣ୍ଟା ଯାଉଛି ।

ସ୍ବା—ଯାଅନ୍ତିଘରମାନଙ୍କରେ ଯେଉଁ ଗୁଡ଼ାକ ପାଠ ପଢ଼ୁଥାନ୍ତି; ସେମାନେ ବିବାହ, ବ୍ରତ ପ୍ରଭୃତି ମଙ୍ଗଳ ଉତ୍ସବରେ ଗୀତ ବୋଲି ଥାଆନ୍ତି। ସମସ୍ତଙ୍କ ଘରେ ତ ସେ ସୁବିଧା ନାହିଁ । ଏବେ ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ପାଠ ପଢ଼ିବା ଲୋକଙ୍କ ସଂଖ୍ୟା ବଢ଼ୁଛି । ଏବେ ପାଠୁଆ ବର, ପାଠୁଆ କନ୍ୟା ସଂଖ୍ୟା ବଢ଼ୁଛି । ପାଠୁଆ ବରଙ୍କ ସାଙ୍ଗ ସୁଦ୍ଧାମାନେ ମଧ୍ୟ ପାଠୁଆ । ସେମାନେ ଅପଣା ସଙ୍ଗୀର ମଙ୍ଗଳ ଉତ୍ସବ ଲାଗି ଗୀତ କରି ଛପାଇ ବାଣ୍ଟି ଦେଉଛନ୍ତି । ଆଗେ ସେହିପରି ନାନା ପରିହାସପୂର୍ଣ୍ଣ ଗୀତମାନ ବୋଲା ଯାଉଥିଲା । କନ୍ୟା ପକ୍ଷ ବରକୁ ଚିଡ଼ାଇ, ବରପକ୍ଷ କନ୍ୟାକୁ ଚିଡ଼ାଇ, ନାନା କୌତୁକପୂର୍ଣ୍ଣ ଗୀତ ବୋଲୁଥିଲେ । 'ବୁଢ଼ାବର', 'ବୁଢ଼ୀ କନ୍ୟା' ଗୀତ ପଢ଼ିଛ କି ? ସେ ଗୁଡ଼ାକ ପରିହାସପୂର୍ଣ୍ଣ ଗୀତ । ଆଉ ମଧ୍ୟ ମଙ୍ଗଳ ଗୀତମାନ ବୋଲା ଯାଉଥିଲା, ଗୁମରବନ୍ଧ ପ୍ରଭୃତି ଗୀତ ବୋଲା ଯାଉଥିଲା । ଏଣିକି ଲୋକଙ୍କ ରୁଚି ବଦଳୁଛି । ଲୋକେ ନାନା ପ୍ରକାର ଗୀତ କରି ଅପଣା ବନ୍ଧୁ ବାନ୍ଧବଙ୍କୁ ବାଣ୍ଟି ଦେଉଛନ୍ତି ଏବଂ ମନରେ ଆନନ୍ଦ ଅନୁଭବ କରୁଛନ୍ତି ।

ସ୍ତ୍ରୀ—ଏପରି ଗୀତ ବଣ୍ଟା ହେବା ଅପେକ୍ଷା ଗୀତ ବୋଲା ହେଲେ ବେଶୀ ସୁନ୍ଦର ହେଉଥାନ୍ତା । ଆମ ଘର ଗାୟୁଣୀମାନେ ଗୀତ ବୋଲିଲେ ଗୋଟାଏ ଭାରି ଆନନ୍ଦ ଲାଗେ ।

ସ୍ବା—ଅହେ, "ଗଳାବନ୍ଧଂ ଗାନଂ"—ଯାହାର ଗଳା ଥିବ, ସେ ଯେବେ ରାଗ ରାଗିଣୀରେ ଉତ୍ସବବେଳେ ସେହି ସମୟୋପଯୋଗୀ ଗୀତ ବୋଲେ, ତେବେ ଭାରି ଆନନ୍ଦ ନ ହେବ କାହିଁ କି ? ଗୀତ ବୋଲିଲେ ସାପ ଫେଣା ଟେକି ଶୁଣେ, ପଶୁ ମଧ୍ୟ ଗୀତକୁ କାନ ଦିଏ, ମନୁଷ୍ୟ ମନ ଟାଣି ହେବା ତ ଆଶ୍ଚର୍ଯ୍ୟ କଥା ନୁହେଁ !

ସ୍ତ୍ରୀ—ଆମର ଅଗେ ଯେଉଁ ମଙ୍ଗଳ ଗୀତ ବୋଲା ଯାଉଥିଲା, ତା ଗୋଟିଏ ବଡ଼ ସୁନ୍ଦର । ଜାତର ଲୋକଙ୍କୁ ସେ ସ୍ତ୍ରୀମାନେ ବଡ଼ ଦୂରେ ! "ଦହି, ମାଛ, ପୂର୍ଣ୍ଣ କୁମ୍ଭ ରଖି ଠାବେ ଠାବେ । ଯେତେକ ମଙ୍ଗଳ ଦ୍ରବ୍ୟ ବାଢ଼ିଛନ୍ତି ସର୍ବେ ହେ !" ସ୍ତ୍ରୀଙ୍କୁ ମଙ୍ଗଳ ସ୍ତ୍ରୀ ସ୍ୱରରେ ବୋଲନ୍ତି ବୋଲି ତ କହନ୍ତି । ଏହି ସ୍ୱରରେ ଗୋଟିଏ ନୂଆ ଗୀତ ଲେଖି ଦିଅନ୍ତୁ ।

ସ୍ବା—ସେ ପୁରୁଣା ଗୀତ ତ ଭଲ ଗୀତ । ପୁରୁଣା କବିତାରେ ଯେପରି ଭାବ ଅଛି, ପ୍ରାଣ ଅଛି, ଅଜକାଲି ଯେଉଁ ନୂଆ ଗୀତ ହେଉଛି; ସେଥିରେ ସେପରି ଭାବ ବା ପ୍ରାଣ ଥିବା ପରି ଜଣାଯାଏ ନାହିଁ । ପ୍ରାଚୀନ କବିମାନେ ପ୍ରାଣ ସହିତ କବିତା ଲେଖିଥିଲେ । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବନମାଳୀ, ଗୋପାଳକୃଷ୍ଣ, କବିସୂର୍ଯ୍ୟ, ଜଗନ୍ନାଥ, ବଳରାମ ପ୍ରଭୃତି ପ୍ରାଚୀନ କବିମାନଙ୍କ କବିତାରେ ଯେପରି ଭାବ, ଭାଷା ଓ ପ୍ରାଣ ଅଛି, ବର୍ତ୍ତମାନ ଯୁଗର କବିତାରେ ସେପରି ନାହିଁ । ଏବେ କେବଳ ବଙ୍ଗଳା କବିତା, ଇଂରେଜୀ କବିତା ଦେଖି ଅନୁକରଣ କରି ଯାଉଛି । ପର ପଦାର୍ଥକୁ ଆପଣାର କରି ପାରିବାର ଶକ୍ତି ମଧ୍ୟ ଆମର ନାହିଁ । ସେହି ହେତୁ ଅଜକାଲି କବିତା ଭାବଗର୍ଭକ ହେଉ ନାହିଁ । ମୁଁ ତ କବି ନୁହେଁ, ଗୀତଟିଏ କଣ କରିଦେବି ?

ସ୍ତ୍ରୀ—ତମେ ତ କେତେ ବହି ଲେଖିଲଣି—ମୁଁ କହୁଛି ଏତେ-କଥା ବାହାରୁଛି କାହିଁକି ମ ? (୧) ଗୀତା (୨) ଗୀତା ଯୋଗତତ୍ତ୍ୱ (୩) ଗୀତା ରହସ୍ୟ (୪) ଜ୍ୟୋତିଷାର୍ଣ୍ଣବ ୧ମ, ୨ୟ, ୩ୟ (୫) ଦର୍ମବୀର ଓ୍ୱାସିଂଟନ (୬) ସୁବର୍ଣ୍ଣ ଦୃଷ୍ଟାନ୍ତ (୭) ପ୍ରାଚୀନ ଭାରତର ସାହିତ୍ୟ ସମ୍ପତ୍ତି (୮) ପ୍ରାଚୀନ ଉତ୍କଳ (୯) ଗୃହଲକ୍ଷ୍ମୀ ୧ମ, ୨ୟ (୧୦) ସଂକୀର୍ତ୍ତନରସାମୃତ (୧୧) ସଙ୍ଗୀତ ରତ୍ନାକର

(୧୨) ଉପାସ୍ନତ (୧୩) ଅରଠ ମାହାତ୍ମ୍ୟ (୧୪) ସ୍ୱଧର୍ମ (୧୫) ସ୍ୱଧର୍ମ ଭଜନ (୧୬) ପଞ୍ଚାଏତ ଦର୍ପଣ (୧୭) ଶ୍ରୀକୃଷ୍ଣ (୧୮) ସ୍ୱାସ୍ଥ୍ୟରକ୍ଷା (୧୯) ଭୂଗୋଳ (୨୦) ପଠାଣି ସାମନ୍ତ (୨୧) ଭାରତ ଚରିତ (୨୨) ଭାରତୀୟ ସ୍ୱରାଜ (୨୩) ପଞ୍ଚାମୃତ (୨୪) ରାଜଲକ୍ଷ୍ମୀ," ଏପରି ତ କେତେଗୁଡ଼ାଏ ବହି ଲେଖିଲଣି ! ସବୁବେଳେ ତ ବସି ଲେଖୁଛ, ଗୋଟାଏ ଗୀତ ଲେଖିଦେବାକୁ ମୁଁ କହିଲରୁ କାହିଁକି ଏତେ କଥା କହୁଛ ମ ?

ସ୍ୱା—ମୁଁ କେତେଖଣ୍ଡ ବହି ଲେଖିଛି ସତ, କେତେଖଣ୍ଡ ଛପା ହେଲଣି, କେତେଖଣ୍ଡ ଛପା ହୋଇ ନାହିଁ । ହେଲେ କଣ ହେବ, ପ୍ରାଚୀନ ଲେଖକଙ୍କ ଲେଖା ସଙ୍ଗେ ଆମ ଲେଖାମାନ ପାସଙ୍ଗରେ ପଡ଼ିବ ନାହିଁ ବୋଲି ମୋର ବିଶ୍ୱାସ । ଲେଖିବାର ଅଭ୍ୟାସ ଅଛି, କେତେଖଣ୍ଡ ଲେଖି ଦେଇଛି ସିନା, ହେଲେ କଣ ହେବ ? ମୁଁ ଯେତେବେଳେ ପ୍ରାଚୀନ କବିଙ୍କ ଲେଖା ପଢ଼େ, ମୋର ମନେହୁଏ ଯେ, ଆମ ଲେଖାମାନଙ୍କରେ ପ୍ରାଣ ନାହିଁ । ସେ କାଳରେ ଲୋକେ ନିଶ୍ଚିନ୍ତରେ ଥିଲେ; କବିତା-ଝରଣା ମନରୁ ଉଚ୍ଛୁଳି ପଡ଼ୁଥିଲା ! ସେ ପାଣି ଯେତେ ମଧୁର, ଯେତେ ପ୍ରାଣସ୍ପର୍ଶୀ ହେବ, ବହଣିଅ କୂଅର ମଇଳା ପାଣି କଣ ସେପରି ହେବ ? ବର୍ତ୍ତମାନ ଯୁଗରେ ଲୋକେ ପେଟ ଚିନ୍ତାରେ ୨୪ ଘଣ୍ଟା ଛଟପଟ । ବାର ପ୍ରକାର ଚିନ୍ତା ଆସି ମନକୁ ସତତ ଆକ୍ରମଣ କରୁଛି । ସର୍ବଦା ମନ ମଳିନ ହୋଇ ଯାଉଛି ! ଲୋକଙ୍କର ପୂର୍ବ ନୈଶ୍ଚିନ୍ତ୍ୟ ନାହିଁ । ଏବେ ସ୍କୁଲ୍ କଲେଜ ଅନେକ ହୋଇଛି, ବହୁତ ଲୋକ ପାସ କରୁଛନ୍ତି, ମାତ୍ର ସ୍କୁଲ କଲେଜରୁ ବାହାରି ସମସ୍ତେ ଚାକିରି ଖୋଜିବାରେ ବ୍ୟସ୍ତ, ଚାକିରି ପାଇଲେ ଚାକିରିଟିକୁ ବଜାଏ ରଖିବା ପାଇଁ ବ୍ୟସ୍ତ;

ଅଛ ବୀଣାପାଣିଙ୍କ ସେବା କରିବାକୁ ବେଳ କାହିଁ ? ବର୍ତ୍ତମାନ ଶିକ୍ଷା ଦ୍ୱାରା ସେପରି ଶକ୍ତି ଜନ୍ମୁ ନାହିଁ, କାହାରି ଜନ୍ମୁଥିଲେ ମଧ୍ୟ ତାହା ଉପଯୁକ୍ତ ସମୟ ସୁବିଧା ଅବସର ନ ପାଇ ମଉଳି ଯାଉଛି । ନିଜପ୍ରାଣ ଯେପରି ସର୍ବଦା ଛଟପଟ, ସେ ପ୍ରାଣରୁ ଯେଉଁ କବିତା ବାହାରୁଛି, ସେ ମଧ୍ୟ ସେହିପରି ପ୍ରାଣବିହୀନ । ହୃଦୟର ଗଭୀରତମ ପ୍ରଦେଶରୁ ଯେଉଁ କବିତା ବାହାରେ, ସେ ଯେପରି ଅନ୍ୟ ପ୍ରାଣକୁ ଆକର୍ଷଣ କରେ, ଅକ୍ଷର ବା ଶବ୍ଦଯୋଡ଼ା କବିତା ସେପରି ହୁଏ ନାହିଁ । ଅସ୍ତୁ, ତମେ ଯେତେବେଳେ ଏତେ କହୁଲଣି ଗୋଟିଏ ମଙ୍ଗଳ ଗୀତ କହୁ ଦେବି । ଭଲ ହେଉ ବା ମନ୍ଦ ହେଉ, ସେହି ପୁରୁଣା ରାଗରେ ଗାଇବି ।

ଜୟ ହେ ମଙ୍ଗଳମୟ ଜୟ ପ୍ରଭୁ ହରି,
ମଙ୍ଗଳ-କାରଣ ଅମଙ୍ଗଳ-ନାଶକାରି ହେ । ୧ ।
ମଙ୍ଗଳ-ନିଦାନ ପ୍ରଭୁ ମଙ୍ଗଳ-ନିଧାନ,
ମଙ୍ଗଳ-କାରକ କର ମଙ୍ଗଳ-ବିଧାନ ହେ । ୨ ।
ତଥି-ବାରି-ଜିତ୍-ବସ୍ତୁ ଦଅ କରି ଈଶ,
ଅହେ ପ୍ରଭୁ ଦାରିଦ୍ର୍ୟର ବିନାଶ ଅନିଷ୍ଟ ହେ । ୩ ।
ମଧୁର-ମିଳନ ଶୁଭ ବିବାହ-ବନ୍ଧନ,
ଅନୁସରି ବିଧି ସିଦ୍ଧି ପରିଣୟ ମିଳନ ହେ । ୪ ।
ପୁରୁଷ ପ୍ରକୃତି ସିନା ଯୁବକ ଯୁବତୀ,
ତବ ମଙ୍ଗଳ ଇଚ୍ଛାରୁ ଭବେ ଜନମନ୍ତି ହେ । ୫ ।
ନବୀନ ଦମ୍ପତି ସଦା ତବ ପ୍ରେମେ ମାତି,
ଅନନ୍ତ-ମଙ୍ଗଳେ ପାନ୍ତୁ ତାଙ୍କ ଦିନ ରାତି ହେ । ୬ ।
ଦଅ ଶୁଭାଶିଷ ଦୃଢ଼ ହେଉ ଏ ବନ୍ଧନ,
ତବ ପଦ୍ମପାଦେ ରତି ଥିବ ସଦା ଧନ ହେ । ୭ ।

ଦଅ ଦୀର୍ଘାୟୁକ୍ତ ସ୍ୱସ୍ଥ ସବଳ ଶରୀର,
ଜଗତ ମଙ୍ଗଳ ହୃଦେ ଥିବ ମତ ସ୍ଥିର ହେ । ୮ ।
ଦଧି ମତ୍ସ ପୂର୍ଣ୍ଣକୁମ୍ଭ ମଙ୍ଗଳ ନିଶାଣ,
ମଙ୍ଗଳ ଶଙ୍ଖ ନିସ୍ୱନ ମଙ୍ଗଳ ଗାୟନ ହେ । ୯ ।
ମଙ୍ଗଳ ମଧୁର ଭୂଷା ଭେଷା ଝଲଝଲ,
ମଙ୍ଗଳ ସଧବା ନାରୀ ବନ୍ଦାପନା ଥାଳୀ ହେ । ୧୦ ।
ମଙ୍ଗଳ ସପତ ଦ୍ୱୀପ ମଳୟ ଅନିଳ,
ମଙ୍ଗଳ ବସନ୍ତ ଶୁଭ ଆଗମନ ଭାଳ ହେ । ୧୧ ।
ମଙ୍ଗଳ ମନ୍ତ୍ରର ପାଠଧ୍ୱନ ଘନ ଘନ,
ମଙ୍ଗଳ ପୁଲକେ ନାଚ ଉଠେ ନବ ପ୍ରାଣ ହେ । ୧୨ ।
ମଙ୍ଗଳ ସୁମନମାଳ ଶୁଭ ବେଦଗାନ,
ସର୍ବେ ମିଳି ଏକ କରି ଦେଲେ ଦୁଇ ପ୍ରାଣ ହେ । ୧୩ ।
ଜେଉଁ ଅଜଣା ଘରକୁ ଦୁଇ ପ୍ରାଣୀ ଆସି,
ବିଭୁ କୃପାବଳେ ହୋଇଗଲେ ମିଶାମିଶି ହେ । ୧୪ ।
ବରଷ ମଙ୍ଗଳ-ବାର ମଙ୍ଗଳ ମିଳନେ,
ପରଜାପତ ବିଧାନ ମଙ୍ଗଳ ସାଧନେ ହେ । ୧୫ ।
ତବ ପ୍ରେମବାରି ସିଞ୍ଚିଦଅ ନବପ୍ରାଣେ,
ମଙ୍ଗଳଦାୟକ ଦେବ ଦେବୀ ଅବଧାନେ ହେ । ୧୬ ।

ଯେ କୌଣସି କାର୍ଯ୍ୟ କର, ସର୍ବଦା ଭଗବାନଙ୍କୁ ମନେ ରଖିଥିବ । ତାଙ୍କ ସନ୍ତୋଷେ ସକଳ କାର୍ଯ୍ୟ କରୁଛ ବୋଲି ବିଶ୍ୱାସ ଥିବ । ଭଗବାନ ଯାହା କରନ୍ତି ସବୁ ମଙ୍ଗଳ ପାଇଁ କରନ୍ତି ବୋଲି ବିଶ୍ୱାସ କରିବ । ଏପରି ଗୀତ ନିୟମରେ କାଳ କାଟିଲେ ସଂସାର ପ୍ରତି ବିରକ୍ତି ଆସିବ ନାହିଁ । ଏପରି ଭାବରେ ନ ଚଳିଲେ; ସଂସାର ଦୁଃଖମୟ ବୋଧ

ହେବ । ସର୍ବଦା ଦୁଃଖ କଷ୍ଟରେ ଛଟପଟ ହେବ, ସବୁବେଳେ ନିରାଶା ବୋଧ ହେବ ।

ସ୍ତ୍ରୀ—ଶାସ୍ତ୍ର ସିନା ଏପରି କହୁଛି, କିନ୍ତୁ କରିପାରୁଛି କିଏ ? ପୁରାଣରେ ଶୁଣା ଅଛି, ଏପରି କେତେ ଭକ୍ତ ଥିଲେ; ତମେ କେଉଁ କାହାକୁ ଆଖିରେ ଦେଖିଛ ?

ସ୍ୱାମୀ—ଏ ସଂସାର ମଧ୍ୟରେ ଏପରି ଲୋକ ଯେ ନାହାନ୍ତି, ଏକଥା ତମେ କହି ପାରିବ ନାହିଁ । ମୁଁ ତ ସମୁଦାୟ ସଂସାରଟା ବୁଲି ଦେଖି ନାହିଁ । 'କିଏ ଚା ଅଛି କେଉଁଠାରେ, ତାହା ମୁଁ ଜାଣିବି କେମନ୍ତେ ?' ତେବେ ଆମ ଗ୍ରାମରେ ଏପରି ଜଣେ ଲୋକକୁ ଦେଖିଛୁ । ସେ କିଏ ଜାଣ ?—ସେହି ନିତାଇ ଦାସ ! ଲୋକଟି ନିତାନ୍ତ ଗରିବ ପୁଣି ନିରକ୍ଷର, ପାଠ ସାଠ କିଛି ପଢି ନାହିଁ—ଗଣ୍ଡମୂର୍ଖ ! ତା ନାମ କୌଣସି ଖବର କାଗଜରେ ବାହାରି ନାହିଁ ! ତା ମଲାବେଳେ କୌଣସି ସଭା ସମିତି କରି ଶୋକ ପ୍ରକାଶ କରି ନାହିଁ । ତା ଚରିତ୍ର ଆମ ଗ୍ରାମ ଛଡ଼ା ଆଉ କେଉଁଠାରେ ପ୍ରକାଶ ପାଇ ନାହିଁ । କିନ୍ତୁ ମୁଁ ତାକୁ ଯାହା ଦେଖିଛି, ସେ ଜଣେ ଋଷିପ୍ରକୃତିର ଲୋକ ଥିଲା ।

ସ୍ତ୍ରୀ—ଭଗା ବାପ ନିତାଦାସ ଟିକି ? ତାଠାରେ ଏପରି କି ଗୁଣ ଥିଲା ମ !

ସ୍ୱାମୀ—ସେ ଆଗେ ଘର ଘର ବୁଲୁଥିଲା । ତାର ସମ୍ପତ୍ତି ବାଡ଼ି ଥିଲା । ବେଣ୍ଟ ଖାଇ ପିଇ ମଉଜରେ ଘର କରୁଥିଲା । ପୁଅ ମାଇପ ମା ବାପ ଭଉଣୀମାନେ ଥିଲେ, ଦରିଦ୍ରା ଘର । ବାଡ଼ରେ ଗୋଟିଏ ଅଁଳାଗଛ ଏବଂ ଗୋଟିଏ ତୁଳସୀ ଚଉରା ଥାଏ । ସେ ପ୍ରତିଦିନ ତାକୁ ପୂଜା କରେ । ସବୁବେଳେ କହୁଥାଏ, "କୃଷ୍ଣ ମୋର ଅହଙ୍କାର ଗତି, କୃଷ୍ଣ ମୋର ପିଣ୍ଡ ମୁକତି" ।

ଏହି ପଦକୁ ସବୁବେଳେ ଘୋଷି ହେଉଥାଏ । ସବୁବେଳେ କୃଷ୍ଣ କୃଷ୍ଣ ହେଉଥାଏ ! ଲୋକେ ତାକୁ ଭଣ୍ଡ ବୋଲି ମନେ କରୁଥାନ୍ତି; କିନ୍ତୁ ସେ ସେଥିରେ ବିଚଳିତ ନୁହେ । କୌଣସି କଥା ପଡ଼ିଲେ କୃଷ୍ଣ କରୁଛନ୍ତି ବୋଲି କହେ । ଏପରି କେତେ କାଳ ଗଲା । କ୍ରମେ ଭାରିଯା ମଲା, ପୁଅମାନେ ମଲେ, ମା ବାପ ମଲେ; କିନ୍ତୁ କି ତାରି କେବେ ବିମର୍ଷ ହୋଇ ନାହିଁ, କୃଷ୍ଣ ନେଇଗଲେ ବୋଲି ତାହାରି ଆନନ୍ଦ ! ଜନ ଗଲେ, କ୍ରମେ ଧନ ଗଲା, ଜମିବାଡ଼ି ଯାଇ ବିକାକିଣାରେ ଗଲା । ଜମି ଯେଉଁ ଦିନ ଶେଷ ହେଲା, ସେ ଦିନ ତାର ଭାରି ଆନନ୍ଦ । ଆଜି ମତେ କୃଷ୍ଣ ନିର୍ଦ୍ଧନ କଲେ, ଆଉ କେହି ଖଜଣା ପାଇଁ ଡାକିବ ନାହିଁ—ଏହିପରି କହି ଭାରି ପ୍ରେମ ! ସର୍ବଦା ସେହି କୃଷ୍ଣ କୃଷ୍ଣ ହେଉଥାଏ । ବୁଢ଼ାର ଘରଖଣ୍ଡି ଆମ ଜମି ଉପରେ, ଆମକୁ ଖଜଣା ଦିଏ ନାହିଁ ! ଶେଷକୁ ମୂଲ ଲାଗିଲା । ଭାରିଯା ପୁଅମାନେ ମଲେ, ପରେ ବୁଢ଼ା ଗୋଟିଏ ଦାସୀ ରଖିଲା, ପୁଣି ଦୁଇଟି ପୁଅ ହେଲେ । ସମସ୍ତେ ଗଲେ, କିନ୍ତୁ ଏ କଙ୍କାଳ ବଞ୍ଚିଲା ! ଶେଷକୁ ମୂଲ ଲାଗିଲା । ମୂଲ ଲାଗେ, ଦିନକୁ ଦଉଣିଏ ଅଣେ । ସେଥିରେ ପରିବାରଟି ଚଳନ୍ତି—ଅତି କଷ୍ଟରେ—ଓଳିଏ ଖାଇଲେ ଓଳିଏ ଉପାସ । କିନ୍ତୁ ସର୍ବଦା ହର୍ଷମୁଖ ! ଆନନ୍ଦ ପୂର୍ଣ୍ଣ ! ମୂଲ ନ ମିଳିଲେ, କୃଷ୍ଣ ଆଜି ପଠାଇ କଲେ ବୋଲି କହେ । ମୂଲ ମିଳିଲା ଦିନ କାହାକୁ ମାଗେ ନାହିଁ । ନ ମିଳିଲା ଦିନ ସାଧାରଣ ଲୋକଙ୍କୁ ମାଗେ ନାହିଁ । ତେବେ ଗ୍ରାମ ମଧ୍ୟରେ ଯାହା ପାଖରେ ତା ମନ ମାନେ, ତାକୁ ଭିକ୍ଷା ଶୁଣାଏ, ସେ ଦେଲେ ଖୁସି, ନ ଦେଲେ ଖୁସି ! ଏହିପରି କାଳ କାଟୁଥାଏ । ପ୍ରତିଦିନ ସୂର୍ଯ୍ୟୋଦୟ ପୂର୍ବରୁ ଉଠି ନିତ୍ୟକର୍ମ

ସାରି କୃଷ୍ଣ ନାମ ନେଇ ସେହି ଅଁଳାଗଛ ଗୁରୁପଟେ ବୁଲି ପୂଜା କରେ । ବଡ଼ପାଟି କରି କୃଷ୍ଣ କୃଷ୍ଣ ଡାକେ, ତା ପାଟି ଶୁଣି ଅମ ନଦ ଘରେ । ଏହିପରି ତା ଦିହକ ଗଲା । ସମ୍ପଦ ବିପଦ ଉଭୟ ବେଳେ ଏକା ପ୍ରକାର ମନ ରଖିବା ସହଜ କଥା ନୁହେ । ଯେତେ ସାଧନା ଯେତେ ତପସ୍ୟା କଲେ ମଧ୍ୟ ମନୁଷ୍ୟ ଏପରି ହୋଇ ପାରୁ ନାହିଁ । କିନ୍ତୁ ବିରୂ ଅସ୍ତୁରିର କଥା—ମୁଁ ଯେବେ ତା ମୁହଁରେ ଚିନ୍ତାର ଛାଇଟା ଦେଖି ନାହିଁ । ସର୍ବଦା କୃଷ୍ଣ ନାମରେ ଗୋଟାଏ ସ୍ୱାଭାବିକ ପ୍ରେମ ଦେଖା ଯାଉଥିଲା । ତାକୁ ଯେବେ ଥଟ୍ଟା କରନ୍ତି, ଭଣ୍ଡ ବୋଲି କହନ୍ତି, ସେଥିରେ ତାର ଲେଶମାତ୍ର ଦୁଃଖ ନାହିଁ; କିନ୍ତୁ ଯେବେ କୃଷ୍ଣନିନ୍ଦା କଲେ ତା ଦିହରେ ସାଏ ନାହିଁ, ଦି' ପଦ ଅଗ୍ନି ଭଳି ଶୁଣାଇଦିଏ ଏବଂ କହେ, "ମତେ ଗାଳିଦିଅ, ମୋ କୃଷ୍ଣଙ୍କୁ ଗାଳି ଦିଅ ନାହିଁ ।" ଯେଉଁ କୃଷ୍ଣନିନ୍ଦା କରେ ଅଭି ତା ପାଖ ମାଡ଼େ ନାହିଁ । ଶୁଣି ଶୁଣି ଓଡ଼ିଆ ଭାଗବତର ଶେଷପଦ ମନେ ରହିଯାଏ । ବେଳେ ବେଳେ ବୋଲେ । ଏହିପରି ଜୀବନକାଳ ଗଲା । ମରଣ ସମୟ ନିକଟ ହେଲା । ଭାଗବତ କହନ୍ତି, "ପ୍ରାଣୀର ଜୀବନ ବାଣୀ, ମରଣ କାଳେ ତାହା ଜାଣି ।" ସାଧାରଣତଃ ଦେଖାଯାଏ, ଯେଉଁମାନଙ୍କଠାରେ କପଟ ନ ଥାଏ, ଯାହାଙ୍କ ମନ ପ୍ରାଣ ସରଳ, ଯାହାର ଜୀବରେ ଦୟା, ନାମରେ ଶ୍ରଦ୍ଧା, ଯେ ସାଂସାରିକ ସୁଖ ଦୁଃଖରେ ବିଚଳିତ ନୁହେ, ବିନା କଷ୍ଟରେ ତାର ପ୍ରାଣ ପ୍ରୟାଣ ହୁଏ । ସେ ମୃତ୍ୟୁ ଆସିବା ପୂର୍ବରୁ ଜାଣିପାରେ । ଯେ ଏହାର ଉଲ୍ଟା, ସେ ପ୍ରାଣ ଛାଡ଼ିଲାବେଳେ ବଡ଼ ଯନ୍ତ୍ରଣା ପାଏ । ମୃତ୍ୟୁ ପର୍ଯ୍ୟନ୍ତ ସଂସାରପ୍ରତି ଆସକ୍ତି ଥାଏ । ନିତାଇ ଯେଉଁଦିନ ମରିବ;

ସେଦିନ ଚଉ ଚାଳିଅଖାଉଣ୍ଟୁ ଭଟି ଚଙ୍ଗ ପକା ସାର ଅଧ ଘରେ ବସିଲା । ଭଗା ମା କୁ କହିଲା; "ଚଞ୍ଚଳ ଟିକାଏ ନିଆଁ ଅଣିବୁଟି, କୃଷ୍ଣ ଟିକାଏ ଧୂଆଁ ଖାଇଲେ ବୃନ୍ଦାବନ ଯିବେ; ଚଞ୍ଚଳ ଅଣି ପାରିବୁ ତ ଅଣ, ବିଳମ୍ବ ହେଲେ କୃଷ୍ଣ ଗୁଲିଯିବେ ।" ଭଗା ମା ସାଇ ଭିତରକୁ ନିଆଁ ଅଣିବାକୁ ଚଲି; ଏ ଘର ସେ ଘର ହୋଇ ନିଆଁ ଅଣୁ ଅଣୁ ଦ'ଘଣ୍ଟା ଡେରି ହେଲା । ଭଗା ମା ଘରେ ପହଞ୍ଚି ଦେଖେ; ନିତାଇ ଆଉ ନାହାନ୍ତି ! ନିତାଇଙ୍କ ତ୍ୟାଗ କରି କୃଷ୍ଣ ଗୁଲିଗଲେଣି ! ସେ ତ ମୋ ଦେଖିବା କଥା, ନିତାଇ ମହାରାଜ ଦଶ ବାର ବର୍ଷ ହେବ । ଖାଇବାକୁ ଦାନା ନାହିଁ, ପିନ୍ଧିବାକୁ କନା ନାହିଁ, ମାଳି, ଝୁଲିମୁଣି, କନ୍ଥା, କଉପୀନ, ତିଲକ, ଗେରୁଆ ବସନ କିଛି ନାହିଁ । କିନ୍ତୁ ତାଠାରେ ଗୋଟାଏ ଅମୂଲ୍ୟ ପଦାର୍ଥ ଥିଲା ! କୃଷ୍ଣ ନାମରେ ଅଚଳ ଅଟଳ ବିଶ୍ୱାସ । କୃଷ୍ଣ କଥା ଶୁଣିଲେ କାନ୍ଦ ପଡ଼ାଏ କିନ୍ତୁ ଖାଇବାକୁ ନ ମିଳିଲା ବୋଲି କାନ୍ଦେ ନାହିଁ । ଗୀତାରେ ଭଗବାନ କହିଛନ୍ତି, "ସୁଖଂ ଦୁଃଖଂ ସମଂ କୃତ୍ୱା" ଅର୍ଥାତ ସୁଖ ଦୁଃଖକୁ ସମାନ ଜ୍ଞାନ କରିବ ! ଏକଥା ମୁଁ ନିତାଇ ଚରିତ୍ରରେ ଦେଖିଛି ! ନିତାଇଙ୍କ ସେହିହେତୁ ମୁଁ ବଡ଼ ଶ୍ରଦ୍ଧାକରେ ଏବଂ ତାହାତ ମୋର ଗୋଟାଏ ଅନ୍ତରଙ୍ଗ ଭକ୍ତ ଥାଏ । ନିତାଇ ମଧ୍ୟ ମତେ ବଡ଼ ଶ୍ରଦ୍ଧା ସହିତ ଦେଖେ ଏବଂ ମତେ ଦେଖିବା ମାତ୍ରକେ ତେଣୁ ଭାବ ଅନନ୍ଦିତ ହୁଏ । ଏପରି କେତେ ଗୁପ୍ତଜ୍ଞାନୀ ଅଛନ୍ତି । ନିତାଇଙ୍କ ଲୋକେ ଦରିଦ୍ର ବୋଲି ତାଚ୍ଛଲ୍ୟ କରି ପାରନ୍ତି, ମାତ୍ର ମୋର ବିଶ୍ୱାସ, ନିତାଇ ଅନେକ ଧନୀ ଗୃହସ୍ଥର ଗୁରୁ ହୋଇ ପାରିବ । ପ୍ରକୃତ ଦରିଦ୍ର ସେହି—ଯେ ହରିଭକ୍ତିହୀନ । ଯାହାର ହରିଙ୍କଠାରେ ପୂର୍ଣ୍ଣ ବିଶ୍ୱାସ, ତାର କିଛି

ଅଭାବ ନାହିଁ; ଯା ମନରେ ତ ଶାନ୍ତି ଅଛି, ଆଉ ଅଧିକ କଣ ଆବଶ୍ୟକ ? କେବଳ ତୁଣ୍ଡରେ କୃଷ୍ଣ କୃଷ୍ଣ କହିଲେ କିଛି ଫଳ ନାହିଁ । ତଦନୁସାରେ ଜୀବନକୁ ଗଢ଼ିବାକୁ ହେବ ଏବଂ କାର୍ଯ୍ୟ କରିବାକୁ ହେବ । ଏହା ଗୀତାର ପ୍ରଧାନ ଶିକ୍ଷା ।

ସ୍ତ୍ରୀ—ଠାକୁର ଦାସଙ୍କୁ ମୁଁ କଣ ଦେଖି ନାହିଁ କି ? ସବୁବେଳେ କୃଷ୍ଣ କୃଷ୍ଣ ହେଉଥାଏ, କିନ୍ତୁ ଏତେ ଗୁଣ ଅଛି ବୋଲି ଜାଣି ନ ଥିଲି !

ସ୍ୱାମୀ—ଅହେ, ଏପରି କେତେ ଲୋକ କେଉଁଠି ରହି ଚାଲି ଯାଉଛନ୍ତି । କିଏ ତାହା ଖବର ନେଉଛି । ଏ ଅସୀମ ସଂସାର, ଆମେ କିଛି ଜାଣି ନ ଥାଉଁ । ମନୁଷ୍ୟ 'ମୁଁ ଜ୍ଞାନୀ' ବୋଲି କେବେ ଅହଂକାର କରିବ ନାହିଁ । କେତେ ପ୍ରାଣୀଙ୍କଠାରୁ କେତେ କଥା ଆମର ଶିଖିବାର ଅଛି; ଗର୍ବ କଣ କରିବ ? ନିଜକୁ କ୍ଷୁଦ୍ର ବୋଲି ମନେ କରିବ । ଆମର ଅସଂଖ୍ୟ ଗୁରୁ ଅଛନ୍ତି । ଯେତେବେଳେ ଯେଉଁ ପଦାର୍ଥ ବା ପ୍ରାଣୀକି ଦେଖିବ, ତାଠାରୁ ଆମର କଣ ଶିଖିବାର ଅଛି ବୋଲି ମନରେ ଧ୍ୟାନ କରିବ । ଏପରି ଅଭ୍ୟାସ କରୁ କରୁ ସେହି ଭଗବାନ ସ୍ୱୟଂ ଜ୍ଞାନ-ନେତ୍ର ଖୋଲି ଦେବେ । ଆଜି ଏତିକି ଥାଉ, ଆଉ କେତେଗୋଟି ଉପଦେଶ ଦେଇ ଏ ଭାଗ ସମ୍ପୂର୍ଣ୍ଣ କରିବା,—

## ଉପଦେଶ

୧ । ଲକ୍ଷ୍ମୀ କାହାକୁ ଇଚ୍ଛା କରନ୍ତି ?

ଯେଉଁମାନେ ଅଳସୁଆ ନୁହନ୍ତି ଏବଂ ଯେଉଁମାନେ ନୀତିଜ୍ଞ ?

୨ । ଲକ୍ଷ୍ମୀ କାହାକୁ ତ୍ୟାଗ କରନ୍ତି ?

ଅଳସୁଆ ଏବଂ ଦ୍ୱିଜ ଗୁରୁ ହର ନିନ୍ଦୁକ ।

[illegible] । ଲକ୍ଷ୍ମୀ କେଉଁ ସ୍ଥାନ ତ୍ୟାଗ କରନ୍ତି ?

ଅପରିଷ୍କାର ସ୍ଥାନ ।

୮ । ଲକ୍ଷ୍ମୀ କେଉଁ ସ୍ଥାନକୁ ବରଣ କରନ୍ତି ?

ପରିଷ୍କାର ସ୍ଥାନ ।



ନହ ତୁମ୍ଭେ ଅବଳା ମା ଭାରତ-ରମଣି,
ସବଳା ଆଦ୍ୟାଶକ୍ତି ମା ଶକ୍ତି-ସ୍ୱରୂପିଣୀ ।
ଶକ୍ତିହୀନ ପୁରୁଷର ଅଛି କି ଶକତ ?
ହେବ କି ଏ ସୃଷ୍ଟି କେବେ ନ ଥିଲେ ପ୍ରକୃତି ?
ପ୍ରକୃତିରୂପିଣୀ ନାରୀ ଜଗତ ଜନନୀ ।
ଜାଗିବ ଭାରତ ଶକ୍ତି ସଞ୍ଚରିଲେ ପୁଣି ।
ଲକ୍ଷ୍ମୀ, ସରସ୍ୱତୀ, ସୀତା, ସାବିତ୍ରୀ, କମଳା,
ଦୁର୍ଗା, କାଳୀ, ଛିନ୍ନମସ୍ତା, ଶୀତଳା, ବଗଳା ।
ଭୁବନେଶ୍ୱରୀ, ଗୌରାଙ୍ଗୀ, ପାର୍ବତୀ ସହିତ,
ଯେତେ ନାରୀଶକ୍ତି ଅଛି ଜଗତେ ବିଖ୍ୟାତ,
ସେହି ଆଦ୍ୟାଶକ୍ତି ଅଂଶ ଅଟନ୍ତି ସମସ୍ତେ,
ନମସ୍ତେ ନମସ୍ତେ ମାଗୋ ନମସ୍ତେ ନମସ୍ତେ ।
ସେହି ଅଂଶେ ସେହି ବଂଶେ ଜାତ ଗୋ ରମଣି,
ଅସାଧ୍ୟ କି ଅଛି ତବ ଇଚ୍ଛା କଲେ ପୁଣି ?
ଜାଗି ଉଠ ରମଣୀ ଗୋ, ପୁରୁଷ ସହିତ,
ଦ୍ୱିଗୁଣ ବଳରେ ଜାଗି ଉଠିବ ଭାରତ ।
ପୁରୁଷ ରମଣୀ ମିଳି କର ଜାତି-ଯଜ୍ଞ,
ଲଗ ବନ୍ଧୁପ୍ରେମ କାର୍ଯ୍ୟେ ଲଗ, ଲଗ, ଲଗ, ।

ସନ୍ତାନର ଧମନୀରେ ସଞ୍ଚାରି ଶକତି,
ନବ ତେଜ ଯେଣି ଜାଗିଉଠୁ ତୋ ସନ୍ତତି ।
ନବ ତେଜ ନବ ବୀର୍ଯ୍ୟ ଉତ୍ସାହ ନବୀନ,
ନବ ଉନ୍ମାଦନା ଯେଣି ଜାଗୁ ତୋ ସନ୍ତାନ ।
ଧରି ପ୍ରାଚୀନ ଭାରତ ପତାକା ତୋ ସୁତ,
ଜାଗି ଉଠୁ ନବବଳେ ଦେଖୁ ଏ ଜଗତ ।
ତୋର ଯଶ ଗଉରବ ଗାଇ ଧରାତଳେ,
ରହନ୍ତୁ ଭାରତବାସୀ ଅଖଣ୍ଡ ମଙ୍ଗଳେ ।



ସ ମା ପ୍ତ

କଟକ, ଓରିଏଣ୍ଟ ପ୍ରେସରେ ଶ୍ରୀ ଶିବ ପ୍ରସନ୍ନ ଦାସଗୁପ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯୦୬